# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୩
## ବଳରାମ ଦାସ

## କୃଷ୍ଣଚରଣ ସାହୁ (୧୯୩୦ - ୧୯୯୭)


ସଂପାଦକ : ଯତୀନ୍ଦ୍ର ମୋହନ ମହାନ୍ତି

ସଂପାଦକ ମଣ୍ଡଳୀ : ରାଜେନ୍ଦ୍ର ପ୍ରସାଦ ଦାସ, ସଂଘମିତ୍ରା ମିଶ୍ର, ବିଜୟଲକ୍ଷ୍ମୀ ସ୍ୱାଇଁ, ବିରାଜ ମୋହନ ଦାସ, ଉଦୟନାଥ ସାହୁ

ପ୍ରକାଶକ : ସୁବର୍ଣ୍ଣରେଖା, କଟକ ରୋଡ଼ (ଲକ୍ଷ୍ମୀସାଗର ଛକ), ଭୁବନେଶ୍ୱର - ୭୫୧୦୦୬ ( ପ୍ରଫେସର କୃଷ୍ଣ ଚରଣ ସାହୁ ସ୍ମୃତି ପରିଷଦ ପକ୍ଷରୁ)

ଅକ୍ଷର ସଜ୍ଜା : ଓରିସଫ୍ଟ, ଭୁବନେଶ୍ୱର

ପ୍ରଚ୍ଛଦ ଓ ମୁଦ୍ରଣ : କେଦାର ପ୍ରିଣ୍ଟିଂ ପ୍ରେସ୍, ଭୁବନେଶ୍ୱର

ପ୍ରଥମ ମୁଦ୍ରଣ : ୨୦୦୦

ମୂଲ୍ୟ : ଟ ୧୨୦.୦୦

Professor Krushna Charan Sahoo Rachana Sambhar III,
*(Collected works of Professor Krushna Charan Sahoo, Volume III - Balaram Das)*

*Krushna Charan Sahoo (1930 - 1997)*

*Editor :* **Jatindra Mohan Mohanty**

*Editorial Board :* Rajendra Prasad Das, Ms. Sanghamitra Mishra, Ms. Bijayalaxmi Swain, Biraj Mohan Das, Udayanath Sahoo.

*Publisher :* **Subarnarekha**, Cuttack Road (Laxmisagar Chhak), Bhubaneswar - 751006 (On behalf of Prof. K.C. Sahoo Smruti Parishad).

*D.T.P. :* Orisoft, Bhubaneswar.

*Cover & Printing :* Kedar Printing Press, Bhubaneswar.

*1st Edition :* 2000

*Price :* Rs 120.00

I.S.B.N.-81-87467-02-9.

# ମୁଖବନ୍ଧ

ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୩ ପ୍ରକାଶ ପାଇଲା ପୂର୍ବରୁ ରଚନା ସମ୍ଭାର ୧ ଓ ରଚନା ସମ୍ଭାର ୨ରେ ଯଥାକ୍ରମେ ପ୍ରାକ୍-ସାରଳା ଓ ସାରଳା ସାହିତ୍ୟ ସଂପର୍କରେ ପ୍ରଫେସର ସାହୁଙ୍କର ଲେଖାମାନ ପ୍ରକାଶ ପାଇଛି । ଏହି ଗ୍ରନ୍ଥରେ ବଳରାମ ଦାସଙ୍କ ସଂପର୍କରେ ତାଙ୍କର କେତେକ ବିଶିଷ୍ଟ ଲେଖାକୁ ଏକାଠି କରାଯାଇଛି । ପ୍ରଫେସର ସାହୁଙ୍କର ଆଦ୍ୟ ଗବେଷଣା ବଳରାମ ଦାସଙ୍କ ସଂପର୍କରେ । ସେ ବଳରାମ ଦାସଙ୍କର 'ଜଗମୋହନ ରାମାୟଣ' ଉପରେ ନିଜର ପି.ଏଚ୍.ଡି. କରିଥିଲେ ଓ ସଂପୂର୍ଣ୍ଣ 'ଜଗମୋହନ ରାମାୟଣ'ର ଶୁଦ୍ଧ ସଂସ୍କରଣ ସଂପାଦନା କରି ପ୍ରକାଶ କରିଥିଲେ । ସେ ବଳରାମ ଦାସ ଓ ଓଡ଼ିଆ ରାମାୟଣ ସଂପର୍କରେ ଉଭୟ ଇଂରାଜୀ ଓ ଓଡ଼ିଆରେ ଅନେକ ପ୍ରବନ୍ଧ ଲେଖିଛନ୍ତି, ଓ ସେସବୁ ପ୍ରବନ୍ଧର ଗୁଣାତ୍ମକ ମାନ ଅତ୍ୟନ୍ତ ଉଚ୍ଚକୋଟୀର । ରଚନା ସମ୍ଭାରର ଏହି ଖଣ୍ଡରେ ବଳରାମଙ୍କ ସଂପର୍କରେ ପ୍ରଫେସର ସାହୁଙ୍କର କେତେକ ପ୍ରବନ୍ଧକୁ ପ୍ରକାଶ କରାଗଲା, ଓ ଆଶା କରାଯାଉଛି, ପରବର୍ତ୍ତୀ ଖଣ୍ଡମାନଙ୍କରେ ଅନ୍ୟାନ୍ୟ ପ୍ରବନ୍ଧସବୁ ପ୍ରକାଶ କରାଯିବ । ପ୍ରଫେସର ସାହୁଙ୍କର ଅଗଣିତ ଅନୁରାଗୀ ପାଠକ ପାଠିକା ଓ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା - ରଚନା ସମ୍ଭାର୩ ସାଦରେ ଗୃହୀତ ହେଲେ ଆମ୍ଭେମାନେ ଆନନ୍ଦିତ ହେବୁ ।

ଯତୀନ୍ଦ୍ର ମୋହନ ମହାନ୍ତି,

ଅଧ୍ୟକ୍ଷ, ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ,

୨୦.୩.୨୦୦୦

# ସୂଚୀ


| | | ପୃଷ୍ଠା |
|---|---|---|
| ୧. | ବଳରାମ ଦାସ | ୧ |
| ୨. | ଭକ୍ତ ବଳରାମ | ୮ |
| ୩. | ବଳରାମ ବ୍ୟକ୍ତିତ୍ୱ ଓ ଜୀବନ ଦୃଷ୍ଟି | ୩୧ |
| ୪. | ବଳରାମ ଦାସଙ୍କ କବିତ୍ୱ | ୪୯ |
| ୫. | ବଳରାମଙ୍କ ଦାର୍ଶନିକ ଚିନ୍ତାଧାରା | ୭୬ |
| ୬. | ଜଗମୋହନ ରାମାୟଣ | ୮୮ |
| ୭. | ଲକ୍ଷ୍ମୀପୁରାଣ | ୧୨୩ |
| ୮. | ଉଦ୍ଧବ ଗୀତା | ୧୨୯ |
| ୯. | ବ୍ରହ୍ମାଣ୍ଡ ଭୂଗୋଳର ଆବିଷ୍କାର | ୧୪୦ |
| ୧୦. | ବେଦାନ୍ତ ସାର ଗୁପ୍ତ ଗୀତା | ୧୫୯ |
| ୧୧. | ଓଡ଼ିଶା, ଶ୍ୟାମଦେଶ ଓ ଇଣ୍ଡୋନେସିଆର ରାମ କଥା | ୧୬୬ |

# ବଳରାମ ଦାସ

ଓଡ଼ିଶାରେ 'ଜଗମୋହନ ରାମାୟଣ'ର ରଚୟିତା ବଳରାମ ଦାସ ଥିଲେ ସାରଳା ଦାସଙ୍କ ପରେ ଦ୍ୱିତୀୟ ପୁରାଣକାର । ସାରଳା ମହାଭାରତ ରଚନାର ପ୍ରାୟ ଚାଳିଶି ବର୍ଷ ପରେ ଅର୍ଥାତ ୧୫୦୫ ଖ୍ରୀଷ୍ଟାବ୍ଦ ବେଳକୁ ରାମାୟଣ ଲେଖି ସେ ପ୍ରସିଦ୍ଧି ଲାଭ କରିଥିଲେ । 'ଜଗମୋହନ ରାମାୟଣ' ହେଉଛି, ଓଡ଼ିଆ ଭାଷାର ଦ୍ୱିତୀୟ ରାମାୟଣ ଏବଂ ସମ୍ପୂର୍ଣ୍ଣ ଅର୍ଥାତ ସାତକାଣ୍ଡ ରାମାୟଣ ଭାବରେ ପ୍ରଥମ ।

କବି ବଳରାମଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ମନମାୟା ଥିଲା । ସେ ଆନୁମାନିକ ୧୪୭୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ପିତାଙ୍କୁ 'ମହାମନ୍ତ୍ରୀ' ଭାବରେ ସମ୍ବୋଧନ କରିଛନ୍ତି । ତେଣୁ ତାଙ୍କ ପିତା କପିଳେନ୍ଦ୍ର ବା ପୁରୁଷୋତ୍ତମଙ୍କର ମନ୍ତ୍ରୀ ଥିବା ଅନୁମାନ କରାଯାଇପାରେ । କବି ଏହି ପରିବେଶରେ ପରିପାଳିତ ହୋଇଥିଲେ ହେଁ କବିଙ୍କର ରାଜଦରବାର ସହିତ କୌଣସି ସମ୍ପର୍କ ନ ଥିଲା । ସେ ସାମାଜିକ ବନ୍ଧନରୁ ନିଜକୁ ମୁକ୍ତ କରି, ଜଣେ ସ୍ୱତନ୍ତ୍ର ନାଗରିକ ଭାବରେ ସମାଜରେ ସବୁ ଜାତିର ସମାନତା, ବ୍ରାହ୍ମଣ ମାନଙ୍କ ଅପେକ୍ଷା ଭକ୍ତମାନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ବ୍ରତୀ ଥିଲେ । ସମାଜରେ ପତିତ ଓ ଅବହେଳିତ ଜାତିମାନଙ୍କର ଉଦ୍ଧାର ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ । ସେଥିପାଇଁ ରାଜା ପ୍ରତାପରୁଦ୍ର, ତାଙ୍କ ତୋଷାମୋଦକାରୀ ତଥା ଦରବାରୀ ବ୍ରାହ୍ମଣ ପଣ୍ଡିତମାନଙ୍କ ନିକଟରେ ସେ ବାରମ୍ବାର ବିରାଗଭାଜନ ହେଉଥିଲେ । ଷୋଡ଼ଶ ଶତାବ୍ଦୀରେ ପ୍ରତିଷ୍ଠିତ ସାମାଜିକ-ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରି ସେ ରାଜ ଦରବାରରେ ଯେତିକି ଅପମାନିତ ହେଉଥିଲେ, ନିଜକୁ ବାରମ୍ବାର ବିଷ୍ଣୁଭକ୍ତ ଭାବରେ ପ୍ରମାଣିତ କରି, ସେ ଗଣ ଦରବାରରେ ସେତିକି ଆଦୃତ ହେଉଥିଲେ । ରାଜାଙ୍କ ଅପେକ୍ଷା ପ୍ରଜାଙ୍କ ପାଇଁ, ବ୍ୟକ୍ତି ଅପେକ୍ଷା ସମାଜ ପାଇଁ ସେ ବିଶେଷ ଚିନ୍ତିତ ଥିଲେ । ସେଥିପାଇଁ ସେ 'ଜଗତ ଜନ ହିତେ' ଜଗମୋହନ ରାମାୟଣ ରଚନା କଲେ । ଜଗନ୍ନାଥଙ୍କଠାରେ ଭକ୍ତି ଓ ଜଗତ ଜନଙ୍କର ମଙ୍ଗଳ-ଏହି ଦୁଇଟି ଉଦ୍ଦେଶ୍ୟକୁ ସେ ନିଜ ଜୀବନରେ ସାର୍ଥକ କରି ସେ ସମୟରେ ଭକ୍ତଶେଷ୍ଠ ଭାବେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

ବଳରାମଙ୍କ ନାଁ ଭଣିତା ଥିବା ବହୁ ଗ୍ରନ୍ଥ ଓଡ଼ିଶାର ପୋଥି ପାଠାଗାର ସବୁରେ ଦେଖିବାକୁ ମିଳେ । ସେ ସବୁ ମଧ୍ୟରୁ ଏପର୍ଯ୍ୟନ୍ତ ଆବିଷ୍କୃତ ଗ୍ରନ୍ଥସବୁ ହେଉଛି-(୧) 'ଅମରକୋଷ ଗୀତା', (୨) 'ଉଦ୍ଧବ ଗୀତା' (ଅନୁବାଦ), (୩) 'କର୍ଣ୍ଣଦାନ', (୪) 'କମଳ ଲୋଚନ ଚଉତିଶା', (୫) 'କାକପୋଇ', (୬) 'କାନ୍ତ କୋଇଲି', (୭) 'ଛ ଚଉପଦୀ', (୮) 'ଛତ୍ରିଶ ଗୁପ୍ତ ଗୀତା', (୯) 'ଜଗମୋହନ ରାମାୟଣ', (୧୦)

'ଦୀପ୍ତୀସାର ଗୀତା', (୧୧) 'ପଣସ ଚୋରୀ', (୧୨) 'ପରଚେ ଚୂଡ଼ାମଣି', (୧୩) 'ପ୍ରଳୟସାର ଗୀତା', (୧୪) 'ପାଦ ବର୍ଣ୍ଣନା', (୧୫) 'ବଟ ଅବକାଶ', (୧୬) 'ବେଢ଼ା ପରିକ୍ରମା', (୧୭) 'ବେଦାନ୍ତ ସାର ଗୁପ୍ତ ଗୀତା', (୧୮) 'ବ୍ରହ୍ମ କୁଣ୍ଡଳୀ' (୧), (୧୯) 'ବ୍ରହ୍ମ କୁଣ୍ଡଳୀ' (୨), (୨୦) 'ବ୍ରହ୍ମ ଗୀତା' (ଗଦ୍ୟ), (୨୧) 'ବ୍ରହ୍ମ ପୁରାଣ', (୨୨) 'ବ୍ରହ୍ମାଣ୍ଡ ଭୂଗୋଳ' (୧), (୨୩) 'ବ୍ରହ୍ମାଣ୍ଡ ଭୂଗୋଳ' (୨), (୨୪) 'ଭାବ ସମୁଦ୍ର', (୨୫) 'ମନୁ ଗୀତା', (୨୬) 'ଲକ୍ଷ୍ମୀ ପୁରାଣ', (୨୭) 'ଶ୍ରୀମଦ୍ ଭଗବଦ୍ ଗୀତା', (୨୮) 'ସପ୍ତାଙ୍ଗ ଯୋଗସାର ଟୀକା', (୨୯) 'ହନୁମନ୍ତ ଚଉତିଶା'। ଏହା ବ୍ୟତୀତ ବହୁ ଭଜନ ଓ କ୍ଷୁଦ୍ର କବିତାର ରଚୟିତା ରୂପେ ବଳରାମ ପ୍ରସିଦ୍ଧ।

ବଳରାମ ରଚିତ ଗ୍ରନ୍ଥରାଜିକୁ ଅନୁଶୀଳନ କଲେ ଏଥିରେ ନିମ୍ନ କେତୋଟି ତତ୍ତ୍ୱ ଦୃଷ୍ଟିଗୋଚର ହୁଏ। ସେ ଗଦ୍ୟ ଓ ପଦ୍ୟ ଉଭୟ ମାଧମରେ ଗ୍ରନ୍ଥ ରଚନା କରିଥିଲେ ହେଁ ବିଷୟବସ୍ତୁ ଦୃଷ୍ଟିରୁ ଏହିସବୁ ଗ୍ରନ୍ଥକୁ ପାଞ୍ଚୋଟି ବିଭାଗରେ ବିଭକ୍ତ କରାଯାଇପାରେ।

(୧) ଅନୁବାଦ ସାହିତ୍ୟ (୨ ଓ ୨୭)
(୨) ଅଲୌକିକତା ବା ମହିମାର ପ୍ରଚାର ୧୦, ୧୧, ୧୫, ୧୬, ୧୮, ୧୯, ୨୦, ୨୪)
(୩) ବ୍ରହ୍ମତତ୍ତ୍ୱ ନିରୂପଣ (୧, ୮, ୧୨, ୧୩, ୧୭, ୨୦, ୨୨, ୨୩, ୨୫)
(୪) ରାମ କଥାର ପ୍ରସାର (୫, ୬, ୯, ୨୯)
(୫) ଅନ୍ୟାନ୍ୟ (୩, ୪, ୭, ୧୪, ୨୧, ୨୬)

ପ୍ରାମାଣିକତା ଦୃଷ୍ଟିରୁ ବିଚାର କଲେ ଏଥିରୁ ଅନେକ ଗ୍ରନ୍ଥ ପରବର୍ତ୍ତୀ ଯୁଗରେ ରଚିତ ହୋଇଥିବା ଅନୁମିତ ହୁଏ। 'ଛତ୍ରିଶଗୁପ୍ତ ଗୀତା'ର ପ୍ରଥମ ଅଧାୟ ବ୍ୟତୀତ ଅନ୍ୟାନ୍ୟ ଅଧାୟ ସବୁ ଦ୍ୱିତୀୟ ବଳରାମ ବା ଦ୍ୱାରକା ଦାସଙ୍କ ଦ୍ୱାରା ରଚିତ। 'ଛ'ଚଉପଦୀ'ର ରଚୟିତା ହେଉଛନ୍ତି ଜଗନ୍ନାଥ ସୁତ ବଳରାମ। 'ବ୍ରହ୍ମକୁଣ୍ଡଳୀ (୨)'ର ଲେଖକ ଦୈବଜ୍ଞ ବଳରାମ। ଏହା ବ୍ୟତୀତ ବଳରାମଙ୍କର ଅଲୌକିକତା ପ୍ରଚାର କରୁଥିବା ଗ୍ରନ୍ଥ ସବୁକୁ କବି ନିଜେ ଲେଖିଥିବା ସନ୍ଦେହଜନକ।

ଏ ସବୁ ଗ୍ରନ୍ଥ ମଧ୍ୟରୁ କବି ବିଶେଷ କରି ଦୁଇଟି ଗ୍ରନ୍ଥପାଇଁ ଉତ୍କଳର ଘରେ ଘରେ ପରିଚିତ। ସେ ଦୁଇଟି ଗ୍ରନ୍ଥ ହେଲା - 'ଜଗମୋହନ ରାମାୟଣ' ଓ 'ଶ୍ରୀମଦ୍ ଭଗବଦ୍ ଗୀତା'। ଏଥିରୁ ଦ୍ୱିତୀୟ ଗ୍ରନ୍ଥଟି ସଂସ୍କୃତରୁ ଅନୁବାଦ ହୋଇଥିବାରୁ ତାଙ୍କ ପ୍ରତିଭା ମୂଲ୍ୟାଙ୍କନ ପାଇଁ 'ଜଗମୋହନ ରାମାୟଣ'କୁ ଗ୍ରହଣ କରାଯାଇଛି।

କବି 'ଜଗମୋହନ ରାମାୟଣ'କୁ କିଷ୍କିନ୍ଧ୍ୟା କାଣ୍ଡରେ 'କାବ୍ୟ' ଓ ଲଙ୍କା କାଣ୍ଡରେ 'ମହାନାଟକ' କହିଥିଲେ ହେ, ଏହା ମୁଖ୍ୟତଃ ବିଷ୍ଣୁପୁରାଣ।

ବଳରାମଙ୍କ ମତରେ ପୁରାଣର ଆଦି ସ୍ରଷ୍ଟା ହେଲେ ବ୍ରହ୍ମା । ମୁନି ଓ ଋଷିମାନେ ଏହାର ପ୍ରଚାରକ । ଏଥିରେ ସାଧାରଣତଃ ବୀରପୁରୁଷମାନଙ୍କର ଇତିହାସ ଲିପିବଦ୍ଧ ହୋଇଥାଏ । ରାମାୟଣରେ ରାମଙ୍କର ବୀରତ୍ୱ ବର୍ଣ୍ଣିତ ହୋଇଥିବାରୁ, ଏହା ମଧ୍ୟ ଏକ ପୁରାଣ । ସବୁ ପୁରାଣ ପରି ଏଥିରେ 'ଅମରକୋଷ'ରେ ନିର୍ଦ୍ଦିଷ୍ଟ ହୋଇଥିବା ପୁରାଣର ପଞ୍ଚ ଲକ୍ଷଣ ସମ୍ପୂର୍ଣ୍ଣଭାବେ ଗୃହୀତ ହୋଇ ନଥିଲେ ହେଁ ପୁରାଣର ପରବର୍ତ୍ତୀ ଲକ୍ଷଣ ସବୁ ଏଥିରେ ଦେଖିବାକୁ ମିଳିଥାଏ । ଏହି ଗ୍ରନ୍ଥ ଶିବ ଓ ପାର୍ବତୀଙ୍କ କଥୋପକଥନ ଛଳରେ ରଚିତ । ଏମାନେ ହେଲେ ମୁଖ୍ୟ ବକ୍ତା ଓ ଶ୍ରୋତା । ଏହାବ୍ୟତୀତ ଏଥିରେ ରାମ-ବିଶ୍ୱାମିତ୍ର, ରାମ-ଅଗସ୍ତ୍ୟ, ଓ ରାମ-ବଶିଷ୍ଠଙ୍କ ସମ୍ବାଦ ସନ୍ନିବେଶିତ ହୋଇଛି ।

'ଜଗମୋହନ ରାମାୟଣ'ରେ ଶ୍ରୀରାମ ଆଦର୍ଶ ପୁରୁଷ ଅପେକ୍ଷା ପରବ୍ରହ୍ମଙ୍କ ଅବତାର ବା ବିଷ୍ଣୁଙ୍କ ଗୁଣରେ ଗରୀୟାନ । ଏଥିରେ ଜଗନ୍ନାଥଙ୍କ ବ୍ୟତୀତ ଶିବ, ଦୁର୍ଗା ଓ ଅଗ୍ନିଙ୍କର ବର୍ଣ୍ଣନା ଅଛି । ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ସୁସଂପର୍କ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ସେ ଶିବଙ୍କୁ ଶୀରାମଙ୍କର ପରମ ଭକ୍ତ ରୂପେ ବର୍ଣ୍ଣନା କଲାପରି ଶ୍ରୀରାମଙ୍କୁ ଶିବଙ୍କର ଭକ୍ତରେ ପରିଣତ କରିଛନ୍ତି ।

ତାଙ୍କ ରାମାୟଣର ସମସ୍ତ ଚରିତ୍ର ଦେବ ଅଂଶରେ ଜାତ । ଏପରିକି ମନ୍ଥରା ମଧ୍ୟ ଗୋମାତା ସୁରଭିଙ୍କର ଅବତାର । ରାମଲୀଳାର ଅନ୍ତରାଳରେ ଏଥିରେ ଦେବତାମାନଙ୍କର ଲୀଳା ପ୍ରକଟିତ ହୋଇଛି । ଜଗତର ମଙ୍ଗଳ ଅର୍ଥାତ୍ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ପ୍ରଦାନ କରିବା ପାଇଁ ଏହା ରଚିତ ହୋଇଥିବାରୁ ଏବଂ କବି ଏଥିରେ କବିତ୍ୱ ଅପେକ୍ଷା କଥାକୁ ପ୍ରାଧାନ୍ୟ ଦେଇଥିବାରୁ ଏହାର ପୁରାଣତ୍ୱ ପ୍ରତିଷ୍ଠିତ ହୋଇଥାଏ ।

'ଜଗମୋହନ ରାମାୟଣ' ବାଲ୍ମିକୀ ରାମାୟଣର ଅନୁବାଦ ନୁହେଁ । ତେବେ ସାରଳା ଦାସ ମହାଭାରତର କଥା ସବୁକୁ ଯେଉଁଭାବେ ପରିବର୍ତ୍ତନ କରିଛନ୍ତି ତାହା ବଳରାମଙ୍କ ରାମାୟଣରେ ଦେଖିବାକୁ ମିଳେ ନାହିଁ । ମୂଳ କଥାବସ୍ତୁକୁ ଅନୁସରଣ କରିବାବେଳେ ବିଭିନ୍ନ ପୁରାଣରୁ ଓ ଲୋକକଥାରୁ ନୂଆ ଗଳ୍ପ ସବୁ ସଂଗ୍ରହ କରି ଏବଂ କଥାର ବର୍ଣ୍ଣନାକୁ ଓଡ଼ିଆ ସମାଜର ଅନୁକୂଳ କରି ସେ ବାଲ୍ମିକୀ ରାମାୟଣଠାରୁ ପୃଥକ ହୋଇଛନ୍ତି । ତାଙ୍କ ରାମୟଣର ମୁଖ୍ୟ ବୈଶିଷ୍ଟ୍ୟ ହେଲା - (୧) ନୂତନ କଥାର ସଂଯୋଜନା, (୨) ବର୍ଣ୍ଣନାରେ ପାର୍ଥକ୍ୟ ।

'ଜଗମୋହନ ରାମାୟଣ'ର ଆଦର୍ଶ ଗ୍ରନ୍ଥରୂପେ ବାଲ୍ମିକୀ ରାମାୟଣ ଗୃହୀତ ହୋଇଥିଲେ ହେଁ, ଏଥିରେ ବର୍ଣ୍ଣିତ ବହୁ ଉପାଖ୍ୟାନରେ ନୂତନ ଆଖ୍ୟାୟିକା ସବୁ ସଂଯୋଜିତ ହୋଇଛି । ବଳରାମ ଦାସ ଏହି ସବୁ ଆଖ୍ୟାୟିକାକୁ ବିଭିନ୍ନ ପୁରାଣରୁ ଆହରଣ କରିଥିବା ଜଣାଯାଏ । ପ୍ରତ୍ୟେକ ଗଳ୍ପରେ ନୂତନ ଗଳ୍ପ ସଂଯୋଜନା କଲା

ପରି ବଳରାମ ପ୍ରାୟ ପ୍ରତ୍ୟେକ ଘଟଣାକୁ ସ୍ୱତନ୍ତ୍ର ରୂପ ପ୍ରଦାନ କରିଥିଲେ । ସେତେବେଳେ ତାଙ୍କର ଦୃଷ୍ଟି ବାଲ୍ମିକୀଙ୍କ ବର୍ଣ୍ଣନା ଉପରେ ଆବଦ୍ଧ ନହୋଇ ତତ୍କାଳୀନ ସାମାଜିକ ପରିବେଶ ଓ ଶାସ୍ତ୍ରୀୟ ପରମ୍ପରା ଉପରେ ନିବଦ୍ଧ ଥିଲା । ଉଦାହରଣ ପାଇଁ ନିମ୍ନରେ କେତୋଟି ପ୍ରସଙ୍ଗକୁ ବିଶ୍ଳେଷଣ କରାଯାଇପାରେ ।

ବାଲ୍ମିକୀ ରାମାୟଣ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ରଚିତ ହୋଇଥିଲା । ସେତେବେଳେ ଭାରତୀୟ ସମାଜରେ ଯଜ୍ଞାଦି କର୍ମ ଉପରେ ବିଶେଷ ଗୁରୁତ୍ୱ ପ୍ରଦତ୍ତ ହେଉଥିଲା । ସେଥିପାଇଁ ବାଲ୍ମିକୀ ସୀତା ଓ ରାମଙ୍କ ବିବାହ ବର୍ଣ୍ଣନା କଲାବେଳେ ତାଙ୍କ ଯୁଗରେ ପ୍ରଚଳିତ ସଂସ୍କାର ସବୁର ଉଲ୍ଲେଖ କରିଛନ୍ତି । ତାଙ୍କ ପ୍ରଦତ୍ତ ବର୍ଣ୍ଣନାକୁ ନିମ୍ନଭାବରେ ବିଭାଗ କରାଯାଇ ପାରେ ।

(୧) ଦଶରଥ ତାଙ୍କ ମନ୍ତ୍ରୀ ଓ ପୁତ୍ରମାନଙ୍କ ସହ ମିଥିଳାରେ ଉପନୀତ ହେବା ପରେ ବଶିଷ୍ଠ ଓ ସତ୍ୟାନନ୍ଦ ଯଥାକ୍ରମେ ଦଶରଥ ଓ ଜନକଙ୍କ ପୂର୍ବ ପୁରୁଷମାନଙ୍କର ପରିଚୟ ପ୍ରଦାନ କରନ୍ତି ।

(୨) ରାଜା ଦଶରଥ ବିବାହ ଦିବସର ପ୍ରାତଃ କାଳରେ ଶ୍ରାଦ୍ଧ ଓ ଯୋଗଦାନ କର୍ମ ସମ୍ପାଦନ କରି ବ୍ରାହ୍ମଣମାନଙ୍କୁ ବତ୍ସା ସମେତ ଗାଭୀ ସବୁ ପ୍ରଦାନ କରନ୍ତି ।

(୩) ବଶିଷ୍ଠ, ବିଶ୍ୱାମିତ୍ର ଓ ସତ୍ୟାନନ୍ଦ ଯଜ୍ଞଶାଳାରେ ବେଦୀ ସ୍ଥାପନା କରି ସ୍ୱର୍ଣ୍ଣପାତ୍ର, ଧୂପ ପାତ୍ର ଓ ଅର୍ଘପାତ ଦ୍ୱାରା ଏହାକୁ ସଜିତ କରନ୍ତି । ରଞ୍ଜିତ ତଣ୍ଡୁଳ ଓ ଶ୍ରୁବ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ପାତ୍ରରେ ସଜ୍ଜିତ ହୋଇ ବେଦୀ ଉପରେ ରଖାଯାଏ ।

(୪) ଯଜ୍ଞାଗ୍ନିକୁ ସାକ୍ଷୀ ରଖି ସୀତାଙ୍କର ବିବାହ ସମ୍ପାଦିତ ହୁଏ ।

(୫) ବିବାହ ଶେଷରେ ଚାରି ବର ଓ ଚାରି କନ୍ୟା ବଶିଷ୍ଠଙ୍କ ଆଦେଶ କ୍ରମେ ଯଜ୍ଞାଗ୍ନି, ବେଦୀ, ଜନକ ଓ ଅନ୍ୟାନ୍ୟ ଋଷିମାନଙ୍କୁ ପ୍ରଦକ୍ଷିଣ କରିବା ପରେ ବିବାହ କାର୍ଯ୍ୟ ସମାପ୍ତ ହୁଏ ।

(୬) ବିବାହ ପରେ ଜନକ ବହୁ ଯୌତୁକ ପ୍ରଦାନ କରି ଜାମାତା ଓ କନ୍ୟାମାନଙ୍କୁ ବିଦାୟ ଦିଅନ୍ତି ।

'ଅଧ୍ୟାତ୍ମ ରାମାୟଣ'ର ବିବାହ ବର୍ଣ୍ଣନା ବାଲ୍ମିକୀଙ୍କଠାରୁ ସ୍ୱତନ୍ତ୍ର । ଏଥିରେ ବିବାହର ସାଜସଜା ତଥା ଆଡ଼ମ୍ବର ଉପରେ ବିଶେଷ ଗୁରତ୍ୱ ପ୍ରଦତ୍ତ ହୋଇଛି । ବିବାହ ମଣ୍ଡପରେ ରତ୍ନ ଖଚିତ ସ୍ତମ୍ଭ ସବୁରେ ସ୍ୱର୍ଣ୍ଣ, ରୌପ୍ୟ ଓ ମୁକ୍ତା ନିର୍ମିତ ମାଳା ସବୁ ଶୋଭା ପାଇଛି । ଶ୍ରୀରାମ ଏକ ରତ୍ନ ଖଚିତ ସିଂହାସନ ଉପରେ ଆସୀନ; ଭେରୀ, ଦୁନ୍ଦୁଭି ପ୍ରଭୃତି ମଙ୍ଗଳ ବାଦ୍ୟ ଏବଂ ଗୀତ ଓ ନୃତ୍ୟ ମଧରେ ବିବାହ କାର୍ଯ୍ୟ ସଂପାଦନ ହୋଇଛି । ଭକ୍ତି ଧର୍ମର ପ୍ରଭାବ ହେତୁ 'ଅଧ୍ୟାତ୍ମ ରାମାୟଣ' କବି ଜନକଙ୍କ ଦ୍ୱାରା ଶ୍ରୀରାମଙ୍କ ଚରଣାମୃତ ପାନର ବିଶେଷଭାବେ ଉଲ୍ଲେଖ କରିଛନ୍ତି ।

'ଜଗମୋହନ ରାମାୟଣ'ର ବିବାହ ବର୍ଣ୍ଣନା କେବଳ ବାଲ୍ମିକୀ ବା କେବଳ 'ଅଧ୍ୟାତ୍ମରାମାୟଣ'କୁ ଅନୁସରଣ କରିନାହିଁ। ବଳରାମଙ୍କ ଉପରେ ପୂର୍ବରୁ ରଚିତ ବହୁ କାବ୍ୟ ତଥା ନାଟକର ପ୍ରଭାବ ଦେଖିବାକୁ ମିଳେ। ଏହା ସହ ଓଡ଼ିଶାରେ ପ୍ରଚଳିତ ଦେଶାଚାର ଓ ଲୋକାଚାର ମିଶି ଏହାକୁ ଏକ ନୂତନ ରୂପ ପ୍ରଦାନ କରିଛି। 'ଜଗମୋହନ ରାମାୟଣ'ରେ ବର୍ଣ୍ଣିତ ବିବାହର ବିଭିନ୍ନ ବିଭାଗକୁ ଲକ୍ଷ୍ୟ କଲେ ଏହା ଉପରେ ଉତ୍କଳର ତତ୍କାଳୀନ ସମାଜର ପ୍ରଭାବ ଅତି ସ୍ପଷ୍ଟଭାବରେ ପ୍ରକାଶ ପାଏ।

(୧) ଦଶରଥ ତାଙ୍କର ରାଣୀ, ପୁତ୍ର, ମନ୍ତ୍ରୀ, ପୁରୋହିତ ଓ ଚତୁରଙ୍ଗ ସେନା ସହ ମିଥିଳାରେ ଉପନୀତ ହୁଅନ୍ତି।
(୨) ମିଥିଳା ନଗରରେ ଏହି ବିରାଟ ବରଯାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ବାସ-ଗୃହର ବ୍ୟବସ୍ଥା ହୁଏ।
(୩) କିଛିଦିନ ପରେ ସତ୍ୟାନନ୍ଦଙ୍କର ବିବାହ ପ୍ରସ୍ତାବ ଆନୟନ।
(୪) ବଶିଷ୍ଠଙ୍କ କୃତ ଦଶରଥଙ୍କ ବଂଶାବଳୀ ପାଠ।
(୫) ସତ୍ୟାନନ୍ଦଙ୍କର ଜନକଙ୍କ ବଂଶାବଳୀ କଥନ।
(୬) ବିବାହ ତିଥି ନିର୍ଣ୍ଣୟ।
(୭) ସୀତାଙ୍କର ବେଶ, ପ୍ରସାଧନ ଓ ରୂପ ବର୍ଣ୍ଣନା।
(୮) ଦଶରଥଙ୍କର ବଧୂ ଦର୍ଶନ।
(୯) ବର ବରଣ।
(୧୦) ଚୋରୀ ପାଣି ସ୍ନାନ।
(୧୧) ଶ୍ରୀରାମଙ୍କ ବରବେଶ, ବେଦୀ ଓ ଛାମୁଣ୍ଡିଆ ନିର୍ମାଣ।
(୧୨) ବରଯାତ୍ରୀମାନଙ୍କର ମଙ୍ଗଳନ ଓ ଭୋଜନ ବର୍ଣ୍ଣନା।
(୧୩) କନ୍ୟାମାନଙ୍କର ଦୁର୍ଗା ପୂଜା।
(୧୪) ଲବଣ ଚଉଁରୀ କର୍ମ।
(୧୫) ଜନକଙ୍କର ଶ୍ରୀରାମ ପାଦ ଧୌତ।
(୧୬) ଦେଶକାଳ ଓ ମହାବାକ୍ୟ ଉଚ୍ଚାରଣ - ବିବାହକାର୍ଯ୍ୟ ସମ୍ପାଦନ।
(୧୭) ବିବାହ ବେଦୀରେ ଯୌତୁକ ପ୍ରଦାନ।
(୧୮) ବର ଓ କନ୍ୟାମାନଙ୍କର କଉଡ଼ି ଖେଳ, ବନ୍ଧାପନା ଓ ପଞ୍ଚୁଗ୍ରାସୀ ଭୋଜନ।
(୧୯) ମଧୁଶଯ୍ୟା।

ବଳରାମ ଓ 'ରାମ ଚରିତ ମାନସ'ର କବି ତୁଳସୀ ଦାସ ଉଭୟେ ଷୋଡ଼ଶ ଶତାବ୍ଦୀର କବି। ଅଥଚ ଉତ୍ତର ଭାରତ ଓ ଓଡ଼ିଶାରେ ପ୍ରଚଳିତ ବିବାହ-ପଦ୍ଧତିର ପାର୍ଥକ୍ୟ ଯୋଗୁଁ ଏମାନଙ୍କ ବର୍ଣ୍ଣନାରେ କେତେକ ବୈଷମ୍ୟ ପରିଲକ୍ଷିତ ହୁଏ। ବଳରାମ

ଓଡ଼ିଆ ସମାଜରେ ପ୍ରଚଳିତ ବିଧିବିଧାନ ଉପରେ ଗୁରୁତ୍ୱ ଦେଇଥିବା ବେଳେ ତୁଳସୀ ଦାସ କ୍ଷତ୍ରୀୟ ସମାଜ କଥା କହିଛନ୍ତି । ତୁଳସୀଙ୍କ ପ୍ରଦତ୍ତ ବିବାହ ବର୍ଣ୍ଣନା ପାଠ କଲେ, ଏହା ହିଁ ସ୍ପଷ୍ଟ ହୁଏ । ପୁଣି ତୁଳସୀ ଦାସ ଶ୍ରୀରାମଙ୍କୁ ଭଗବାନ ରୂପେ ଗ୍ରହଣ କରିଥିବାରୁ ତାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ସେ ବ୍ରହ୍ମା ଓ ନାରଦଙ୍କର ଉପସ୍ଥିତିର ବର୍ଣ୍ଣନା କରିଛନ୍ତି । ବଶିଷ୍ଠଙ୍କ ସ୍ଥାନରେ ବ୍ରହ୍ମା ବିବାହର ଲଗ୍ନ ସ୍ଥିର କରିଛନ୍ତି ଏବଂ ନାରଦ ଏହି ଲଗ୍ନ ପତ୍ରିକା ଜନକଙ୍କୁ ପ୍ରଦାନ କରିଛନ୍ତି ।

(୧) ଜନକ ତାଙ୍କ ପୁରୋହିତ ସତ୍ୟାନନ୍ଦଙ୍କ ସହ ବରଯାତ୍ରୀମାନଙ୍କୁ ନିମନ୍ତ୍ରଣ କରିବାକୁ ଯିବାବେଳେ ତାଙ୍କ ସହ ସୌଭାଗ୍ୟବତୀ ନାରୀମାନେ ଗୀତ ଗାନ ପୂର୍ବକ ଏବଂ ଦହି ଓ ଦୁବ ପ୍ରଭୃତି ଶୁଭ ପଦାର୍ଥ ସହ ଗମନ କରିଛନ୍ତି ।

(୨) ରାଜକୁମାରମାନେ ଅଶ୍ୱାରୋହଣ କରି ଜନକପୁରରେ ପ୍ରବେଶ କରିଛନ୍ତି ।

(୩) 'ଶ୍ରୀରାମଙ୍କର ଜୟ' କହି ପୁଷ୍ପବୃଷ୍ଟି ।

(୪) ଜନକଙ୍କ ରାଣୀମାନଙ୍କଦ୍ୱାରା ଶ୍ରୀରାମଙ୍କର ଅଭିନନ୍ଦନ ।

(୫) ଶ୍ରୀରାମ ବିବାହ ମଣ୍ଡପରେ ଉପବେଶନ କଲାପରେ ଜନକପୁରର ନାରୀମାନଙ୍କ ଦ୍ୱାରା ମଙ୍ଗଳ ଗୀତ ଗାନ ଓ ବିଭିନ୍ନ ପ୍ରକାରର ମଣି, ବସ୍ତ୍ର ଓ ଅଳଙ୍କାରର ଉପହାର ପ୍ରଦାନ ।

(୬) ସମୁଦି ମାନଙ୍କର ପରସ୍ପରକୁ ସମ୍ଭାଷଣ ଓ ଜନକଙ୍କର ଦଶରଥଙ୍କୁ ଅର୍ଘ୍ୟ ପ୍ରଦାନ ।

(୭) ବରଯାତ୍ରୀ ମାନଙ୍କର ଅଭ୍ୟର୍ଥନା ।

(୮) ବିଭୂଷିତା ସୀତାଙ୍କର ମଣ୍ଡପ ଆଗମନ । ଗୌରୀ, ଗଣେଶ ଓ ବିପ୍ର ପୂଜା ।

(୯) ଲୋକାଚାର ଓ ବେଦାଚାର ଅନୁଯାୟୀ ବିବାହ ସମ୍ପାଦନ, ହସ୍ତଗ୍ରନ୍ଥି ବନ୍ଧନ ଓ ଶ୍ରୀରାମଙ୍କର ସୀତାଙ୍କ ମସ୍ତକରେ ସିନ୍ଦୁର ପ୍ରଦାନ ।

(୧୦) ଯୌତୁକ ପ୍ରଦାନ ।

(୧୧) ବରଯାତ୍ରୀ ମାନଙ୍କର ପ୍ରସ୍ଥାନ ଓ ବରକନ୍ୟାଙ୍କର ଅନ୍ତଃପୁର ଗମନ ।

(୧୨) ବରଯାତ୍ରୀ ମାନଙ୍କର ଭୋଜନ ଏବଂ ଜନକପୁରର ନାରୀମାନଙ୍କ ଦ୍ୱାରା ସେମାନଙ୍କ ଉଦ୍ଦେଶ୍ୟରେ ଗାଳି ଗୀତ ଗାନ ।

(୧୩) ଅଯୋଧ୍ୟା ଗମନ ଓ ରାଣୀମାନଙ୍କ ଦ୍ୱାରା ପୁତ୍ର ଓ ବଧୂମାନଙ୍କର ବନ୍ଦାପନା ।

'ଜଗମୋହନ ରାମାୟଣ'ର କେବଳ ବିବାହ ନୁହେଁ, ପ୍ରତ୍ୟେକ ବର୍ଣ୍ଣନାରେ ବଳରାମ ଯେତେଦୂର ସମ୍ଭବ ହୋଇଛି ଓଡ଼ିଆ ସମାଜର ସଂସ୍କାର, ଅଳଙ୍କାର, ପର୍ବ ପର୍ବାଣୀର ଚିତ୍ର ପ୍ରଦାନ କରିବାକୁ ଭୁଲି ନାହାନ୍ତି । ଓଡ଼ିଆ ସମାଜକୁ ଏତେ ଗୁରୁତ୍ୱ ଦେଇଥିବା କବି ଓଡ଼ିଆମାନଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ଭୁଲିଯାନ୍ତେ କିପରି ?

ସେ ପୁଣି କବିଙ୍କର ମୁଖ୍ୟ ପ୍ରେରଣା ସ୍ରୋତ, 'ଜଗମୋହନ ରାମାୟଣ'ର ପ୍ରକୃତ କବି । ସେଥିପାଇଁ କବି ଶ୍ରୀରାମଙ୍କୁ ଜଗନ୍ନାଥଙ୍କର ସପ୍ତମ ଅବତାର ରୂପେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ହେଉଥିବା ବୃଦ୍ଧ ଦଶମୀ, ହରିଶୟନ ଏକାଦଶୀ, ଗୁଣ୍ଡିଚା ଯାତ୍ରା ସହ ଶ୍ରୀରାମଙ୍କ ଜୀବନର କେତେକ ଘଟଣାକୁ ମିଶେଇ ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ ଜଗନ୍ନାଥଙ୍କ ସେବକ ଶବରମାନେ ଶ୍ରୀରାମଙ୍କର ମଧ ସେବକରେ ପରିଣତ ହୋଇଛନ୍ତି । ବ୍ରାହ୍ମଣମାନେ ଜଗନ୍ନାଥଙ୍କର ସମସ୍ତ ପ୍ରକାର ସେବା କରିବା ପରି ବ୍ରହ୍ମାଙ୍କ ଆଦେଶରେ ସେମାନେ ଶ୍ରୀରାମଙ୍କର ମୁଖ୍ୟ ସେବକ ଭାବେ ନିଯୁକ୍ତ ହୋଇଛନ୍ତି । ସୁବର୍ଣ୍ଣ ସୀତାଙ୍କର ପୂଜା ଓ ଅର୍ଚ୍ଚନା ବର୍ଣ୍ଣନା କଲାବେଳେ ପୁରୁଷୋତ୍ତମ କ୍ଷେତ୍ରରେ ଲକ୍ଷ୍ମୀ ପ୍ରତିମାର ପୂଜୋପଚାର କବିଙ୍କୁ ପ୍ରଭାବିତ କରିଛି । ବିଭୀଷଣଙ୍କ ଦ୍ୱାରା ପୂଜିତ ନାରାୟଣ ପ୍ରତିମା ପରବର୍ତ୍ତୀ ଯୁଗରେ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି ।

ସାରଳା ଦାସ ପାଣ୍ଡବ ମାନଙ୍କୁ ଓଡ଼ିଶା ପରିଦର୍ଶନରେ ଆଣିବା ପରି ବଳରାମ ମଧ ଶ୍ରୀରାମଙ୍କୁ ଚିତ୍ରୋତ୍ପଳା; ପ୍ରାଚୀ, ଋଷିକୁଲ୍ୟା, ଭୁବନେଶ୍ୱର ଓ ଯାଜପୁର ପ୍ରଭୃତି ତୀର୍ଥ ଦର୍ଶନ କରାଇଛନ୍ତି । ରାବଣର ତପସ୍ୟାକ୍ଷେତ୍ର ମଧ ଯାଜପୁର । ଲଙ୍କା ଜୟକରିବାକୁ ଯାଇଥିବା ସେନାବାହିନୀରେ ଓଡ଼ିଶାର ପାର୍ବତ୍ୟାଞ୍ଚଳର ଲୋକମାନେ ଯୋଗଦାନ କରିଛନ୍ତି । ରାମ, ଲକ୍ଷ୍ମଣ ଓ ସୀତା ଯେତେବେଳେ ପୁରୀ ଆସି ଜଗନ୍ନାଥ ଦର୍ଶନ କଲେ, ସେତେବେଳେ କବି ବଳରାମ ଦେଖିଲେ ଶ୍ରୀରାମ ଓ ଜଗନ୍ନାଥ, ଲକ୍ଷ୍ମଣ ଓ ବଳଭଦ୍ର, ସୀତା ଓ ସୁଭଦ୍ରା ମଧରେ କୌଣସି ପାର୍ଥକ୍ୟ ନାହିଁ । ସତେ ଯେପରି ନୀଳାଚଳର ଏହି ତିନି ଦେବତା ରାମ, ଲକ୍ଷ୍ମଣ ଓ ସୀତା ରୂପରେ ଜଗତର ମଙ୍ଗଳ ପାଇଁ ରାମଲୀଳା କରୁଛନ୍ତି । ଏହିପରି ବହୁଭାବେ ବଳରାମ ବାଲ୍ମିକୀ ରାମାୟଣର ବିଷୟବସ୍ତୁକୁ ପରିବର୍ତ୍ତନ କରି ଜଗତର ମଙ୍ଗଳ ସାଧନ ପାଇଁ ରଚନା କଲେ ଯୁଗୋପଯୋଗୀ ଆଉ ଗୋଟିଏ ସ୍ୱତନ୍ତ୍ର ରାମାୟଣ ।



# ଭକ୍ତ ବଳରାମ

ମାଳା ତିଳକ ଯାର ନାହିଁ
ସେ ପୁଣି ବୈଷ୍ଣବ ବୋଲାଇ ('ଚୈତନ୍ୟ ଭାଗବତ' - ଈଶ୍ୱର ଦାସ)

ଅଷ୍ଟାଦଶ ଶତାବ୍ଦୀରେ ଏହା ହିଁ ଥିଲା ବଳରାମଙ୍କର ପ୍ରସିଦ୍ଧି । ବଳରାମ ତାଙ୍କ ଜୀବନ କାଳରେ ବୈଷ୍ଣବମାନଙ୍କର ମାଳା, ତିଳକ ଓ ଅନ୍ୟାନ୍ୟ ବାହ୍ୟାଚାରର ବିରୋଧ କରିଥିଲେ । କେବଳ ବୈଷ୍ଣବ ନୁହନ୍ତି, ସେ ସମୟରେ ପ୍ରଚଳିତ ପ୍ରାୟ ସବୁପ୍ରକାର ସମ୍ପ୍ରଦାୟ ତାଙ୍କ ଆଲୋଚନାର ଶରବ୍ୟ ଥିଲେ । ଭାରତର ପ୍ରସିଦ୍ଧ ସନ୍ଥ କବୀର ମଧ୍ୟ ମାଳା-ତିଳକ-ଧାରୀ ବୈଷ୍ଣବମାନଙ୍କୁ ପରିହାସ କରୁଥିଲେ । କେବଳ କବୀର ଓ ବଳରାମ ନୁହନ୍ତି, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଓ ଜଗନ୍ନାଥଙ୍କ ପରି ଷୋଡ଼ଶ ଶତାବ୍ଦୀର ସବୁ ସାଧକ ଗୋଟିଏ ସ୍ୱରରେ ସାଧକମାନଙ୍କର ଅଯଥା ଆଡ଼ମ୍ବରକୁ ଘୃଣା କରୁଥିଲେ । ବଳରାମ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଧର୍ମ ନାମରେ ସାଧାରଣ ଜନତାକୁ ପ୍ରତାରିତ କରୁଥିବା ବିଭିନ୍ନ ପ୍ରକାର ସାଧକଙ୍କୁ ନିନ୍ଦା କରି ଲେଖିଛନ୍ତି,

ସାକ୍ଷୀ ଶବଦ ଶିଖିଥାନ୍ତି । ପ୍ରାଣୀକି ଦେଖିଲେ ପଢ଼ନ୍ତି ।
ଦୁହାରେ କେ ତାହା ଶିଖିଣ । ମିଛେହେଁ କହୁଥାନ୍ତି ଟାଣ ।
କେ ଅବା ଶ୍ଲୋକ ସ୍ତୁତି କରେ । ଭଣ୍ଡାଉଥାନ୍ତି ନାନାକାରେ ।
ଗୀତା କବିତା ଯନ୍ତ୍ର ଜାଣି । ନାନା ପ୍ରକାରେ ବିଦ୍ୟାବାଣୀ ।
କେ ଅବା ସଂସାର ସାଗରେ । ବୈଷ୍ଣବ ବେଶ ନିରନ୍ତରେ ।
ମାଳା ତିଲେଖ ଧରିଥାନ୍ତି । ବିଅର୍ଥେ ସଂସାରେ ଭ୍ରମନ୍ତି ।
ଜଟା ବିଭୂତି କେ ଭୂଷଣ । କେ ଫଳ ଆହାର କରିଣ ।
କେ ବ୍ରତ ବାର ନିଅମରେ । କେ ତୀର୍ଥ ସାଗରକୁ ଗଲେ ।
କେ ନାନା ତୀର୍ଥରେ ଭ୍ରମଇ । କେବା ନିଶୋହା ହୋଇ ରହି ।
କପିଳ ବାସ କେ କର୍ପାସ । କେ ଉର୍ଧରେଣ ବନବାସ ।

ଏମାନେ ସମସ୍ତେ ଅସତ୍ୟ । ସଂସାରରେ ଏକମାତ୍ର ସତ୍ୟ ହେଉଛି, 'ଜ୍ଞାନୀ ନିର୍ଗୁଣ' । ଅଚ୍ୟୁତାନନ୍ଦ 'ଚାରିଖାନି'ରେ, ଜଗନ୍ନାଥ 'ନାରଦ ସଂହିତା'ରେ, ଯଶୋବନ୍ତ 'ଗୋବିନ୍ଦଚନ୍ଦ୍ର ଓ ଆତ୍ମପରତେ ଗୀତା'ରେ ଓ ଶିଶୁ ଅନନ୍ତ 'ବ୍ରହ୍ମ ପାର୍ଥିବ ତତ୍ତ୍ୱସାର ଗୀତା'ରେ ଏହି ନିର୍ଗୁଣ ଜ୍ଞାନ ତତ୍ତ୍ୱ ମହିମାକୁ ପ୍ରଶଂସା କରି ଅନ୍ୟ ସବୁ ମତବାଦକୁ ବ୍ୟର୍ଥ ରୂପେ ଘୋଷଣା କରିଛନ୍ତି । ଓଡ଼ିଶାର ସନ୍ଥ ସମାଜରେ ଅତ୍ୟନ୍ତ ଲୋକପ୍ରିୟ ଗ୍ରନ୍ଥ

'ଅମରକୋଷ'ରେ ମଧ ସେହି ଭାବନା ପ୍ରକାଶିତ ।

ଅପାର ମଧୁର ଗୁଣ ଯେ କହିଇ ସାକ୍ଷୀ ଶବଦ
ଅମରକୋଷ କହିଅଛି ସେ ନୋହଇ ଗ୍ୟାନ ବନ୍ଧ ।

ସଂସାରରେ ପ୍ରଚଳିତ ସବୁ ପ୍ରକାର ମତବାଦକୁ ହେୟଜ୍ଞାନ କରି କବି ଯାହାଙ୍କର ଆଶ୍ରୟ ନେଲେ, ସେ ହେଉଛନ୍ତି, ନୀଳାଚଳ କ୍ଷେତ୍ରର 'ଅପାର କାଳର ବୁଢ଼ା ଦିଅଁ ଗୋଟି' । କବି ତାଙ୍କର ଦାସ, ସେବକ ଓ ଶରଣଜନ । କବି ବଳରାମଙ୍କ ପାଇଁ ସେ ହେଉଛନ୍ତି ସବୁ - ପିତା, ମାତା ଓ ଗୁରୁ । ତାଙ୍କରି ସହ ଆତ୍ମୀୟତା ପ୍ରତିଷ୍ଠା କରି ନିଜକୁ 'ଜଗନ୍ନାଥଙ୍କ ବେଟା' ଭାବେ ପ୍ରଚାର କରି କବି ଧନ୍ୟ ହୋଇଛନ୍ତି ।

'ଜଗମୋହନ ରାମାୟଣ'ର ପ୍ରତ୍ୟେକ କାଣ୍ଡ ଆରମ୍ଭରେ କବି କିନ୍ତୁ କେବଳ ଜଗନ୍ନାଥଙ୍କୁ ବନ୍ଦନା କରି ନାହାନ୍ତି । ବଳଭଦ୍ରଙ୍କୁ ବନ୍ଦନା କଲାବେଳେ ସେ ଦେଖିଛନ୍ତି ଶିବଙ୍କୁ । ସୁଭଦ୍ରା କବିଙ୍କୁ ଦେଖାଦେଇଛନ୍ତି ଲକ୍ଷ୍ମୀ ଓ ଦୁର୍ଗା ପ୍ରଭୃତି ଶକ୍ତିଙ୍କର ବିଭିନ୍ନ ରୂପରେ । ସେହିପରି ସୁଦର୍ଶନ ହୋଇଛନ୍ତି ତେଜର ପ୍ରତୀକ । ସୂର୍ଯ୍ୟ, ଅଗ୍ନି ପ୍ରଭୃତି ଦେବତା ସେଥିରେ ପ୍ରକାଶିତ । ଏହିପରି ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ସବୁ ଦେବତାଙ୍କୁ ବନ୍ଦନା କରିଥିଲେ ହେଁ, ଜଗନ୍ନାଥଙ୍କୁ ନେଇ ଜଗମୋହନ ରାମାୟଣର ପରିକଳ୍ପନା । କବିଙ୍କ ହୃଦୟରେ ଜଗନ୍ନାଥ ହିଁ ବିରାଜିତ । ତାଙ୍କରି ଆଜ୍ଞାକୁ ଶିରୋଧାର୍ଯ୍ୟ କରି କବି ଏହି ମହାନ ଗ୍ରନ୍ଥ ରଚନାରେ ହାତ ଦେଇଛନ୍ତି । ରାମୟଣ ରଚନା କାଳରେ କବି ଯେତେବେଳେ କୌଣସି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି, ସେତେବେଳେ ସେ ପୁଣି ଥରେ ଜଗନ୍ନାଥଙ୍କୁ ବନ୍ଦନା କରି ତାଙ୍କର ସହାୟତା ପାଇଁ ଆକୁଳ ନିବେଦନ କରିଛନ୍ତି । ଜଗନ୍ନାଥ ବି କବିଙ୍କ ଆକୁତି ମିନତିରେ ବିଚଳିତ ହୋଇ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଛନ୍ତି । ଭଗବାନଙ୍କ ସହ ଏହି ଆତ୍ମୀୟତା ଓ ଆତ୍ମସମର୍ପଣ ଭାବ ହିଁ ଜଗମୋହନ ରାମାୟଣର ପ୍ରକୃତ ନିର୍ଯ୍ୟାସ । ଭକ୍ତର ଭକ୍ତି ଭାବନାରେ ଏହା ରସାଣିତ । କାବ୍ୟ ମଧରୁ ଏହାର କେତେକ ଦୃଷ୍ଟାନ୍ତ ଅନୁସନ୍ଧାନ କରାଯାଇପାରେ ।

କବି ଓ ଭଗବାନଙ୍କ କଥାବାର୍ତ୍ତାର ଏକ ଅପୂର୍ବ ଦୃଶ୍ୟ ଲଙ୍କାକାଣ୍ଡର ପ୍ରାରମ୍ଭରେ ଦେଖିବାକୁ ମିଳେ । ଜଗଦ୍ ଜନନୀ ପରମ ଲକ୍ଷ୍ମୀ, ଶ୍ରୀରାମ-ବିରହିଣୀ ସୀତା ଲଙ୍କାର ଅଶୋକ ବନରେ ବନ୍ଦିନୀ । ଏକ ପକ୍ଷରେ ସ୍ୱୟଂ ପରଂବ୍ରହ୍ମ ବିଷ୍ଣୁ, ପୁଣି ବିଷ୍ଣୁଙ୍କ ସପ୍ତମ ଅବତାର ଶ୍ରୀରାମ, ଓ ଅନ୍ୟ ପକ୍ଷରେ ପ୍ରବଳ ପରାକ୍ରମୀ ଲଙ୍କାର ରାଜା, ପୁଣି ବିଷ୍ଣୁଙ୍କର ପରମ ଭକ୍ତ ରାବଣ । ଏହି ଦୁଇ ମହାଶକ୍ତି ମଧରେ ଯେଉଁ ସମର ସଂଘଟିତ ହୋଇଥିଲା, ତାହା ଜଣେ ସାଧାରଣ ମାନବ-କବି ପକ୍ଷରେ ବର୍ଣ୍ଣନା କରିବା ଯେ ଆଦୌ ସହଜ ନ ଥିଲା, କବି ଏ କଥା ହୃଦୟଙ୍ଗମ କରି ଜଗନ୍ନାଥ କ୍ଷେତ୍ରରେ ରଥଯାତ୍ରା ଉତ୍ସବ ବେଳେ ଉପସ୍ଥିତ ହେଲେ । କବିଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସେହି ଜଗନ୍ନାଥହିଁ କେବଳ ତାଙ୍କୁ

ଏହି ମହାବିପଦରୁ ରକ୍ଷା କରିପାରିବେ, ତା' ନ ହେଲେ 'ଜଗମୋହନ ରାମାୟଣ' ସଂପୂର୍ଣ୍ଣ ହେବା ସମ୍ଭବ ନୁହେଁ । କବି ମନର ଏହି ଭାବନା 'ଜଗମୋହନ ରାମାୟଣ'ର ଲଙ୍କାକାଣ୍ଡରେ ନିମ୍ନଭାବେ ପ୍ରକାଶିତ ।

ରାମ ରାବଣର ହୋଇବାକ ସମର
ଅସହ୍ୟ କଥା ଅତି ଅଗୋଚର ।
ଦେଖିଲାର କଥା କହିତ ନୁଆରି
ମୁହିଂ କେହ୍ନେ କହିବି ମାନବ ତନୁ ଧରି ।
× × ×
ପୁଣି ବିଚାରଇ କହିବେ ଶ୍ରୀଜଗନ୍ନାଥ
ତେବେ ସେ କହିବି ସିନା ଲଙ୍କାକାଣ୍ଡ ଅର୍ଥ ।

ଜଗନ୍ନାଥଙ୍କୁ ସ୍ମରଣ କରି କବି ପୁଡ଼ା ପୁଟୁଳି ବାନ୍ଧି ଯାଇ ପହଞ୍ଚିଲେ ଶ୍ରୀକ୍ଷେତ୍ରରେ । ସେଦିନ ଗୁଣ୍ଡିଚା ଯାତ୍ରା; ଆଗରେ ବଳରାମ, ମଝିରେ ସୁଭଦ୍ରା ଓ ପଛରେ ବିଜେ କରିଛନ୍ତି ନନ୍ଦିଘୋଷ ରଥରେ ମହାବାହୁ ଶ୍ରୀଜଗନ୍ନାଥ ।

ସେହି ନବ ଦୁର୍ବାଦଳ ସମ ଜଳମେଘ ସଦୃଶ ଶରୀରକୁ ଅବଲୋକନ କରିବା କ୍ଷଣି କବିଙ୍କ ହୃଦୟରେ ଅପୂର୍ବ ପୁଲକ ଜାତ ହେଲା । ସ୍ୱଚ୍ଛ ଦିବାଲୋକ ପରି କବିଙ୍କ ହୃଦୟ ଉଦ୍ଭାସିତ ହୋଇଉଠିଲା । କବି ଜାଣିପାରିଲେ ସତେ ଯେପରି ଜଗନ୍ନାଥ ତାଙ୍କୁ ହିଁ ଚାହିଁ ହସୁଛନ୍ତି ।

ଆଖି ନ ପିଛଡ଼ନ୍ତି ଭୃତ୍ୟଜନ ଚାହଁ ।
ଅଧର ବିକାଶଇ ହସି କଥା କହଁ ॥

ଏଠି ହସିବା ଠାଣିରୁ କବି ଭଗବାନଙ୍କ ଅନୁଗ୍ରହ ଥିବା ଜାଣିପାରି ଲେଖିଲେ,

ତାହା ବଖାଣ କରଇ ତରିବାର ହିତେ
ଯହୁଁ ଅନୁଗ୍ରହ କଲେ ଜଗନ୍ନାଥେ ।

'ଜଗମୋହନ ରାମାୟଣ'ର ଉତ୍ତରାକାଣ୍ଡରେ ଶ୍ରୀରାମ କର୍ତ୍ତୃକ ସୀତା-ନିର୍ବାସନ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ କବିଙ୍କ ପାଇଁ ଏହିପରି ଅଉ ଏକ ସଙ୍କଟ କାଳ ଉପସ୍ଥିତ ହୁଏ । ଯେତେବେଳେ କବିଶ୍ରେଷ୍ଠ ବାଲ୍ମୀକି ମୁନି ଏହାର ବର୍ଣ୍ଣନା କରିଥିଲେ, ସେତେବେଳେ ସେ ଜପତପ ପର୍ଯ୍ୟନ୍ତ ପରିତ୍ୟାଗ କରିଦେଇଥିଲେ । ଏପରି ଅବସ୍ଥାରେ ମାନବତନୁଧାରୀ ବଳରାମ ଏହାକୁ କିପରି ବର୍ଣ୍ଣନା କରିବେ ? ଅଥଚ ବର୍ଣ୍ଣନା ନ କଲେ ରାମାୟଣ ଚିରଦିନ ପାଇଁ ଅପୂର୍ଣ୍ଣ ରହିଯିବ । ସେ ଥରେ 'ଲକ୍ଷ୍ମୀ ପୁରାଣ'ରେ ଲକ୍ଷ୍ମୀଙ୍କ କଷଣ କଥା ବର୍ଣ୍ଣନା କରିଥିଲେ । ସେ ବେଳ କଥା ଅଲଗା । ଲକ୍ଷ୍ମୀଙ୍କୁ ଗୃହରୁ ତଡ଼ିଦେଇ ଜଗନ୍ନାଥ ଓ ବଳରାମ ଅଶେଷ ଦୁଃଖର ଭାଗୀ ହେଲେ ଏବଂ ଶେଷକୁ ବାଧ୍ୟ ହୋଇ

ଲକ୍ଷ୍ମୀଙ୍କର ଶରଣାପନ୍ନ ହେଲେ । ବହୁ କାକୁତି ମିନତି କରି ଶେଷରେ ଲକ୍ଷ୍ମୀଙ୍କୁ ମନ୍ଦିରକୁ ଫେରାଇ ଆଣିଥିଲେ । କିନ୍ତୁ ଏଥର ପରମଲକ୍ଷ୍ମୀ ସୀତାଙ୍କର ନିର୍ବାସନ ହେବ ଚିରଦିନ ପାଇଁ । ସୀତା ଅଯୋଧ୍ୟା ଫେରିବେ ସତ; କିନ୍ତୁ ଫେରିବା ସଙ୍ଗେ ସଙ୍ଗେ ପୁଣି ପାତାଳରେ ପ୍ରବେଶ କରିବେ । ଲକ୍ଷ୍ମୀଙ୍କ କଷଣଠାରୁ ଏହା ଆହୁରି କରୁଣ, ଆହୁରି ହୃଦୟ-ବିଦାରକ । ଏଥିରେ ବିଷ୍ଣୁଙ୍କ ପାଟରାଣୀ ଲକ୍ଷ୍ମୀହିଁ କେବଳ କବିଙ୍କୁ ସାହାଯ୍ୟ କରିପାରିବେ । କବି ସେଥିପାଇଁ ଏହି ପ୍ରସଙ୍ଗ ପୂର୍ବରୁ କମଳାଙ୍କର ଏକ ବନ୍ଦନା ସଂଯୋଜନା କଲେ । କବିଙ୍କ ଆକୁଳ ପ୍ରାର୍ଥନାରେ ଶ୍ରୀଜଗନ୍ନାଥ ବିଗଳିତ ହୋଇ କବିଙ୍କ ପାଇଁ ଲକ୍ଷ୍ମୀଙ୍କର ହାତ ଧରି କବିଙ୍କୁ ଅନୁଗ୍ରହ ଆଜ୍ଞା ପ୍ରଦାନ କରିବାପାଇଁ ଅନୁରୋଧ କଲେ ।

କବିଙ୍କର ଭାଳେଣି, କମଳାସ୍ତବ ଓ ଜଗନ୍ନାଥଙ୍କର ଲକ୍ଷ୍ମୀଙ୍କୁ ଅନୁରୋଧ ପ୍ରଭୃତି ଘଟଣା କାବ୍ୟର ଏକ ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ସ୍ଥାନ ପାଇ ଜଗନ୍ନାଥଙ୍କ ସହ କବିଙ୍କର ଆତ୍ମୀୟତାକୁ ସୁଦୃଢ଼ କରିଦେଲା ।

ବନ୍ଦଇ କମଳା ଯେ ବିଷ୍ଣୁର ପାଟରାଣୀ
ଦୈତ୍ୟବଳ-ଧ୍ୱଂସିନୀ ଜଗତ ଠାକୁରାଣୀ ।
ତାହା କହିବାକୁ ଯେ କରଇ ବଡ଼ ଭୟେ
ତୁ ମୋତେ ସଦୟା କର ଆଗୋ ମହାମାୟେ ।
ନ କହିଲେ ଏହି ଗ୍ରନ୍ଥ ନୁହଇ ସଂପୂର୍ଣ୍ଣ
ତେଣୁ ବ୍ୟାକୁଳରେ ମୁଂ ଭାଳଇ ମନେ ମନ ।
ଶୁଣି ପୁଣି ଅନୁଗ୍ରହ କଲେ ଜଗନ୍ନାଥ
ମୋହ ପାଇଂ ଧଇଲେ ମହାଲକ୍ଷ୍ମୀଙ୍କ ହାତ ।
ସିନ୍ଧୁର ଦୁଲଣୀ ଯେ ସୁପ୍ରସନ୍ନ ହୋଇଲେ
ରାମାୟେଣ ଗ୍ରନ୍ଥ ତୁହି କହସି ବୋଇଲେ ।
ଲକ୍ଷ୍ମୀନାରାୟଣ ଅନୁଗ୍ରହ ଆଜ୍ଞା ପାଇ
ରାମାୟଣ ମହାଗ୍ରନ୍ଥ ବଖାଣଇ ମୁହିଂ । 'ଉତ୍ତରାକାଣ୍ଡ'

ରାମ କଥାକୁ ଜଗନ୍ନାଥଙ୍କ ସହ ମିଶାଇ ଗାଇବାର ଏହି ଅପୂର୍ବ ପ୍ରଚେଷ୍ଟା କେବଳ ଭକ୍ତ ବଳରାମଙ୍କ ଦ୍ୱାରାହିଁ ସମ୍ଭବ ଥିଲା ।

ଜଗନ୍ନାଥଙ୍କ ସହ କବି ବଳରାମଙ୍କ କଥୋପକଥନ ଅନ୍ୟ ଏକ ଦୃଶ୍ୟ ମିଳେ 'ଉଦ୍ଧବ ଗୀତା'ରେ । ସେଦିନ ମଧ ରଥଯାତ୍ରା । କବି ଶ୍ରୀଜଗନ୍ନାଥଙ୍କର ସୁନ୍ଦର ଶ୍ରୀମୁଖକୁ ଅନାଇ ଭାବବିହ୍ୱଳ କଣ୍ଠରେ ପଚାରିଛନ୍ତି :-

ଶ୍ରୀଜଗନ୍ନାଥ ସୁନ୍ଦର ଶ୍ରୀମୁଖ ବଳରାମ ଦାସ ଅନାଇ
କରପତ୍ର ଯୋଡ଼ି ବୋଲଇ,

ଭୋ ସ୍ୱାମୀ !
ତୁମ୍ଭେ ଯେ ଗୋପେ ହୋଇଥିଲ କହ୍ନାଇ
କାହେ ଯେ ମଥୁରାକୁ ଗଲ
ତହିଁ କଲ କେବଣ ବିଧାନ
ତାହା ମୋତେ ସଞ୍ଚପି କହିବାକୁ ଆଜ୍ଞା ହଉ
କହ ବୋଲି କହିଲେ ଭଗବାନ ।

ଭଗବାନଙ୍କ ଅନୁଗ୍ରହ ଓ ଆଜ୍ଞା ପାଇ କବି 'ଉଦ୍ଧବ ଗୀତା' ରଚନା କଲେ ଏବଂ ଗୁଣ୍ଡିଚାଯାତ୍ରାର ସାତଦିନ ଯାକ କବି ଗୁଣ୍ଡିଚା ଯାତ୍ରା ପାଇଁ ରୁଣ୍ଡ ହୋଇଥିବା ଭକ୍ତମାନଙ୍କୁ ଆନନ୍ଦ ପ୍ରଦାନ କଲେ ।

ଶ୍ରୀଜଗନ୍ନାଥ ଚଢ଼ିଣ ରଥ ଗୁଣ୍ଡିଚା ଘରକୁ ଆଏ ।
ସାତଦିନ ତହିଁ ରାଉତ କାଢ଼େଣି ବଳରାମ ଦାସ ଗାଏ ।

ଭକ୍ତ ଓ ଭଗବାନଙ୍କର ଏହି ଆତ୍ମୀୟତା ଗ୍ରନ୍ଥ ମଧ୍ୟରେ ବହୁ ଭାବେ ପ୍ରକାଶିତ । କବି କେତେବେଳେ ଭଗବାନଙ୍କ ଦାସ, ସେବକ ବା ଭୃତ୍ୟ ଭାବେ ପରିଚିତ ତ କେତେବେଳେ ଭଗବାନ ତାଙ୍କର ସଖା, ସୋଦର, ଗୋସାଇଁ ଠାକୁର ଓ ପ୍ରାଣବନ୍ଧୁ । ଜଗନ୍ନାଥଙ୍କଠାରେ ସକ୍ରମତେ ଆତ୍ମସମର୍ପଣ କରିଦେବା ପରେ କବି ନିଜକୁ 'ଜଗନ୍ନାଥଙ୍କ ବେଟା' ଭାବେ ପରିଚୟ ଦେଲେ । 'ଉଦ୍ଧବଗୀତା'ରେ କବି କହିଛନ୍ତି,

ନୀଳଗିରି ଜଗନ୍ନାଥ ବେଟା ବଳରାମ ଦାସ
ଉଦ୍ଧବ ଗୀତା ଯେ ମୁହିଁ କଲଇଂ ପ୍ରକାଶ ।

କବିଙ୍କ ରଚିତ ଅନ୍ୟ ଏକ କ୍ଷୁଦ୍ର କବିତାରେ ମଧ୍ୟ ଏହି ଭାବନା ଦେଖିବାକୁ ମିଳେ ।

ବେଳେ କହିଁ ସହିବା ପ୍ରଭୁଙ୍କୁ ନ କହିବା
ତୁହି ତ ସର୍ଗେ ଇନ୍ଦ୍ର ଗୋଟା
ଭଣେ ବଳରାମ ଦାସ ତୋଳାଇବା ନୂଆ ଉଆସ
ମୁଂ ଶ୍ରୀଜଗନ୍ନାଥଙ୍କର ବେଟା ।

'ମୁଁ ଶ୍ରୀଜଗନ୍ନାଥଙ୍କ ବେଟା'ରୁ କବି ଜଗନ୍ନାଥଙ୍କଠାରେ ସମ୍ପୂର୍ଣ୍ଣ ଭାବେ ଆତ୍ମସମର୍ପଣ କରିଥିବା ଭାବ ନିହିତ । ଭକ୍ତି ମାର୍ଗରେ ସମ୍ପୂର୍ଣ୍ଣ ସମର୍ପଣହିଁ ସର୍ବଶ୍ରେଷ୍ଠ ତତ୍ତ୍ୱ । ଯେତେବେଳ ପର୍ଯ୍ୟନ୍ତ ଭକ୍ତ ଭଗବାନଙ୍କଠାରେ ନିଜକୁ ସମ୍ପୂର୍ଣ୍ଣଭାବେ ସମର୍ପଣ ନ କରିଛି, ସେତେବେଳ ପର୍ଯ୍ୟନ୍ତ ତା'ର ଭକ୍ତି ଅପୂର୍ଣ୍ଣ । ସେ ଅହଂଭାବରୁ ମୁକ୍ତ ନୁହେଁ । ସମ୍ପୂର୍ଣ୍ଣଭାବେ ସମର୍ପଣ କରିଦେବା ପରେ ଭକ୍ତ ଓ ଭଗବାନ ଅଭେଦ ହୋଇଯାଆନ୍ତି । ସେତେବେଳେ ଭକ୍ତ ଓ ଭଗବାନ ମଧ୍ୟରେ କୌଣସି ପାର୍ଥକ୍ୟ ରହେ ନାହିଁ । ଭଗବାନ ଭକ୍ତରେ ବଶ ହୁଏ ଓ ଭକ୍ତ ଭଗବାନଙ୍କର ଅଧୀନ ହୋଇଯାଏ । 'ଶ୍ରୀମଦ୍ ଭଗବଦ୍ ଗୀତା'ରେ କୁହାଯାଇଛି -

ଯୋ ମା ପଶ୍ୟତି ସର୍ବତ୍ର ସର୍ବ ଚ ମୟି ପଶ୍ୟତି ।

ତସ୍ୟାହଂ ନ ପ୍ରଣଶ୍ୟାମି ଚ ମେ ନ ପ୍ରଣଶ୍ୟତି । (ଗୀତା - ୬/୩୦)

ଆତ୍ମସମର୍ପଣ ଭାବନାର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ମଧ୍ୟ 'ଜଗମୋହନ ରାମାୟଣ'ରୁ ମିଳିଥାଏ । ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, ''ତତିଦ୍‌ଭାନ ପ୍ରଦାୟୈଭ୍ୟା ଯୋ ଭୁଂକ୍ତେ ସ୍ତେନ ଏବଂ ସଃ'' /୧୨ । ଅର୍ଥାତ୍ ଯାହାଙ୍କ ସହଯୋଗରେ କାମ ସମ୍ପନ୍ନ ହେଲା ତାଙ୍କୁ ତା'ର ଅଂଶ ନ ଦେଇ ଏକୁଟିଆ ଭୋଗ କରିବା ଚୋରର କାର୍ଯ୍ୟ । ଜଗନ୍ନାଥଙ୍କ ଅସୀମ କୃପାରୁ ମୂର୍ଖ, ଅଜ୍ଞ ବଳରାମ ହେଲେ ଭକ୍ତକବି ବଳରାମ । ତାଙ୍କରି ଦୟାରୁ ସେ ରଚନା କଲେ 'ଜଗମୋହନ ରାମାୟଣ' ସଦୃଶ ଜଗତ୍ ମଙ୍ଗଳକାରୀ ମହାନ୍ ଗ୍ରନ୍ଥ । ଭଗବାନଙ୍କ ଏହି ଦାନର ପ୍ରତିଦାନ ହେଲା ଜଗନ୍ନାଥଙ୍କ ପାଦତଳେ 'ଜଗମୋହନ ରାମାୟଣ' ରୂପୀ ପୁଷ୍ପାଞ୍ଜଳି । ଯାହାର ଦାନ ତାକୁ ଫେରାଇଦେଇ କବି କୃତାର୍ଥ ହୋଇଗଲେ ।

ନୀଳଗିରି ଜଗନ୍ନାଥ ଦୟା ମୋତେ କଲେ
ତେଣୁ ସେ ଗ୍ରନ୍ଥ ମୋର ଶରୀରୁ ପ୍ରସରିଲେ
ଜଗତର ହିତେ ମୁଂ ଯେ ଗ୍ୟାନ କହିଲି
ପାପୀ ଜନଙ୍କର ପୁଣ୍ୟ କରାଇଲି ।
ଜଗମୋହନ ରାମାୟଣ ଯେଥି କବି ଜଗନ୍ନାଥ,
ତାର ଆଜ୍ଞାରେ କହିଲି ମୋହୋର ହାଥ ॥

'ଜଗମୋହନ ରାମାୟଣ', 'ଉଦ୍ଧବ ଗୀତା' ଓ 'ଶ୍ରୀମଦ୍ ଭାଗବଦ୍ ଗୀତା'କୁ ଜଗନ୍ନାଥଙ୍କଠାରେ ସମର୍ପଣ କରିବା ଦ୍ୱାରା ହିନ୍ଦୁ ଧର୍ମର ଅନ୍ୟ ଏକ ଲକ୍ଷ୍ୟ ମଧ୍ୟ ସାଧିତ ହୋଇଥିଲା । ହିନ୍ଦୁ ପରମ୍ପରାର ବୈଶିଷ୍ଟ୍ୟ ହେଲା, ଭୋଜନ ପୂର୍ବରୁ ସବୁ ଖାଦ୍ୟ ପଦାର୍ଥ ଭଗବାନଙ୍କଠାରେ ସମର୍ପଣ କରିବା । ନୈବେଦ୍ୟ ପୂର୍ବରୁ ଭୋଜ୍ୟ ପଦାର୍ଥ ସାଧାରଣ ଖାଦ୍ୟ ଥାଏ । ଅଥଚ ଭୋଗ ଲାଗିବା ପରେ ସେ ସବୁ ହୁଏ ମହାପ୍ରସାଦ । ସେହିପରି ମାନବ-କବି-କୃତ କାବ୍ୟ ହେଲା ପ୍ରାକୃତ । ଭଗବାନଙ୍କଠାରେ ସମର୍ପିତ ହେଲାପରେ ଏହା ହୁଏ ଅପ୍ରାକୃତ, ଓ ଦିବ୍ୟ ଭାବାପନ୍ନ ମହାନ୍ କାବ୍ୟ । ସେତେବେଳେ ଏହା ମହାପ୍ରସାଦ ପରି ମଣିଷକୁ ମୋକ୍ଷ ଦାନ କରେ ।

''ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା'' କହିବା ଦ୍ୱାରା ବଳରାମ ନିଜକୁ କେବଳ ଜଗନ୍ନାଥଙ୍କ ସନ୍ତାନ ଭାବେ ପ୍ରତିପାଦିତ କରିନାହାନ୍ତି, ମାନବ ସୃଷ୍ଟ ଜାତିଭେଦ ପ୍ରଥାକୁ ବିଲୋପ କରି ସମସ୍ତଙ୍କୁ ମାନବ ଜାତିର ସନ୍ତାନ ରୂପେ ଗ୍ରହଣ କରିଛନ୍ତି । ସମାଜର ଛୋଟ ଓ ବଡ଼ ଜାତିର ପାର୍ଥକ୍ୟକୁ ଦୂର କରି ସେ ସମସ୍ତଙ୍କୁ ସମାନ ଅଧିକାର ଦେଇଛନ୍ତି । ସାଧାରଣ ମନୁଷ୍ୟ ଓ ଭଗବାନଙ୍କ ଭକ୍ତ ମଧ୍ୟରେ ଥିବା ପାର୍ଥକ୍ୟ ଏଇଠି ସ୍ପଷ୍ଟଭାବେ

ବାରି ହୋଇଯାଏ । ସାଧାରଣ ଭୋଜ୍ୟ ପଦାର୍ଥ ପ୍ରସାଦରେ ପରିଣତ ହେବା ପରେ ଜାତି ଓ ବର୍ଣ୍ଣ ନିର୍ବିଶେଷରେ ଏହା ଯେପରି ସମସ୍ତଙ୍କ ଦ୍ୱାରା ଆଦୃତ ହୁଏ, ସେହିପରି ସାଧାରଣ ମନୁଷ୍ୟ ଭକ୍ତରେ ପରିଣତ ହେବା ପରେ ସେ କେବଳ ଏକ ସ୍ୱତନ୍ତ୍ର ଜାତି ନୁହେଁ, ପରମ ଜାତିରେ ପରିଣତ ହୁଏ । ବୈଷ୍ଣବ ଧର୍ମର ଆଚାର୍ଯ୍ୟ ସେଥିପାଇଁ ନିଜକୁ 'ଦାସ' ଅର୍ଥାତ୍ ଭଗବାନଙ୍କ ଦାସ ଉପାଧିରେ ଭୂଷିତ କରୁଥିଲେ ଏବଂ ଭକ୍ତ ହେବାପାଇଁ ଜାତିର ଯୋଗ୍ୟତାକୁ ଅସ୍ୱୀକାର କରୁଥିଲେ । 'ଉଦ୍ଧବ ଗୀତା'ରେ ନିଜର ଏହି ମହାନ୍ ଆଦର୍ଶକୁ ପ୍ରଚାର କରି କବି କହିଛନ୍ତି -

ଯାହା ତହିଂ ଶ୍ରୀ ବାସୁଦେବର କଥା ନାହିଂ ।
ବ୍ରାହ୍ମଣ ହୋଇଲେହେଂ ତାହାକୁ ପୂଜା କାହିଂ ।
ଚଣ୍ଡାଳ ହୋଇଣ ଯେବେ ବିଷ୍ଣୁପୂଜା କରି
କେହୁଣି ହିଂ ଜାତି ତାକୁ ନୋହଇ ନା ସରି ।
ବିଷ୍ଣୁ ଭକ୍ତିଂ ଲୋକର ଜାତିରେ କିସ କାର୍ଯ୍ୟ
ଜାତି ବୋଲିବାକୁ ତାହାକୁ ବଡ଼ ଲାଜ ।।

'ଶ୍ରୀ ଚୈତନ୍ୟ ଚରିତାମୃତ'ର ଅନ୍ତ୍ୟଲୀଳାରେ ଶ୍ରୀ ମହାପ୍ରଭୁ ମଧ ଅନୁରୂପ ଉପଦେଶ ଦେଇ କହିଛନ୍ତି,

ନୀଚ ଜାତି ନହେ କୃଷ୍ଣ ଭଜନେ ଅଯୋଗ୍ୟ
ସତକୁଳ ବିପ୍ର ନହେ ଭଜନେର ଯୋଗ୍ୟ ।
ଯେଉ ଭଜେ ସେଇ ବଡ଼ ଅଭକ୍ତ ହୀନ ଛାର
କୃଷ୍ଣ ଭଜନେ ନାହିଁ ଜାତି କୁଳାଦି ବିଚାର

କବିଙ୍କ "ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା" ଉକ୍ତି ଅଭିମାନର ଦ୍ୟୋତକ ନୁହେଁ, ଦୀନତାର ପ୍ରକାଶକ । 'ଜଗନ୍ନାଥଙ୍କ ବେଟା' କହି ସମସ୍ତଙ୍କ ସହ ସମାନ ହେବାର ଆକୁଳ ନିବେଦନ । ଭଗବାନ କୁଳୀନ, ପଣ୍ଡିତ, ଧନୀ ଅପେକ୍ଷା ଦୁଃଖୀ, ଦରିଦ୍ରକୁ ଅଧିକ ଦୟା ପ୍ରକାଶ କରିଥାନ୍ତି ।

ଦୀନେର ଅଧିକ ଦୟା କରେ ଭଗବାନ
କୁଳୀନ ପଣ୍ଡିତ ଧନୀର ବଡ଼ ଅଭିମାନ ।

କଳିଯୁଗରେ ଧ୍ୟାନ, ଯଜ୍ଞ ଓ ଅର୍ଚ୍ଚନା ପ୍ରଭୃତି ମାର୍ଗ ପ୍ରକୃତ ଯୋଗ୍ୟତା ଅଭାବରୁ ନିଷ୍ଫଳ ହୋଇଯାଏ । ଏହି ଅଭାବର ପୂରଣ ହୁଏ ଭଗବାନଙ୍କ ନାମ ସଂକୀର୍ତ୍ତନରେ । 'ବୃହଦ୍ ନାରଦୀୟ ପୁରାଣ'ରେ ନାମସଂକୀର୍ତ୍ତନର ମାହାତ୍ମ୍ୟ ପ୍ରଚାର କରାଯାଇ କୁହାଯାଇଛି,

ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍ ।

ବଳରାମ ରାମ ନାମ ଜପରେ ମତ୍ତ ଥିବାର ସୂଚନା ଅନ୍ୟତ୍ର ମିଳୁଥିଲେ ହେଁ, 'ଜଗମୋହନ ରାମାୟଣ'ରେ ସେ ଜଗନ୍ନାଥ ଭଜନକୁ ପ୍ରାଧାନ୍ୟ ଦେଇଛନ୍ତି । ଲଙ୍କାକାଣ୍ଡ ଶେଷରେ ଥିବା ଜଗନ୍ନାଥ ଭଜନ ଏହାର ପରିଚାୟକ ।

ଜଗନ୍ନାଥ ଦେଖିବି ଚାହିଁବି ଜଗନ୍ନାଥ
ଜଗନ୍ନାଥ ଛାମୁରେ ଯୋଡ଼ିବି ଦୁଇ ହାତ ।
ଜଗନ୍ନାଥ ବୋଲି ମୁଂ ବଞ୍ଚଇ ହାଦେ ଦିନ ।
ଜଗନ୍ନାଥ ବିନୁ ଆନେ ନ ବଳଇ ମନ ।
ଜଗନ୍ନାଥ ଶରଣ ମୁଁ ଜଗନ୍ନାଥ ଶାଖା
ଜଗନ୍ନାଥ ବିନୁ ମୋର ଆନେ ନାହିଁ ଲେଖା ।
ଜଗନ୍ନାଥ ମୋହର ପ୍ରାଣର ଆଦିପତି
ଜଗନ୍ନାଥ ବିନୁ ମୁଁ ଆନେ ନ ପାଇବି ମୁରତି ।
ଜଗନ୍ନାଥ ବିତର୍କେ ନାହିଁ ଆନ ସୁଖ
ଜଗନ୍ନାଥ ମୋହର ଅଟନ୍ତି ପଞ୍ଚଭୂତ ।
ଜଗନ୍ନାଥ ସୁନ୍ଦର ମୁଖ ଚାହିଁ ଚାହିଁ
ହୋଇଲି ବଶ ମୁଁ ଆନେ କାର୍ଯ୍ୟ ନାହିଁ ।

ଜଗନ୍ନାଥଙ୍କ ନାମଭଜନ, ରୂପଦର୍ଶନ ଓ ଜଗନ୍ନାଥଙ୍କଠାରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ, ପୁଣି ସବୁପ୍ରକାର ସାଧନାଠାରୁ ନିର୍ଗୁଣ ବ୍ରହ୍ମ ସାଧନାର ଶ୍ରେଷ୍ଠତ୍ୱ ପ୍ରତିପାଦନ ମଧ୍ୟରେ ଆପାତତଃ ପରସ୍ପର ବିରୋଧୀ ଭାବନା ନିହିତ ଥିବା ଜଣାଯାଉଥିଲେ ହେଁ, ବଳରାମ ଦାସ ଭକ୍ତି ଓ ଜ୍ଞାନକୁ ପରିସ୍ପରର ପରିପୂରକ ଭାବେ ଗ୍ରହଣ କରିଥିଲେ । 'ବୃହଦାରଣ୍ୟକ ଉପନିଷଦ'ରେ କୁହାଯାଇଛି ଯେ ଯେଉଁ ଉପାସକ ଆପଣାର ଆରାଧ୍ୟ ଈଶ୍ୱରଙ୍କ ସହ ନିଜର ଅଭେଦତ୍ୱ ସ୍ଥାପନ କରେ, ସେ ଈଶ୍ୱରଙ୍କ ଅଭିନ୍ନାତ୍ମା ହୋଇଯାଏ- ''ଆତ୍ମା ହ୍ୟେଷା ସ ଭବତି ।''

ଏଭଳି ଅଭେଦୋପାସକଙ୍କୁ ସଗୁଣ ଈଶ୍ୱର ସର୍ବୋଚ୍ଚ ଜ୍ଞାନ, ଅଖଣ୍ଡ ନିର୍ଗୁଣ ବ୍ରହ୍ମର ସାକ୍ଷାତକାର କରାନ୍ତି । ସେତେବେଳେ ଉପାସକ ନିଜର ବ୍ୟଷ୍ଟିଭାବକୁ ସବୁବେଳ ପାଇଁ ପରିତ୍ୟାଗ କରି ସାଗରରେ ନଦୀ ମିଶିବା ପରି ମିଶିଯାଏ ।

ଯଥା ନଦଃ ସ୍ୟନ୍ଦମାନାଃ ସମୁଦ୍ରେ
ତସ୍ତଂ ଗଛନ୍ତି ନାମ ରୂପେ ବିହାୟ
ତଥା ବିଦ୍ୱାନ ନାମ ରୂପାଦ୍ ବିମୁକ୍ତ
ପରାତ୍ପରଂ ପୁରୁଷ ମୁପେତି ଦିବ୍ୟମ୍ ।।

କବି ଚିନ୍ତାଧାରାକୁ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ନିମ୍ନଭାବେ ପ୍ରକାଶ କରିଛନ୍ତି,

ନଦୀମାନେ ଯେ ମାର୍ଗେ ଯାନ୍ତି । ଏକା ସମୁଦ୍ରେ ଯେସନେ ମିଳନ୍ତି ।
ସେହିପରି ମନ ନିରୋଧ କଲେ । ପରମ ସୁଖ ପାଇ ସେ କାଳେ ।
ତୃତୀୟ ଆଧ୍ୟାୟ - ୩୧/୩୨ ପଦ ।

ଅର୍ଥାତ୍ ନଦୀ ଯେପରି ନିଜର ନାମ ରୂପକୁ ପରିତ୍ୟାଗ କରି ସମୁଦ୍ରରେ ଲୀନ ହୋଇଯାଏ, ସେହିପରି ସାଧକମାନେ ନିଜର ନାମ, ରୂପର ବନ୍ଧନକୁ ମୁକ୍ତ ହୋଇ ପରାତ୍ପର ଦିବ୍ୟପୁରୁଷ ସହ ଏକାକାର ହୋଇଯାଆନ୍ତି । ସାଧନାଲବ୍ଧ ଜ୍ଞାନ କେବଳ ସାଧକର ବୌଦ୍ଧିକ କଳ୍ପନା ବିଳାସ ନୁହେଁ, ଏକ ଅନିର୍ବଚନୀୟ ଅନୁଭୂତି । ବ୍ରହ୍ମର ସାକ୍ଷାତକାର ଏବଂ ଚରମ ଅନୁଭୂତି ରୂପ ଏହି ଜ୍ଞାନ ବ୍ୟତୀତ ଈଶ୍ୱରଙ୍କ କୃପା ମିଳେ ନାହିଁ । କବି 'ବ୍ରହ୍ମାଣ୍ଡ ଭୂଗୋଳ' ଗ୍ରନ୍ଥର ବିଦେହ ରାଜନ ଉପାଖ୍ୟାନରେ ଜ୍ଞାନଯୋଗ ଓ ଭକ୍ତିଯୋଗର ଅନୁଭୂତି ମଧ୍ୟରେ ଏକ ସମନ୍ୱୟ ଆଣିଛନ୍ତି ।

ଷଡ଼ଚକ୍ର ସାଧନା ପରି ନିଷ୍କାମ କର୍ମ ମଧ୍ୟ ସାଧକର ଅହଂକାରକୁ ଧୀରେ ଧୀରେ କ୍ଷୀଣ କରି ତା'ର ହୃଦୟ ଓ ବୁଦ୍ଧିକୁ ନିର୍ମଳ କରେ । ଏହି ଅବସ୍ଥାରେ ଚିତ୍ତ ଚାଞ୍ଚଲ୍ୟ ଦୂର ହୋଇ ଭକ୍ତିର ଉଦୟ ହୁଏ । ଭକ୍ତି ଦ୍ୱାରା ଆକୃଷ୍ଟ ହୋଇ ଯେତେବେଳେ ଭଗବାନଙ୍କ କୃପା ଭକ୍ତକୁ ପ୍ଳାବିତ କରେ, ସେତେବେଳେ ସେ ବ୍ରହ୍ମଜ୍ଞାନରେ ନିମଜ୍ଜିତ ହୋଇଯାଏ । ବ୍ରହ୍ମଜ୍ଞାନର ପୂର୍ଣ୍ଣତା ହିଁ ଭଗବଦ୍ କୃପା । ବଳରାମ ଏହାକୁ ହିଁ ଭଗବାନଙ୍କ ଆଜ୍ଞା ଓ 'ନିର୍ମଳ ଆତ୍ମାରେ ହରି ଦେଖିବା' ବୋଲି କହିଛନ୍ତି । ଏହି ମାର୍ଗରେ କର୍ମ ଓ ଭକ୍ତି ବ୍ରହ୍ମଜ୍ଞାନର ଅଧୀନ । 'ଉଦ୍ଧବ ଗୀତା'ରେ କବି କହଛନ୍ତି,

ମୋହ ବାଧାଏ ବଣା ହୋଇଥିଲେ
ଏହା ଶୁଣିଣ ଚେତନା ପାଇଲେ ।
ଦର୍ପଣ ମାଜିଲେ କଳଙ୍କ ଗଲା ।
ଉଦ୍ଧବ ଗୋପୀଙ୍କି ତେମନ୍ତ କଲା ।
ନିର୍ମଳ ଆତ୍ମାରେ ଦେଖିଲେ ହରି
ଆନନ୍ଦ ହୋଇ ଗୋପୀ ତୃପ୍ତି କରି ।

'ନାରଦ ଭକ୍ତି ସୂତ୍ର'ରେ ଭକ୍ତିକୁ ସର୍ବଫଳସ୍ୱରୂପା ରୂପେ ଉଲ୍ଲେଖ କରାଯାଇଛି । ବ୍ରହ୍ମାକୁମାର ନାରଦଙ୍କ ମତରେ ଭକ୍ତି କାହାରି ଅଧୀନ ନୁହେଁ ।

ତସ୍ୟା ଜ୍ଞାନମେବ ସାଧନମିତ୍ୟେକେ
ଅନ୍ୟୋନ୍ୟାଶ୍ରୟମିତ୍ୟନ୍ୟେ
ସ୍ୱୟଂ ଫଳ ରୂପ ତେଂତି ବ୍ରହ୍ମକୁମାରଃ । (ଭକ୍ତି ସୂତ୍ର, ୨୯/୩୦)

ଅର୍ଥାତ୍ କାହାରି କାହାରି ମତରେ ଭକ୍ତିର ସାଧନ ଜ୍ଞାନ । ଅନ୍ୟ ଆଚାର୍ଯ୍ୟଙ୍କ ମତରେ ଭକ୍ତି ଓ ଜ୍ଞାନ ପରସ୍ପରର ଆଶ୍ରୟ । ଅଥଚ ବ୍ରହ୍ମାକୁମାର ନାରଦଙ୍କ ମତରେ ଭକ୍ତି

ସର୍ବଫଳସ୍ୱରୂପ - ଏହା ସାଧନ ପୁଣି ସାଧ୍ୟ । ଏହି ମାର୍ଗର ଆଦର୍ଶ ଭକ୍ତ ହେଲେ ଗୋପୀମାନେ । ଭାଗବତକୁ ଅନୁସରଣ କରି ବଳରାମ ଗୋପୀମାନଙ୍କ ଭକ୍ତିମତ୍ତାର ପ୍ରଶଂସା କରି କହିଛନ୍ତି,

ନାନା ପୁଣ୍ୟମାନ କରି ତ୍ରିପୁତି ନୋହନ୍ତି ହରି
ମୁନିମାନେ ନ ପାରନ୍ତି ଯାହାକୁ ସାଧି
ସେ ଭାବ ତୁମ୍ଭେ ପାଇଲ ସଂସାରେ ସାର ହୋଇଲ
ବିଷ୍ଣୁ ଭକ୍ତ ଲୋକ ତୁମ୍ଭେ ଏଡ଼େ ସୁବୁଦ୍ଧି ।

ଗୋପୀମାନଙ୍କର ସାଧୁସଙ୍ଗ, ସତ୍, ଶାନ୍ତି ବିଚାର ନ ଥିଲା । ସେମାନଙ୍କର ଶିକ୍ଷା ଦୀକ୍ଷା ବି ନ ଥିଲା । ବଣମଣିଷ ପରି ସେମାନେ ଥିଲେ ଅଜ୍ଞ ଓ ଅନାଚାରୀ । ଅଥଚ ଭଗବାନଙ୍କ କୃପାରୁ ସେମାନେ ଜ୍ଞାନୀ, ତପୀ, ଓ ସନ୍ନ୍ୟାସୀମାନଙ୍କର ଦୁର୍ଲ୍ଲଭ ଭଗବାନଙ୍କୁ ଅତି ନିକଟରେ ପାଇପାରି ଥିଲେ । ତେଣୁ ଭକ୍ତିମାର୍ଗର ପଥିକ ନିକଟରେ ଜ୍ଞାନ-ସାଧନା ମୂଲ୍ୟହୀନ । ଭକ୍ତିହିଁ ଭକ୍ତିମାର୍ଗର ପଥପ୍ରଦର୍ଶକ ।

ବୈଷ୍ଣବ ପୂର୍ବାଚାର୍ଯ୍ୟମାନଙ୍କର ଏ ପ୍ରକାର ଯୁକ୍ତି ସତ୍ତ୍ୱେ ଭାଗବତର ଗୋପୀମାନେ ବହୁସ୍ଥଳରେ ନିଜର ଜ୍ଞାନଗାରିମାର ପରିଚୟ ଦେଇଛନ୍ତି । ଗୋପୀମାନେ ଶ୍ରୀକୃଷ୍ଣଙ୍କୁ କହିଛନ୍ତି,

ନ ଖଳୁ ଗୋପୀକା ନନ୍ଦନୋ ଭବା
ନଖିଳ ଦେହିନାମନ୍ତରାତ୍ମ ଦୃକ୍
ବିଖନ ସାର୍ଥିତୋ ବିଶ୍ୱ ଗୁପ୍ତୟେ
ସଖ ଉଦେୟିବାନ୍ ସାତ୍ୱତାଂ କୁଳେ ।

ଅର୍ଥାତ୍, ଏକଥା ନିଶ୍ଚିତ ଯେ ଆପଣ କେବଳ ଯଶୋଦାଙ୍କ ପୁତ୍ର ନୁହନ୍ତି; ବରଂ ସମସ୍ତ ଦେହଧାରୀମାନଙ୍କର ଅନ୍ତଃକରଣର ସାକ୍ଷୀ । ହେ ସଖା ! ବ୍ରହ୍ମାଙ୍କ ପ୍ରାର୍ଥନା ଯୋଗୁଁ ଆପଣ ସମ୍ପୂର୍ଣ୍ଣ ଜଗତର ରକ୍ଷାକର୍ତ୍ତା ଭାବେ ଯଦୁକୁଳରେ ଅବତାର ଗ୍ରହଣ କରିଅଛନ୍ତି । ବଳରାମ 'ଜଗମୋହନ ରାମାୟଣ'ରେ ଗୋପୀମାନଙ୍କ ପୂର୍ବଜନ୍ମ ସମ୍ପର୍କରେ ଯେଉଁ ସୂଚନା ଦେଇଛନ୍ତି, ସେଥିରୁ ସେମାନେ ଦଣ୍ଡକାରଣ୍ୟର ଋଷି ଥିବା ଜଣାଯାଏ । ଭଗବାନ ଶ୍ରୀରାମଙ୍କ ଦୟାରୁ ସେମାନେହିଁ ଦ୍ୱାପର ଯୁଗରେ ଗୋପୀ ରୂପେ ଜନ୍ମଗ୍ରହଣ କରି ଶ୍ରୀକୃଷ୍ଣଙ୍କ ସହ ରାସକ୍ରୀଡ଼ାରେ ମତ୍ତ ହୋଇଥିଲେ । ଶ୍ରୀରାମଙ୍କର ରମଣୀୟ ରୂପ ମୁନିମାନଙ୍କ ମନରେ ଯେଉଁ କାମନା ଜାଗ୍ରତ କରିଥିଲା, ତାହା ପରିତୃପ୍ତ ହେଲା, କୃଷ୍ଣ ରୂପରେ ।

ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ପାଇଥିଲେ ଅତି ନିକଟରେ । ତେବେ ବି ମାୟା ମୋହରେ ବଶୀହୋଇ ସେମାନେ ସାଂସାରିକ ସୁଖ ଆଶାରେ ଶ୍ରୀକୃଷ୍ଣଙ୍କ ପ୍ରକୃତ ସ୍ୱରୂପକୁ ଭୁଲି ଯାଇଥିଲେ । ଉଦ୍ଧବଙ୍କ ଆଗମନ ଓ ଉପଦେଶ ଫଳରେ ସେମାନେ ଭଗବାନଙ୍କ

ସ୍ୱରୂପ ସମ୍ପର୍କରେ ସଚେତନ ହୋଇଗଲେ । 'ଉଦ୍ଧବ ଗୀତା'ରେ କୁହାଯାଇଛି ।

ଧୃତ୍ତୁଂ ଦେଖିଲେ ପାୟେ ପଡ଼ି ଶୋଇ
କଟିରେ ଥିଲେ ଓଳଗି ନୋହଇ ॥

ରୂପଗୋସ୍ୱାମୀ ଓ ଜୀବ ଗୋସ୍ୱାମୀ ପ୍ରମୁଖ ବୈଷ୍ଣବାଚାର୍ଯ୍ୟମାନେ ଭକ୍ତିକୁ 'କର୍ମଜ୍ଞାନ ଯଦୃତାମ୍' ରୂପେ ଗ୍ରହଣ କରୁଥିବାବେଳେ ବଳରାମ ଆତ୍ମଜ୍ଞାନ ଓ ପରମ ବ୍ରହ୍ମଜ୍ଞାନରୁ ଭକ୍ତି ଉଦ୍ରେକ ହେଉଥିବା କହିଛନ୍ତି । ଏହା ହିଁ ଥିଲା, ଗୀତା, ଭାଗବତ ଓ ଉପନିଷଦର ମହାନ୍ ବାଣୀ । 'ନାରଦ ଭକ୍ତି ସୂତ୍ର' ଓ ଅନ୍ୟାନ୍ୟ କେତେକ ବୈଷ୍ଣବ (ବିଶେଷକରି ଚୈତନ୍ୟ ପନ୍ଥୀ)ଙ୍କ ବ୍ୟତୀତ ଭାରତର ଅନ୍ୟ ଅଞ୍ଚଳର ବୈଷ୍ଣବମାନେ ଜ୍ଞାନରୁ ଭକ୍ତି ଉଦୟ ହେଉଥିବା ସ୍ୱୀକାର କରିଛନ୍ତି । ଓଡ଼ିଶାରେ କେବଳ ବଳରାମ ନୁହନ୍ତି, ତାଙ୍କର ଅନ୍ୟ ସଖାମାନେ ମଧ୍ୟ ଜ୍ଞାନକୁ ଭକ୍ତିର ସୋପାନ ରୂପେ ଉଲ୍ଲେଖ କରିଛନ୍ତି । ଯଶୋବନ୍ତ ଦାସଙ୍କ ଉକ୍ତି ଏ ସମ୍ପର୍କରେ ବିଶେଷ ଭାବେ ପ୍ରଣିଧାନଯୋଗ୍ୟ ।

ଜ୍ଞାନୀ ପରିପାକ ଲକ୍ଷ୍ୟ ଯେମନ୍ତ
ନଳ କଦଳୀ ବାଏଂଶ ଯେମନ୍ତ ।
ଏମାନେ ଯେହ୍ନେ ଫଳି ଫୁଲି ମରି
ଜ୍ଞାନ ଫୁରିଲେ ହରି କଥା ସୁମରି ।
ସୁଜନ ଜ୍ଞାନୀର ଭାବ ଭଗତି
ସୁଜ୍ଞାନୀ ଲୋକର ଏମନ୍ତ ଗତି ।
×　　×　　×
ଜ୍ଞାନୀର ଉଠାଣି ଭଗତି ଯାଏ
ଭଗତି ଫୁରିଲେ ସରଇ କାଏ ।
ଉତ୍ତମ ଜ୍ଞାନୀର ହେତୁ ଏମନ୍ତ
ଆପଣେ ତରି ତାରିଲା ଜଗତ ।
ପରମ ଗୋପ୍ୟାନ ମୁଖେ କହିଲା
ଏ ଭାବେ ସବୁରି ମିତ୍ର ହୋଇଲା ।
ସବୁରି ମନେ ପୁରି ସମତୁଲ
ଭଗତ ବାସନା ଫୁଟିଲା ଫୁଲ ।
ବାସନା ତ୍ରିଣୀ ବି ଅବୟେ ଧନ
ସଂପୂର୍ଣ୍ଣାନନ୍ଦ ସବୁରି ଜୀବନ ।
ଭଗତି ଭାବ ଅବୟେ ଅମୃତ
ପିବନ୍ତେ କ୍ଷୁଧା ନ ଲାଗଇ ଚିତ୍ତ ।

ଜୀବନ ମୁକତି କଳୁଷ ଗଲା
ବାସନା ଫୁଟିଲା ବନ୍ତିଆ ମଲା ।

ବଳରାମ ମଧ୍ୟ ନିଜେ ତରି ଜଗତକୁ ତାରିବାକୁ ଚାହିଁଥିଲେ । ସେ ଷଡ଼ଚକ୍ର ସାଧନା କରୁଥିଲେ ହେଁ, ଯୋଗୀ ନ ଥିଲେ । ସେ ଥିଲେ ଗୃହସ୍ଥ । ଘରେ ରହି ସାଧନା କରିବା ଥିଲା ତାଙ୍କର କାମ୍ୟ ।

କବି ନିଜକୁ 'ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା' କହି ଭଗବାନଙ୍କ ସହ ବିଭିନ୍ନ ଭାବେ ଆତ୍ମୀୟତା ପ୍ରତିଷ୍ଠା କରି, ସାଧାରଣ ଲୋକଙ୍କ ପରି ଭଗବାନଙ୍କ ସହ କଥାବାର୍ତ୍ତା କରି ତାଙ୍କ ଅଲୌକିକତାର ଯେଉଁ ବୀଜବପନ କରିଥିଲେ, ତାହା ବିଭିନ୍ନ ଭାବେ ବିକଶିତ ଓ ପଲ୍ଲବିତ ହୋଇ ବହୁ ଗ୍ରନ୍ଥର ସୃଷ୍ଟି ପାଇଁ ସହାୟକ ହେଲା । କବିଙ୍କ ଅଲୌକିକତା ପ୍ରଚାର କରୁଥିବା ବିଭିନ୍ନ ଗ୍ରନ୍ଥକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ।

(୧) କବିଙ୍କ ଭଣିତା ଥିବା ଗ୍ରନ୍ଥ
(୨) କବିଙ୍କ ଜୀବନୀମୂଳକ ଗ୍ରନ୍ଥ

ପ୍ରଥମ ପର୍ଯ୍ୟାୟରେ ନିମ୍ନୋକ୍ତ ଗ୍ରନ୍ଥସବୁର ଗଣନା କରାଯାଇପାରେ:-

(୧) 'ଗୀତାବିକାଶ'
(୨) 'ଦୀପ୍ତିସାର ଗୀତା'
(୩) 'ପଣସ ଚୋରୀ'
(୪) 'ବଟ ଅବକାଶ'
(୫) 'ବେଦାନ୍ତ ସାର ଗୁପ୍ତଗୀତା'
(୬) 'ବ୍ରହ୍ମ ଗୀତା' (ଗଦ୍ୟ)
(୭) 'ବ୍ରହ୍ମ କୁଣ୍ଡଳୀ'
(୮) 'ଭାବସମୁଦ୍ର'

ଦ୍ୱିତୀୟ ବିଭାଗରେ ଗ୍ରନ୍ଥସବୁ ହେଲା:-

(୧) 'ଅମରକୋଷ ଗୀତା' (ଦୈବଜ୍ଞ ବଳରାମ)
(୨) 'ଚଉରାଶୀ ଆଜ୍ଞା' (ସୁଦର୍ଶନ ଦାସ)
(୩) 'ଚୈତନ୍ୟ ଭାଗବତ' (ଈଶ୍ୱର ଦାସ)
(୪) 'ଦାର୍ଢ୍ୟତା ଭକ୍ତି' (ରାମ ଦାସ)
(୫) 'ଭକ୍ତ ମାଳିକା' (ଜଗନ୍ନାଥ ଦାସ)

ଏହିସବୁ ଗ୍ରନ୍ଥରେ ବର୍ଣ୍ଣିତ ଉପାଖ୍ୟାନ କବିଙ୍କ ଜୀବନର କୌଣସି ସତ୍ୟ ଘଟଣା ଉପରେ ଆଧାରିତ ନୁହେଁ । ଭାରତର ପ୍ରାୟ ସବୁ ଭକ୍ତଙ୍କ ସମ୍ପର୍କରେ ଏହିପରି ଗଳ୍ପସବୁ ସୃଷ୍ଟି ହୋଇ ପ୍ରଚାରିତ ହୋଇଥାଏ । ଭକ୍ତଙ୍କ ଜୀବନରେ ହୁଏତ ଏପରି ଘଟଣା ଘଟି ନ

ଥାଇପାରେ; କିନ୍ତୁ ଘଟିବା ଅସମ୍ଭବ ନୁହେଁ । ଭକ୍ତମାନେ ଅଲୌକିକ ପ୍ରତିଭାର ଅଧିକାରୀ । ଭଗବାନଙ୍କ ପରି ସେମାନେ ଇଚ୍ଛା କଲେ ବହୁ ଅସମ୍ଭବ କଥା ସମ୍ଭବ ହୋଇଥାଏ । ଭକ୍ତର ସ୍ପର୍ଶରେ ମୃତ ବ୍ୟକ୍ତି ଜୀବନ ପାଏ, କୁଷ୍ଠରୋଗୀ ରୋଗମୁକ୍ତ ହୁଏ ଏବଂ ଭକ୍ତ ଇଚ୍ଛା କଲେ ଆମ୍ବଟାକୁଆ ବା ପଣସ ମଞ୍ଜିରୁ ସମସ୍ତଙ୍କ ଆଖି ଆଗରେ ଗଛ ଫଳ ଫଳେ, ଫଳ ପାଚେ ଓ ଉପସ୍ଥିତ ଥିବା ଲୋକେ ସେହି ଫଳ ଭକ୍ଷଣ କରି ଚମତ୍କୃତ ହେବା ସଙ୍ଗେ ସଙ୍ଗେ ଭକ୍ତର ମହିମା ଗାନ କରନ୍ତି । ଏସବୁ ଗଳ୍ପ ଏତେ ଜୀବନ୍ତ ଭାବେ ପ୍ରକାଶିତ ଯେ ଏସବୁକୁ ଅସ୍ୱୀକାର କରିବା ସମ୍ଭବ ନୁହେଁ । ଲୋକଙ୍କର ସାଧାରଣ ବିଶ୍ୱାସ ଯେ ସାଧକ ସିଦ୍ଧି ଲାଭ କଲାପରେ ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଅଲୌକିକତା ପ୍ରକାଶ ପାଏ । ସେତେବେଳେ ସାଧକ ନିକଟରେ ରାଜା, ମହାରାଜାମାନଙ୍କର ବୀରତ୍ୱ ଓ ଦିଗ୍‌ବିଜୟୀ ପଣ୍ଡିତମାନଙ୍କର ପାଣ୍ଡିତ୍ୟର ଦର୍ପ ଚୂର୍ଣ୍ଣ ହୁଏ । ସେମାନେ ଭକ୍ତ ବା ସାଧକ ନିକଟରେ ଶରଣ ପଶି ସେମାନଙ୍କର ଜୀବନକୁ ସାର୍ଥକ କରନ୍ତି । ମଧ୍ୟଯୁଗରେ ଭକ୍ତମାନଙ୍କର ମହିମା ଏପରି ବୃଦ୍ଧି ପାଇଥିଲା ଯେ ରାଜାମାନେ ନିଜର ସୁରକ୍ଷା ପାଇଁ ରାଜନବର ନିକଟରେ ସନ୍ଥମାନଙ୍କ ପାଇଁ ମଠସବୁ ନିର୍ମାଣ କରିଥିଲେ । ଏହିସବୁ ଚରିତ ଗ୍ରନ୍ଥକୁ ଅନୁଶୀଳନ କଲେ ଏଥିରେ ଦୁଇଟି ବିଶିଷ୍ଟ ପ୍ରବୃତ୍ତି ପରିଲକ୍ଷିତ ହୁଏ - (୧) ପାଷାଣ୍ଡ ଦଳନ (୨) ସାଧାରଣ ଲୋକଙ୍କ ଦୁଃଖ ଦୁର୍ଦ୍ଦଶାର ନିରାକରଣ ଅର୍ଥାତ୍ ପତିତ ଉଦ୍ଧାରଣ ।

ବଳରାମଙ୍କ ଭଣିତା ଥିବା ଗ୍ରନ୍ଥ ଓ ଅନ୍ୟାନ୍ୟ ଲେଖକଙ୍କ ରଚିତ ଜୀବନ ଚରିତରୁ ପ୍ରାୟ ଏହିସବୁ ପ୍ରବୃତ୍ତି ଦେଖିବାକୁ ମଳେ । ଭକ୍ତ ବଳରାମଙ୍କ ଅଲୌକିକ ମହିମା, ଭକ୍ତର ଭଗବାନଙ୍କୁ ବଶ କରିବାର କ୍ଷମତା, ଗୁଣ୍ଡିଚାଯାତ୍ରା ପ୍ରତି କବିଙ୍କର ଶ୍ରଦ୍ଧା, ପୁଣି କବିଙ୍କର ରସିକ ମନୋବୃତ୍ତି - ଏହିସବୁ ଉପାଦାନକୁ ନେଇ ପ୍ରାୟ ପ୍ରତ୍ୟେକ ଗ୍ରନ୍ଥ ରଚିତ ହୋଇଥିଲେ ହେଁ, ଏଥିମଧ୍ୟରେ 'ଭାବସମୁଦ୍ର' ଓ 'ଦାର୍ଢ୍ୟତା ଭକ୍ତି' ପ୍ରସିଦ୍ଧ । ପ୍ରଥମର କବି ନିଜେ ବଳରାମ ଦାସ ଓ ଦ୍ୱିତୀୟ ଗ୍ରନ୍ଥର କବି ରାମ ଦାସ । କବିଙ୍କ ଭକ୍ତିମତ୍ତାର ଦୃଢ଼ତା ପ୍ରଦର୍ଶନ ଓ କବିଙ୍କ ମହିମା ପ୍ରଚାର ପାଇଁ ଏହି ଗ୍ରନ୍ଥ ଦ୍ୱୟ ରଚିତ ।

କବିଙ୍କ ଜୀବନର ଏହି ଘଟଣାଟି କୌଣସି ଏକ ରଥଯାତ୍ରା ଦିନ ଘଟିଥିବା ଉଭୟ 'ଭାବସମୁଦ୍ର' ଓ 'ଦାର୍ଢ୍ୟତା ଭକ୍ତି'ରୁ ଜଣାଯାଏ । 'ଦାର୍ଢ୍ୟତା ଭକ୍ତି'ର ଲେଖକ ଏହାର ସୂଚନା ଦେଇ ଲେଖିଛନ୍ତି,

ଅଶେଷ ଜନଙ୍କର ହିତେ
ବିଜୟ ନନ୍ଦିଘୋଷ ରଥେ ।
ଶ୍ରୀ ନନ୍ଦିଘୋଷ ଚଳିବାର
ଆନନ୍ଦ କେ କହୁ ସଂସାର ।

ଅଶେଷ ବାଦ୍ୟନାଦ ଶୁଣି
ଆନନ୍ଦ ହୋଇଲା ଧରଣୀ ।

ପୁରୀର ବଡଦାଣ୍ଡରେ ରଥଯାତ୍ରାର ଏହି ଅପୂର୍ବ ମହୋତ୍ସବ ଚାଲିଥିବାବେଳେ ଭକ୍ତ ବଳରାମ ଗଣିକା ମନ୍ଦିରରେ ମତ୍ତ ଥିଲେ । ରଥ ଚଳିବାର ଧ୍ୱନି ତାଙ୍କୁ ଶ୍ରୀକୃଷ୍ଣଙ୍କ ବଂଶୀ ଧ୍ୱନି ପରି ବିମୋହିତ କଲା । ସେ ନିଜର ବାସ୍ତବ ସ୍ଥିତିକୁ ଭୁଲିଗଲେ । ଶୁଚି ଓ ଅଶୁଚିର ପ୍ରଶ୍ନ ତାଙ୍କ ନିକଟରେ ଲୋପ ପାଇଗଲା । ବେଶ୍ୟାର ରୂପ ଓ ମମତା, ଜଗନ୍ନାଥଙ୍କ ଆକର୍ଷଣ ନିକଟରେ ତୁଚ୍ଛ ହୋଇଗଲା । ସେ ବେଶ୍ୟାର ଆଲିଙ୍ଗନକୁ ତ୍ୟାଗକରି ସେହି ବେଶରେ ନନ୍ଦିଘୋଷ ରଥ ଉପରେ ଆରୋହଣ କଲେ ।

ଉଠିଲା ନନ୍ଦିଘୋଷ ରଥେ
କର ନିବେଶି ଅଛି ମାଥେ ।
କଳାଶ୍ରୀମୁଖକୁ ଅନାଇ
ଅନେକ ମତେ ବାହୁନଇ ।
ସେବକ ଅନାଇଣ ଦେଲେ
କ୍ରୋଧରେ ଦାସକୁ ବୋଇଲେ ।

ବଳରାମ ସମସ୍ତଙ୍କର ଚିହ୍ନାଲୋକ । ଜ୍ଞାନୀ ଓ ଭକ୍ତ ଭାବରେ ସେ ସମ୍ମାନିତ । ଅଥଚ ଗଣ୍ଡଦେଶରେ ତାମ୍ବୁଳର ଗାର ଓ ଦେହରେ କୁଙ୍କୁମର ଦାଗ ଲଗାଇ ପୁଣି ଶୁଚି ନ ହୋଇ ସେ ରଥ ଉପରେ ଆରୋହଣ କରିବାରୁ ପଣ୍ଡାମାନେ କ୍ରୋଧାନ୍ୱିତ ହୋଇ ତାଙ୍କୁ ଗାଳିଦେଲେ ଓ ରଥ ଉପରୁ ଗଳାଧକ୍କା ଦେଇ ତଳକୁ ଠେଲିଦେଲେ । ସେହି ସମୟର ବର୍ଣ୍ଣନା ଦେଇ ରାମ ଦାସ ଲେଖିଛନ୍ତି-

ଗଣ୍ଡେ ତୋ ତାମ୍ବୁଳର ଗାର । କୁଙ୍କୁମେ ଦେହ ଜରଜର ।
ଅତି କଦର୍ଯ୍ୟ ତୋର କାୟେ । ଦିଶୁଛି ଖଣ୍ଡ ଚିତ୍ର ପ୍ରାୟେ ।
ସ୍ନାନେ ଶଉଚ ତୋର ନାହିଁ । ଥିଲୁ ତୁ ବେଶ୍ୟା ଘରେ ଶୋଇ ।
କିମ୍ପା ତୁ ଚଢ଼ିଲୁ ରଥର । ଭକତ ପଣ ପୋଡୁ ତୋର ।
କେ ତୋତେ ବୋଲେ ଜ୍ଞାନବନ୍ତ । ଦେଖୁ ହୋ ପ୍ରଭୁ ଜଗନ୍ନାଥ ।
ବ୍ରହ୍ମା ଇନ୍ଦ୍ରାଦି ଯା'ର ପାଦେ । ସେବା କରନ୍ତି ଅପ୍ରମାଦେ ।
ତାହାଙ୍କୁ ତୋର ଭୟ ନାହିଁ । ଆସିଲୁ ଶୁଚିବନ୍ତ ନୋହି ।
ଏମନ୍ତ ବୋଲି କୋପ ଭରେ । ସେବକମାନେ ଯେ ଯାହାରେ ।
ଗଳେ ଅନେକ ଧକ୍କା ଦେଲେ । ରଥରୁ ପେଲି ପକାଇଲେ ।
ନାନା କୁବାକ୍ୟ ଗାଳି ଦେଇ । କହ ତୋ ବାପ ଆଗେ ଯାଇ !
ସବୁରି ମୁଖରୁ ନିରାଶ । ପାଇଲା ବଳରାମ ଦାସ ।

ଭକ୍ତ ବଳରାମଙ୍କର ଅଭିମାନର ସୀମା ରହିଲା ନାହିଁ । ସେ କଳାଶ୍ରୀମୁଖକୁ ଅନାଇ ଅତ୍ୟନ୍ତ କରୁଣ ସ୍ୱରରେ ନିଜ ହୃଦୟର ବ୍ୟଥା ଜଣାଇ, ସେ ସ୍ଥାନ ତ୍ୟାଗ କରି ସମୁଦ୍ରକୂଳକୁ ଚାଲିଗଲେ । ଯିବାବେଳେ ଅଭିମାନଭରା କଣ୍ଠରେ ଭଗବାନଙ୍କୁ ନିଜ ଦୁଃଖ ଜଣାଇ କହିଲେ,

ମୁଁ ଯେବେ ତୋହର ସେବକ । ତୁ ଯେବେ ମୋ ପ୍ରାଣନାୟକ
ଅନ୍ୟ ଶରଣ ମୋର ଥିଲେ । ତାହା ବୁଝିବୁ ତୁହି ଭଲେ ।
ଆବର କହୁଅଛି ଯାହା । ଶୁଣ ପୁତନା ପ୍ରାଣଖିଆ ।
କୋଟିଏ ବ୍ରହ୍ମାଣ୍ଡ ହୋଇବ । ଗୋଟିଏ ପ୍ରଭୁ ହୋଇଥିବ ।
ତା'ର ସେବକ ହାନି ଲାଭ । ସେ ପ୍ରଭୁ ଯେବେ ନ ବୁଝିବ ।
ସେ ଲଜ୍ଜା ହେବଟି କାହାର । ତୋ ହୃଦ ପଦ୍ମରେ ବିଚାର ।
ଅଧିକ କି କହିବି ମୁହିଂ । ତୁମ୍ଭେ ମୋ ଜୀବର ଗୋସାଇଁ ।
ଯେ ଦଣ୍ଡ ଉଚିତ ମୋହର । ବୋଲି ଚଳିଲା କ୍ରୋଧଭର ।

କବିଙ୍କର ଏକମାତ୍ର ଭରସା ଥିଲେ ନୀଳାଚଳପତି ଜଗନ୍ନାଥ । ତାଙ୍କ ଦୁଃଖ ଦୁର୍ଦ୍ଦଶା ବେଳେ ସେ ତାଙ୍କୁ ହିଁ ଡାକି ବିପଦ୍‌ମୁକ୍ତ ହେଉଥିଲେ । ଅଥଚ ତାଙ୍କରି ସମ୍ମୁଖରେ ସେ ପାଇଲେ ଏହି ଦାରୁଣ ଅପମାନ । କବି ସହ୍ୟ କରି ନ ପାରି ଇଚ୍ଛା ବିରୁଦ୍ଧରେ ସମୁଦ୍ରକୂଳର ବାଙ୍କିମୁହାଣସ୍ଥିତ ବାଲିକୁଦରେ ପହଞ୍ଚିଲେ । ବାଲିକୁଦ ହିଁ ଥିଲା କୃଷ୍ଣ ଓ ଗୋପୀଙ୍କ ବିରହ ଓ ମିଳନର ସ୍ଥାନ । ସେଠାରେ ତିନୋଟି ରଥ ବାଲିରେ ତିଆରି କରି ଭଗବାନଙ୍କୁ ଧ୍ୟାନ କଲେ । ସେଠି ହୃଦୟ ହେଲା ଭଗବାନଙ୍କ ଚକାସନ । ଧଇର୍ଯ୍ୟ ହେଲା ସ୍ତମ୍ଭ । ମନ ହେଲା ପାଟଡୋର, ଆନନ୍ଦ ହେଲା ଦାଣ୍ଡ, କଳ୍ପନା ହେଲା ଦଉଡ଼ି, ପ୍ରକୃତି ହେଲେ ବେଠିଆ, ସୁଗୁଣ ହେଲା ସାରଥି, ସୁବୁଦ୍ଧି ହେଲା ରାଜା, ମହତ ଗୁଣ ହେଲା ଘଣ୍ଟା, ଆତ୍ମାର ଶବଦ ହେଲା ଶଙ୍ଖଧ୍ୱନି, ଜାଗ୍ରତ ଭାବ ହେଲା ପରୀକ୍ଷା, ପାଞ୍ଚପ୍ରାଣ ହେଲେ ବିପ୍ରଗଣ, ସୁବୁଦ୍ଧି ହେଲା ପଣ୍ଡା । କଳ୍ପନାମାର୍ଗରେ ପୂଜା ଆରମ୍ଭ ହେଲା । ଏହି ଦିବ୍ୟରଥରେ ଭୟ, କ୍ରୋଧ, ତାମସ, କୁଟିଳତା, କପଟତା, ହୀନତା, କୁମତି, ମିଥ୍ୟା, ଲୋଭ, ମଦ, ମତ୍ସର, ଦାୟିକତା ତଥା ନାସ୍ତିକତାର ସ୍ଥାନ ନ ଥିଲା । ଏହି ରଥକୁ ତିଆରି କରି କବି ତାଙ୍କୁ ଧ୍ୟାନଚକ୍ଷୁରେ ନିରୀକ୍ଷଣ କଲେ,

କେବଳ ଅଭିମାନ ଧରି । ତାହିଁ ଯେ ଅଛି ବକ୍ର କରି ।
ହୃଦେ ଆନନ୍ଦ ମୁଖେ ଦୁଃଖ । ତାହା ଜାଣିଲେ ପଦ୍ମମୁଖ ।

ଜଗନ୍ନାଥ ଆସି ଏହି ଦିବ୍ୟରଥରେ ବିଜେ କଲେ । ବଡ଼ଦାଣ୍ଡରେ ରଥ ଅଚଳ ହୋଇଗଲା । ଶ୍ରୀକ୍ଷେତ୍ରର ସମସ୍ତ ଲୋକ ଏକଜୁଟ ହୋଇ ରଥକୁ ଟାଣିବାକୁ ଆରମ୍ଭ କଲେ । ନିଜେ ଗଜପତି ପ୍ରତାପରୁଦ୍ର ଆସି ରଥ ଟାଣିଲେ । ମତ୍ତହସ୍ତୀ ସବୁଙ୍କୁ ନିୟୋଜିତ କରାଗଲା ।

କୌଣସିମତେ ରଥ ନ ଚଳିବାରୁ ରାଜା କୁଶାସନ କରି ଭଗବାନଙ୍କ ନିକଟରେ ଶରଣ ଗଲେ । ଭଗବାନଙ୍କର ଦୟା ହେଲା, ସେ ରାଜାଙ୍କୁ ସମ୍ବୋଧନ କରି କହିଲେ,

ଏବେ ମୁଁ କହୁଅଛି ତୋତେ । ହେ ରାଜା ଶୁଣ ଶୁଦ୍ଧ ଚିତ୍ତେ ।
ମୋର ଭକତ ଯେଉଁ ଜନ । ମୋହର ନାମ କରେ ଗାନ ।
ସେ କେବେ ଅଶୁଚି ନୁହଇ । ସର୍ବଦା ଶୁଚିମନ୍ତ ଦେହୀ ।

ଭକ୍ତର ଜୟ ହେଲା । ଅପରାଧୀମାନେ ଦଣ୍ଡିତ ହେଲେ । ରାଜାଙ୍କ ଅନୁରୋଧକ୍ରମେ ବଳରାମ ରଥରେ ଆସି ବସିବାରୁ ରଥ ଚାଲିବାକୁ ଆରମ୍ଭ କଲା । ବଳରାମ ଦାସ ଆନନ୍ଦରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ବୋଇଲେ ନମୋ ମହାବାହୁ । ଭକତ ବତ୍ସଳ ବୋଲାଉ ।
ନାମ କରୁଣା ମହାମେରୁ । କିଷ୍ଟିତେ ଦ୍ରବ କରୁ ଦାରୁ ।
ଏବେ ମୁଁ କହୁଅଛି ତୋତେ । ହୋ ପ୍ରଭୁ ବିଜେ କର ରଥେ ।
ତୁରିତେ ରଥ ଚଳିଯାଉ । ପ୍ରଭୁ ମହିମା ରହିଥାଉ ।

ରାମ ଦାସଙ୍କ ବର୍ଣ୍ଣିତ ଉପାଖ୍ୟାନରେ ସତ୍ୟତା ନ ଥାଇପାରେ; କିନ୍ତୁ ଭକ୍ତି ସାହିତ୍ୟ ଦୃଷ୍ଟିରୁ ଏହାର ପ୍ରତ୍ୟେକ ପଂକ୍ତି ଅତ୍ୟନ୍ତ ଉପାଦେୟ । ଭଗବାନ ସବୁବେଳେ ଭକ୍ତର ଅଧୀନ । ଭକ୍ତର କରୁଣ ନିବେଦନ ନିକଟରେ ସବୁପ୍ରକାର ପୂଜା, ଅର୍ଚ୍ଚନା ତୁଚ୍ଛ । ଭକ୍ତି ଧର୍ମର ଏହାହିଁ ମୁଖ୍ୟ ତତ୍ତ୍ୱ ।

ବଳରାମଙ୍କ ଭଣିତା ଥିବା 'ଭାବସମୁଦ୍ର'ରେ ଏହି ଉପାଖ୍ୟାନ ବର୍ଣ୍ଣିତ ହୋଇଥିଲେ ହେଁ, ଏଥିରେ ଘଟଣା ଅପେକ୍ଷା ଭାବ-ଭକ୍ତି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଭକ୍ତିଯୋଗର କାକୁତି, ମିନତି, ଆତ୍ମନିବେଦନ, ଆତ୍ମସମର୍ପଣ, ଭଗବାନଙ୍କ ମହିମା ଗାନ, ନାମକୀର୍ତ୍ତନ, ସ୍ତୁତି, ଭଗବାନଙ୍କ ସହ ଆତ୍ମୀୟତା ଓ ଅଭିମାନ ପ୍ରଭୃତି ବହୁ ରୂପରେ ସେ ଭଗବାନଙ୍କଠାରେ ନିଜର ଅଭିମାନ ଜଣାଇଛନ୍ତି । ଏଥିରେ ପ୍ରେମଭକ୍ତି ବିଭିନ୍ନ ଧାରାରେ ପ୍ରବାହିତ । ପ୍ରେମଭକ୍ତି ଦୃଷ୍ଟିରୁ ଏହା ଏକ ସୁନ୍ଦର ଗ୍ରନ୍ଥ । ପଞ୍ଚସଖାମାନେ ସାଧନାର ଯେଉଁ ମାର୍ଗ ଅବଲମ୍ବନ କରିଥିଲେ, ଧର୍ମ ସମ୍ପର୍କରେ ସେମାନେ ଯେଉଁ ଭାବେ ଚିନ୍ତା କରୁଥିଲେ, ସେ ସବୁର ବହୁ ନିଦର୍ଶନ 'ଭାବସମୁଦ୍ର'ରୁ ମିଳେ । ବଳରାମଙ୍କ ଜୀବନ ଦର୍ଶନ ଜାଣିବା ପାଇଁ ଏହା ଏକ ଉପାଦେୟ ଗ୍ରନ୍ଥ ।

ବଳରାମ ଜଗନ୍ନାଥଙ୍କ ବ୍ୟତୀତ ଆଉ କୌଣସି ଦେବତାଙ୍କୁ ପୂଜା କରୁ ନ ଥିଲେ । ବ୍ରତ, ଉପାସନାର ମଧ୍ୟ ସେ ବିରୋଧୀ ଥିଲେ । ମାଳା, ତିଳକ ଧାରଣ କରି ବୈଷ୍ଣବ ରୂପରେ ସଂସାର-ଭ୍ରମଣ ପାଇଁ ସେ ଚାହିଁ ନ ଥିଲେ । ଏହି ଭାବନାକୁ ପ୍ରକାଶ କରି 'ଭାବସମୁଦ୍ର'ରେ ଲେଖାଯାଇଛି,

ନ କଲି ବ୍ରତ ମୁଁ ନ କଲି ତପ

ନ ସେବିଲି ଆଉ ଦେବତା ରୂପ ।
ନାଥ ମୁଁ ତୋହ ବିନୁ ଆନେ ନାହିଁ
କାହାକୁ ବେଦନା କହିବି ଯାଇ ।

ସାଧାରଣତଃ ସାଧକମାନେ ମୁକ୍ତି କାମନା କରି ବିଭିନ୍ନ ମାର୍ଗରେ ଭଗବାନଙ୍କ ଅର୍ଚ୍ଚନା କରିଥାନ୍ତି । ବଳରାମ 'ଜଗମୋହନ ରାମାୟଣ'ରେ ଏ ସମ୍ପର୍କରେ କହିବାକୁ ଯାଇ ଉଲ୍ଲେଖ କରିଛନ୍ତି ଯେ, ସେ ଚାହିଁଲେ ବୈକୁଣ୍ଠକୁ ଯାଇପାରିବେ, କିନ୍ତୁ ସେ ତା' ନ ଚାହିଁ ଚାହିଁଛନ୍ତି, ଭଗବାନଙ୍କ ସାନ୍ନିଧ୍ୟ । 'ଭାବସମୁଦ୍ର'ରେ ମଧ୍ୟ ଅଛି -

ଭକ୍ତି ଦେଲେ ମୁକ୍ତି ମାଗଇ ନାହିଁ
ବଳରାମ ଦାସ ଭକ୍ତି ସାଧଇ ।

ବଳରାମ ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରିଥିଲେ । ସେଥିପାଇଁ ସେ ରାମଙ୍କୁ ଜଗନ୍ନାଥଙ୍କ 'ସପ୍ତମ ଅବତାର' ବୋଲି କହୁଥିଲେ । ଅନ୍ୟ ଅବତାରସବୁ ଜଗନ୍ନାଥଙ୍କ ଠାରୁ ଜନ୍ମ । ପୁଣି ପ୍ରତି ଅବତାରରେ ବଳରାମ ହିଁ ତାଙ୍କର ଦାସ ।

ବୌଦ୍ଧ କଳଙ୍କି ନାନା ରୂପେ ହେଉ ।
ବଳରାମକୁ ପାଦରେ ଖଟାଉ ।

ବଳରାମ ଭଗବାନଙ୍କ ପ୍ରତ୍ୟେକ ଅବତାରରେ ତାଙ୍କ ସହ ରହି, ତାଙ୍କ ଲୀଳା ଦର୍ଶନର ସୌଭାଗ୍ୟ ଲାଭ କରିଥିଲେ ।

ତୋତେ କି ବୋଲିବି ମୋର କରମ
ତୋ ବୋଲେ କିମ୍ପା ହେଉଛି ନରମ ।
ନାଥ ତୁ କେତେ ମତେ ବୁଝାଇଲୁ
ଘେନିଣ ଅବତାର ଭିଆଇଲୁ ।

ଷୋଡ଼ଶ ଶତାବ୍ଦୀରେ ଭଗବାନଙ୍କ ନାମ କୀର୍ତ୍ତନକୁ ସବୁପ୍ରକାର ସାଧନା ମାର୍ଗଠାରୁ ଶ୍ରେଷ୍ଠ ଭାବେ ବିଚାର କରାଯାଉଥିଲା । ଭଗବାନଙ୍କ ଗୋଟିଏ ନାମ ଥରେ ଜପ ବା ସ୍ମରଣ କଲେ କୋଟି କୋଟି ପାପ କ୍ଷଣକେ ନାଶ ହୋଇଯାଏ । ଏହାର ସୂଚନା ମିଳେ ବହୁ ବୈଷ୍ଣବ ଗ୍ରନ୍ଥରେ । 'ଭାବସମୁଦ୍ର'ରେ ରହିଛି,

କୋଟିଏ ତୀର୍ଥରେ କୋଟିଏ ଧନ,
କୋଟିଏ ଭୂମି ଦେବା ମହାଦାନ ।
ନାଥ ତୋ ଗୋଟିଏ ନାମ ଜପିବା,
କୋଟିଏ ବେଳ କାଶୀରେ ଝାସିବା ।

ଭଗବାନ ଜଗନ୍ନାଥଙ୍କ ସେବକ ଥିଲେ ଓ ଜଗନ୍ନାଥଙ୍କ ନାମ ଜପ କରୁଥିଲେ ବି ତାରକ ବ୍ରହ୍ମନାମ ଅର୍ଥାତ୍ ରାମନାମକୁ ଅତ୍ୟଧିକ ଶ୍ରଦ୍ଧା କରୁଥିଲେ । ଜଗମୋହନ ରାମାୟଣର

ପ୍ରାରମ୍ଭରେ ସେ ସେଥିପାଇଁ ରାମନାମର ମହିମା ଗାନ କରିଛନ୍ତି । 'ଭାବ ସମୁଦ୍ର'ରେ ବି ଅଛି,

ତାରକ ନାମଟି ଗୋବିନ୍ଦ ନାମ
ବଳରାମ ଦାସ ଭାବେ ଶ୍ରୀରାମ ।

ବଳରାମଙ୍କ ମତରେ ଜଗନ୍ନାଥ ଧାମ ସବୁଠାରୁ ଶ୍ରେଷ୍ଠ । ପଞ୍ଚସଖାମାନେ ଏହି କଥାରେ ବିଶ୍ୱାସ ରଖିଥିଲେ । ଦିବାକର ଦାସ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଓ ବଳରାମ 'ବେଦାନ୍ତସାର ଗୁପ୍ତଗୀତା'ରେ ଓ 'ଜଗମୋହନ ରାମାୟଣ'ରେ ଜଗନ୍ନାଥ ଧାମର ସାର୍ବଭୌମତ୍ୱ ସ୍ୱୀକାର କରିଛନ୍ତି । 'ଭାବସମୁଦ୍ର'ରେ ଏହି ଭାବଧାରା ନିମ୍ନୋକ୍ତ ପଂକ୍ତିରେ ପ୍ରକାଶିତ -

ଅପାର କାଳର ବୁଢ଼ାଦିଅଁ ଗୋଟି
ସବୁ ଦେବଦେବୀ ତୋ ବେଟା ବେଟୀ ।
ନାଥ ତୁ ଅନେକ କାଳ ପୁରୁଣା
ତୋତେ ନ ଜାଣିଣ ହୁଅନ୍ତି ବଣା ।

କବି ବଳରାମଙ୍କ ଜୀବନ ସମ୍ପର୍କରେ ଏଥିରୁ କେତେକ ସୂଚନା ମିଳେ । ଏହି ଗ୍ରନ୍ଥ ଅନୁଯାୟୀ କବି ବାଲ୍ୟକାଳରୁ ଭଗବାନଙ୍କ ଅସୀମ କରୁଣା ଲାଭ କରି ଶ୍ରୀକ୍ଷେତ୍ରରେ ସୁଖରେ ରହୁଥିଲେ । ଭଗବାନଙ୍କ ମାୟାମୋହରେ ଆବଦ୍ଧ ହୋଇ ସେ ଆଉ କାହାରିକୁ ଭ୍ରୁକ୍ଷେପ କରୁ ନ ଥିଲେ । ଆଜି ସେ କିନ୍ତୁ ଅପମାନିତ ସାମାନ୍ୟ ରାଜା ଦ୍ୱାରା । ଏଥିପାଇଁ କବି ଦାୟୀ କରିଛନ୍ତି ଜଗନ୍ନାଥଙ୍କୁ ।

ବାଳୁତ କାଳହୁଁ ଲଗାଉ ମୋହ
ଏବେ କିମ୍ପା ଆଉ ନୋହିବ କୋହ ।
ନାଥ ତୁ ଦୟାରେ ମାୟା ଲଗାଉ
ଏବେ କିସ ପାଇଁ ମୋହ କରାଉ
×          ×          ×
ଯେତେବେଳେ ଦଶ ବରଷୁଂ ସାନ
ମନରେ କିମ୍ପା ନ ପାଇଲୁ ଆନ ।
ନାଥ ତୁ ଏତେହେଂ କି କି ବିଚାରୁ
ନିଶାପ ହୋଇଲେ ନ ପୁଣ ହାରୁ ।

'ଦାର୍ଢ୍ୟତା ଭକ୍ତି' ଓ 'ଭାବ ସମୁଦ୍ର'ରେ ପ୍ରାୟ ଏକା ଉପାଖ୍ୟାନ ବିଭିନ୍ନ ଭାବେ ବର୍ଣ୍ଣିତ ହୋଇଥିଲେହେଁ ଏଥିରେ କେତେକ ତଥ୍ୟଗତ ପାର୍ଥକ୍ୟ ପରିଦୃଷ୍ଟ ହୁଏ । 'ଦାର୍ଢ୍ୟତା ଭକ୍ତି' ଅନୁଯାୟୀ ବଳରାମଙ୍କୁ ଅପମାନିତ କରିଥିବାରୁ ସେବକମାନେ ଦଣ୍ଡିତ ହୋଇଥିଲେ ।

ସେବକମାନଙ୍କୁ ରାଇଣ । ଦାସ ବୋଲେହା ଯେତେ ଜନ ।
ବନ୍ଧାଇ ଯୋଡ଼ି ଯୋଡ଼ି କରି । ଗଳେ କୁଠାରଛନ୍ତି ଧରି ।।
ଦନ୍ତେ ତିରଣ ଧରାଇଲେ । ପଛ ହାବୁକା ତାଙ୍କୁ ଦେଲେ ।

ଅଥଚ 'ଭାବସମୁଦ୍ର'ରେ ନିଜେ ରାଜା ଏହି ଦଣ୍ଡରେ ଦଣ୍ଡିତ ହୋଇଥିଲେ ।

ଗଳଥା ମାରି ଆଣନ୍ତି ରାଜାକୁ
ଦୁଇ ହାତ ବନ୍ଧା ପଛ ଆଡ଼କୁ ।
ପହଣ୍ଡକେ ସେ ପଡ଼ଇ ଭୂମିର
ଚୁଳୁ ଥୋଡ଼ି ଯେ ବାଲି ଜରଜର ।
ଦନ୍ତେ ତିରଣ ଗଳାରେ କୁଠାର
ଦେଖି ବଳି ଚିନ୍ତଇ ଚକ୍ରଧର ।

'ଦାର୍ଢ୍ୟତା ଭକ୍ତି'ରେ ରାଜାଙ୍କ ନାମ ପ୍ରତାପରୁଦ୍ର ଥିବାବେଳେ 'ଭାବସମୁଦ୍ର'ରେ କୌଣସି ନାଁ ନାହିଁ । ତେବେ ବଳରାମଙ୍କ ସମକାଳୀନ ଭାବେ ପ୍ରତାପରୁଦ୍ରଙ୍କୁ ଗ୍ରହଣ କରାଯାଇପାରେ । ରଥଯାତ୍ରାବେଳେ ସେ ଗଜପତି ନୁହଁନ୍ତି । ଛାର ଚଣ୍ଡାଳ ପରି ସେ ଛେରାପହଁରା କାର୍ଯ୍ୟ କରନ୍ତି । କୃଷ୍ଣ ଦାସ କବିରାଜ କୃତ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରୁ ଜଣାଯାଏ ଯେ ପ୍ରତାପରୁଦ୍ର ବଡ଼ଦାଣ୍ଡରେ ଠିଆହୋଇ ଜଗନ୍ନାଥଙ୍କ ରଥଯାତ୍ରା ଦେଖୁଥିବାବେଳେ ଶ୍ରୀନିବାସ ମଧ ତାଙ୍କୁ ଏହି ଭାବେ ଅପମାନିତ କରିଥିଲେ । ଗଜପତି ପ୍ରତାପରୁଦ୍ରଙ୍କୁ ଅପମାନିତ କରିବାହିଁ ଥିଲା ସତେ ଯେପରି ସେ ଯୁଗର ବୈଷ୍ଣବମାନଙ୍କ ମହାନ୍ ଧର୍ମ । ବୈଷ୍ଣବମାନଙ୍କୁ ଏ ସମ୍ପର୍କରେ ପଚାରି ଲାଭ ନାହିଁ । ସେମାନେ ତ ଏହାକୁ ନିଶ୍ଚିତ ଭାବେ ସତ୍ୟ ବୋଲି କହିବେ । ପ୍ରମାଣ ବି କରିବାକୁ ପଛାଇବେ ନାହିଁ । କିନ୍ତୁ ସାଧାରଣ ଦୃଷ୍ଟିରୁ ଏହା ଅସମ୍ଭବ ମନେହୁଏ । ପ୍ରତାପରୁଦ୍ର ଗଳଥା ଖାଇଲେ; କିନ୍ତୁ ଦେଲା କିଏ ? ତାଙ୍କରି ସେବକମାନେ ତାଙ୍କୁ ଏପରି ଦୁର୍ଦ୍ଦଶା ଦେଇଥିବେ କି ? ପୁଣି ସବୁଠାରୁ ମଜା କଥା ହେଉଛି, ଏ ସବୁ ଘଟଣା ଘଟୁଥିବା ବେଳେ ରାଣୀ, ଜେମା, ଯାତ୍ରାକାରୀ ଓ ଚତୁରଙ୍ଗ ସେନା ଦର୍ଶକ ଭାବେ ଉପସ୍ଥିତ ଥିଲେ ଓ ସମସ୍ତଙ୍କ ସମ୍ମୁଖରେ ରାଜାଙ୍କୁ ଏହିପରି ଅପମାନିତ କରି ବଡ଼ଦାଣ୍ଡକୁ ଅଣାଯାଇଥିଲା ।

ବଳରାମଙ୍କ ଅଲୌକିକତା ପ୍ରଚାର କରୁଥିବା ଅନ୍ୟ ଏକ ଗ୍ରନ୍ଥ ହେଉଛି, 'ବଟ ଅବକାଶ' । ଏଥିରେ ଜଗନ୍ନାଥଙ୍କ ସହ କବି ଲଙ୍କା ଯାଇ ବିଭୀଷଣର ଅଭ୍ୟର୍ଥନା ଗ୍ରହଣ କରି ନୀଳାଚଳକୁ ଫେରି ଆସିଛନ୍ତି । ଏସବୁ ଘଟଣା ଗୁପ୍ତରେ ହୋଇଥିଲେହେଁ କବିଙ୍କ ଦୁର୍ଭାଗ୍ୟକୁ ଜଗନ୍ନାଥଙ୍କ ସୁନାଝରିଟି ଭୁଲ୍‌କ୍ରମେ କବିଙ୍କ ପାଖରେ ରହିଯାଇଛି । ପରଦିନ ପଣ୍ଡାମାନେ ସୁନାଝରିକୁ ନ ଦେଖି ଏହାର ଅନୁସନ୍ଧାନ କରିଛନ୍ତି । ଶେଷରେ ଏହା ବଳରାମଙ୍କ ପାଖରୁ ମିଳିଛି । ପଣ୍ଡାମାନେ କାଳ ବିଳମ୍ବ ନକରି ବଳରାମଙ୍କୁ ଚୋରର

ଅପବାଦ ଦେଇ ରାଜାଙ୍କ ନିକଟରେ ଫେରାଦ ହୋଇଛନ୍ତି । ବଳରାମଙ୍କର ପରୀକ୍ଷା ପୁଣି ଆରମ୍ଭ ହୋଇଛି । ସବୁଥର ପରି ଏଥର ମଧ ଜଗନ୍ନାଥ କବିଙ୍କୁ ବିପଦରୁ ରକ୍ଷାକରି ତାଙ୍କ ଆର୍ତ୍ତତ୍ରାଣ ନାମକୁ ସାର୍ଥକ କରିଛନ୍ତି ।

ଏହି ଗ୍ରନ୍ଥର ଅନ୍ୟ ଏକ ତତ୍ତ୍ୱ ହେଲା ଲକ୍ଷ୍ମୀ ତଥା ତାଙ୍କ କ୍ଷେତ୍ର ପୁରୁଷୋତ୍ତମର ସାର୍ବଭୌମତ୍ୱ ପ୍ରଚାର । ଜଗନ୍ନାଥ ଯେପରି ସବୁ ଦେବତାଙ୍କର ଜନକ, ଲକ୍ଷ୍ମୀ ସେହିପରି ସବୁ ଦେବୀଙ୍କର ମାତା । ସେଥିପାଇଁ ଓଡ଼ିଶାର ସବୁ ଦେବୀ ଉପହାର ସାମଗ୍ରୀମାନ ଆଣି ଲକ୍ଷ୍ମୀଙ୍କୁ ଭେଟିଦେଇ ଦର୍ଶନ କରିଛନ୍ତି । ଡକ୍ଟର ଆର୍ତ୍ତବଲ୍ଲଭ ଦେବୀମାନଙ୍କର ଏହି ମିଳନ ପର୍ବକୁ ଶାକ୍ତ ଧର୍ମର ପ୍ରଭାବ କହୁଥିଲେ ହେଁ, ଏଥିରୁ କବିଙ୍କ ଜୀବନଦର୍ଶନ ତଥା ଭକ୍ତିମତ୍ତାର ପରିଚୟ ମିଳେ । ଲକ୍ଷ୍ମୀଙ୍କ ପ୍ରତି କବିଙ୍କର ବିଶେଷ ଶ୍ରଦ୍ଧା ଥିବା ‘ଜଗମୋହନ ରାମାୟଣ’ ତଥା ‘ଲକ୍ଷ୍ମୀ ପୁରାଣ’ରୁ ମିଳିଥାଏ । ତାଙ୍କ ରାମାୟଣର ସୀତା ହେଉଛନ୍ତି, ସ୍ୱୟଂ ଲକ୍ଷ୍ମୀ । ସୀତାଙ୍କ କନକପ୍ରତିମା ପୁରୁଷୋତ୍ତମ କ୍ଷେତ୍ରର ଲକ୍ଷ୍ମୀଙ୍କ ପରି ପୂଜିତା । କେବଳ ଲକ୍ଷ୍ମୀ ନୁହନ୍ତି, ପାର୍ବତୀଙ୍କ ବନ୍ଦନା ମଧ ଜଗମୋହନ ରାମାୟଣର ଏକ ବୈଶିଷ୍ଟ୍ୟ । ସୁଭଦ୍ରା ଏକ ପକ୍ଷରେ ଲକ୍ଷ୍ମୀ ଓ ଅନ୍ୟ ପକ୍ଷରେ ଦୁର୍ଗା । ରାମ ବନବାସ ଗଲାବେଳେ ଯେଉଁ ତିନୋଟି ଦେବତାଙ୍କୁ ସ୍ମରଣ କରିଥିଲେ, ସେମାନେ ହେଲେ, ବିଷ୍ଣୁ, ଶିବ ଓ ଦୁର୍ଗା । ଏ ସବୁରୁ ଏ କଥା ସ୍ପଷ୍ଟ ଯେ କବି ସଂକୀର୍ଣ୍ଣମନା ବୈଷ୍ଣବଙ୍କ ପରି କେବଳ ବିଷ୍ଣୁ ପୂଜକ ନଥିଲେ । ସବୁ ଦେବଦେବୀଙ୍କୁ ଆଦର କରିବା ତାଙ୍କର ଧର୍ମ ଥିଲା । ତେବେ ବି ଜଗନ୍ନାଥଙ୍କ ଗୌରବର ଅଧିକାରୀ ସେମାନେ ନ ଥିଲେ । ‘ଭାବସମୁଦ୍ର’ ପରି ଜଗନ୍ନାଥ କ୍ଷେତ୍ରର ସାର୍ବଭୌମତ୍ୱ ପ୍ରଚାର କରିବାର ଏହା ଥିଲା ଆଉ ଏକ କୌଶଳ । ‘ବଟ ଅବକାଶ’ର କଥାବସ୍ତୁକୁ କବି ‘ଭାବସମୁଦ୍ର’ରେ ସଂକ୍ଷିପ୍ତ ଭାବେ ବର୍ଣ୍ଣନା କରିଛନ୍ତି ।

ଗରୁଡ଼ ପିଠିରେ ବିଜେ ଲଙ୍କାକୁ
ସଙ୍ଗେ ଥାଇ ଗର୍ବ କଲି ମନକୁ ।
ନାଥ ମୁଁ ଖସିପଡ଼ିଲି ସିନ୍ଧୁର
ହରି ଯେ ଆସ ବୋଇଲେ ସଧୀର ।

‘ବଟ ଅବକାଶ’ରେ ଏହି କଥାକୁ ବିସ୍ତୃତ ରୂପେ ବର୍ଣ୍ଣନା କରାଯାଇଛି ।

ବିଭିଷଣ ବଚନ ପ୍ରଭୁ ମନରେ ସୁମରି
ଗରୁଡ଼ ପିଠିରେ ପ୍ରଭୁ ସଧୀରେ ବିଜେ କରି
ମୋତେ ଆଜ୍ଞା ଦେଲେ ହୋ ଦେଖିବୁ ଆଜି ଲଙ୍କା
ଥିବୁଟି କି ଗହଣରେ ମନରେ ନ ରଖିବୁ ଶଙ୍କା
ମୁହିଂ ଯାଉ ଯାଉ ବାଟରେ ବିଚାରିଲି ଚିତ୍ତେ
ମୋହେସରି ଭାଗ୍ୟବନ୍ତ ନାହିଁ ନା ଜଗତେ

ମନେ ବିଚାରିଲି ମୋହୋ ସମ ସରି ନାହିଁ କେହି
ମୁହିଂ ଲଙ୍କାକୁ ଯାଉଛି ମାନବ ଦେହ ବହି ।
ଗରବ ନ ସହନ୍ତି ପ୍ରଭୁ ପଡ଼ିଲି ତଳେ ଯାଇ
ଡାକିଲି ରଖ ରଖ ମୋତେ ଜଗନ୍ନାଥ ଗୋସାଇଁ
ହସି ଆଜ୍ଞା ଦେଲେ ଆସ ଆସ ବୋଲି
ଶରଣ ସମ୍ଭାଳି ଲଙ୍କାପୁରକୁ ମୁହିଂ ଗଲି ।

ଜଗନ୍ନାଥଙ୍କ ସହ ଲଙ୍କାଯାତ୍ରା କରିବା ପରି କବି ଦିନେ ତାଙ୍କ ପ୍ରଭୁଙ୍କ ସହ ପଣସ ଚୋରି କରିବାକୁ ଯାଇଥିଲେ । କୃଷ୍ଣ ଅବତାରରେ 'ଲବଣୀ ଚୋରୀ' କରି ଖାଇବାର ଅଭ୍ୟାସ ଜଗନ୍ନାଥଙ୍କର ହୁଏତ ମନେ ପଡ଼ିଗଲା । ସେ ସାଙ୍ଗରେ ନେଲେ ବଳରାମଙ୍କୁ । ପଣସ ତ ଖିଆହେଲା । କିନ୍ତୁ ସେତିକିବେଳେ ଭକ୍ତକବିଙ୍କ ମନରେ ଗର୍ବ ଭାବ ଉଦୟ ହେବାରୁ ତା'ର ଗଞ୍ଜନ ବି ହେଲା । ସବୁଥର ପରି ଏଥର ମଧ କବି ଚୋର ଅପବାଦ ପାଇ ରାଜାଙ୍କ ଦ୍ୱାରା ବନ୍ଧା ହେଲେ ଏବଂ ଜଗନ୍ନାଥଙ୍କ ସ୍ୱପ୍ନାଦେଶରେ ମୁକ୍ତିଲାଭ କଲେ । ଭକ୍ତର ବିଜୟ ହେଲା । ଏସବୁ ଉପାଖ୍ୟାନ ଗର୍ବଗଞ୍ଜନ ଓ ଭକ୍ତ ଉଦ୍ଧାରଣ ଭାବନାକୁ ମନରେ ରଖି ଲେଖାଯାଇଛି । ଘଟଣାର ସତ୍ୟତା ଅପେକ୍ଷା ଭକ୍ତିତତ୍ତ୍ୱର ଗୁରୁତ୍ୱ ଏଥିରେ ବେଶୀ ।

ଅସମ୍ଭବକୁ ସମ୍ଭବ କରିପାରୁଥିବା ବିଶ୍ୱାସରୁ 'ବେଦାନ୍ତସାର ଗୁପ୍ତଗୀତା', 'ବ୍ରହ୍ମଗୀତା', 'ଗୀତାବକାଶ'ର ପରିକଳ୍ପନା । 'ବେଦାନ୍ତସାର ଗୁପ୍ତଗୀତା'ରେ ଜଡ଼ ହରିଦାସ, 'ବ୍ରହ୍ମଗୀତା'ରେ ପାଷାଣ ଓ 'ଗୀତାବକାଶ'ରେ ବାଉରୀ ଜାତିର ଜନୈକ ବ୍ୟକ୍ତି କବିଙ୍କ କାଉଁରୀ ସ୍ପର୍ଶରେ ଅସମ୍ଭବକୁ ସମ୍ଭବ କରିଛନ୍ତି । ଜଡ଼ ହରିଦାସ ବେଦାନ୍ତର ବ୍ୟାଖ୍ୟା କରି ପଣ୍ଡିତମାନଙ୍କୁ ଚମତ୍କୃତ କରିଛି । ପାଷାଣ ବ୍ରହ୍ମଜ୍ଞାନର ବିଶ୍ଳେଷଣ କରିଛି ଓ ବାଉରୀ କରିଛି ସଂସ୍କୃତ ଗୀତାର ଓଡ଼ିଆ ଅନୁବାଦ । ଏସବୁ ଘଟଣାରେ ବିଶେଷ ପାର୍ଥକ୍ୟ ନାହିଁ । ପତିତ ଉଦ୍ଧାରଣ କରି ଭକ୍ତକବି ସାର୍ଥକ ହୋଇଛନ୍ତି । ଭାରତର ପ୍ରତ୍ୟେକ ସନ୍ଥ, ସାଧୁ, ସାଧକ ଓ ଭକ୍ତଙ୍କ ଜୀବନ ଚରିତର ଲେଖକମାନେ ଏପରି ବହୁ ଘଟଣାର ଉଦ୍ଭାବନ କରିଛନ୍ତି । ବଳରାମଙ୍କ ପରି ମହାରାଷ୍ଟ୍ରର ପ୍ରସିଦ୍ଧ ସନ୍ଥ ଜ୍ଞାନେଶ୍ୱର ମଇଁଷି ମୁଣ୍ଡରେ ହାତ ଦେଇ ଗୀତାର୍ଥ କରାଇଥିଲେ ବୋଲି ଲୋକମୁଖରେ ପ୍ରଚାରିତ । ମତ୍ତହସ୍ତୀ ଦମନ କଥା ଏକାଧିକ ଭକ୍ତଙ୍କ ଚରିତରୁ ମିଳିଥାଏ ।

ଭକ୍ତଙ୍କ ଙ୍କଷଣ ବେଳେ ଭଗବାନ ବିଭିନ୍ନ ଉପାୟରେ ଭକ୍ତକୁ ରକ୍ଷା କରିଥାନ୍ତି । କେତେବେଳେ ସ୍ୱପ୍ନାଦେଶ ଦେଇ ତ ପୁଣି କେତେବେଳେ ନିଜେ ଆବିର୍ଭାବ ହୋଇ । 'ବ୍ରହ୍ମଗୀତା'ରେ ନିଜେ ଭଗବାନ ଆବିର୍ଭୂତ ହୋଇ କବିଙ୍କୁ ବିପଦରୁ ରକ୍ଷା କରିଥିଲେ । 'ବ୍ରହ୍ମଗୀତା'ରୁ ଏହାର ସୂଚନା ମିଳେ - ''ପ୍ରତାପରୁଦ୍ର ଦେବ ବଳରାମ ଦାସ କଟାଳ

କଲେ। ବ୍ରାହ୍ମଣମାନେ ଉପାହାସ କଲେ, ଏ ଆମ୍ବ ବାନା। ପାଷାଣ୍ଡମାନଙ୍କୁ ନକହି କହିଦେଲୁ। ବ୍ରାହ୍ମଣମାନଙ୍କଠାରେ ବଳରାମ ଦାସେ ବଖାଣ କଲେ। ବ୍ରାହ୍ମଣମାନେ ଲଜ୍ଜା ପାଇଲେ। ଭକ୍ତକୁ ସେବା କଲେ। ବ୍ରାହ୍ମଣ ମାନ୍ୟ କଲେ। ଭକ୍ତର ଅପମାନ ମୁଁ ନ ସହଇ, ଭକ୍ତକୁ କଷଣ ପଡ଼ିଲେ ପ୍ରସନ୍ନ ହୁଅଇ। ଅର୍ଜୁନ ଶୁଣି ସନ୍ତୋଷ ହୋଇଲେ।''

ଅସାଧ ସାଧନ କରୁଥିବା ପ୍ରବୃତ୍ତିରୁ 'ଚୌରାଶୀ ଆଜ୍ଞା'ର ପଣସ ଉପାଖ୍ୟାନର ସୃଷ୍ଟି। ଏହି ଗ୍ରନ୍ଥ ମୁଖ୍ୟତଃ ଯଶୋବନ୍ତଙ୍କ ମହିମା ପ୍ରଚାର ପାଇଁ ଉଦ୍ଦିଷ୍ଟ ହେଲେହେଁ ଏଥିରେ ପ୍ରସଙ୍ଗକ୍ରମେ ଅନ୍ୟାନ୍ୟ ସଖାଙ୍କ କଥା ମଧ ରହିଛି। ସେଦିନ ପୁରୀକ୍ଷେତ୍ରରେ ପ୍ରତାପରୁଦ୍ର ଓ ଶ୍ରୀ ଚୈତନ୍ୟଙ୍କ ସମ୍ମୁଖରେ ଏହି ନାଟକୀୟ ପରୀକ୍ଷା ଆରମ୍ଭ ହୁଏ। ସମସ୍ତଙ୍କ ଆଖି ଆଗରେ ପଣସ ମଞ୍ଜିରୁ ଶାଖା ପତ୍ର ଶୋଭିତ ବିଶାଳ ବୃକ୍ଷ ଉତ୍ପନ୍ନ ହୋଇ ଫଳ ଫଳେ। ସେ ଫଳ ପାଚି ତୋଳା ହୁଏ। ଉପସ୍ଥିତ ଭକ୍ତବୃନ୍ଦ ଏହି ଫଳର ରସାସ୍ୱାଦ କରି ନିଜ ଜୀବନକୁ ଧନ୍ୟ କରନ୍ତି। ଏହିପରି ଏକ ଘଟଣାର ଉଲ୍ଲେଖ ମିଳେ ସାରଳା 'ମହାଭାରତ'ରେ। ସେଠି ପଞ୍ଚସଖାଙ୍କ ବଦଳରେ ଥିଲେ ପଞ୍ଚପାଣ୍ଡବ ଓ ସେମାନଙ୍କର ଜାୟା ଦ୍ରୌପଦୀ। ପଣସ ସ୍ଥାନରେ ଥିଲା ଆମ୍ବ। ପୁଣି ଏହି ଗଳ୍ପ ମିଳେ ଲୋଚନ ଦାସଙ୍କ 'ଚୈତନ୍ୟ ମଙ୍ଗଳ'ରେ ଏବଂ କୃଷ୍ଣ ଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ। ଏସବୁ କେବଳ କାଳ୍ପନିକ ଉପାଖ୍ୟାନ ନୁହେଁ। ତନ୍ତ୍ରସାଧନା ବଳରେ ତାନ୍ତ୍ରିକମାନେ ଏସବୁ ଅସମ୍ଭବ କାର୍ଯ୍ୟ କରୁଥିବା ଜାହାଙ୍ଗୀରଙ୍କ ଦରବାରରେ ଉପସ୍ଥିତ ଥିବା ଜଣେ ଇଂରେଜ ପରିବ୍ରାଜକଙ୍କ ଭ୍ରମଣ କାହାଣୀରୁ ଜଣାଯାଏ। ସିଦ୍ଧି ବଳରେ ଏପରି କରିବା ଅସମ୍ଭବ ବି ନୁହେଁ। ଭକ୍ତଙ୍କ ଚରିତ ଗ୍ରନ୍ଥ ସବୁରେ ଏପରି ବହୁ ଘଟଣାର ଉଲ୍ଲେଖ ମିଳେ। ସତ୍ୟାସତ୍ୟ ପ୍ରତି ଦୃଷ୍ଟି ନ ରଖି ଲୋକେ ଏପରି ଗଳ୍ପର ଅବତାରଣା କରୁଥିଲେ। କହିବା ଲୋକ ଅତି ଦମ୍ଭରେ କହିବା ପରି ଶୁଣିବା ଲୋକ ବିନା ଦ୍ୱିଧାରେ ଶୁଣୁଥିଲେ।

ମତ୍ତହସ୍ତୀ ଉପାଖ୍ୟାନ ଏହିପରି ଆଉ ଏକ ପ୍ରସଙ୍ଗ। ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ' ଅନୁଯାୟୀ ବଳରାମ ମତ୍ତହସ୍ତୀକୁ ଦମନ କରି 'ମତ୍ତବଳରାମ' ନାମରେ ପରିଚିତ ହୋଇଥିଲେ। ବଙ୍ଗଳାରେ ଆଉ ମଧ ଜଣେ 'ମତ୍ତ ବଳରାମ' ଥିବା ଜଣାଯାଏ। 'ଚୈତନ୍ୟ ଚରିତାମୃତ'ରେ ମତ୍ତହସ୍ତୀ ଟାଣିପାରୁ ନ ଥିବା ରଥକୁ ଶ୍ରୀଚୈତନ୍ୟ ଟାଣିବାକୁ ସକ୍ଷମ ହୋଇ ନିଜ ଅଲୌକିକ ଶକ୍ତିର ପରିଚୟ ଦେଇଥିଲେ। 'ଜଗନ୍ନାଥ ଚରିତାମୃତ'ରେ କବି ବଳରାମ ନାମରେ ମତ୍ତ ହେଉଥିବା କଥା କୁହାଯାଇଛି। ଯୋଗଶାସ୍ତ୍ରରେ ମନରୂପୀ ମତ୍ତହସ୍ତୀକୁ ଦମନ କରି ସାଧକ ସିଦ୍ଧିଲାଭ କରେ। ଏହିପରି ବିଭିନ୍ନ ପରମ୍ପରା ମତ୍ତହସ୍ତୀ ଦମନ କଥାର ସୃଷ୍ଟି ହୋଇ ବଳରାମଙ୍କ ପାଇଁ ପ୍ରୟୋଗ କରାଯାଇଛି। ସବୁ ଗଳ୍ପ ପରି ଏଥିରେ ବି ସତ୍ୟତା ନାହିଁ କି ଐତିହାସିକତା ନାହିଁ; କିନ୍ତୁ ଅଛି କେବଳ ଭକ୍ତ ମହିମା,

ବଳରାମଙ୍କର ଅଲୌକିକ ମହିମା ।

ଭକ୍ତ ବଳରାମ ନିଜର କବିତ୍ୱ ଓ ସାଧନା ବଳରେ ଏତେ ପ୍ରସିଦ୍ଧ ହୋଇଯାଇଥିଲେ ଯେ, ତାଙ୍କ ପାଇଁ ଭକ୍ତମାନେ ବହୁ ଅଲୌକିକ ଗଳ୍ପର ସୃଷ୍ଟି କରିଥିଲେ । ତାଙ୍କ ପାଇଁ ଶୁଚି ଅଶୁଚିର ପ୍ରଶ୍ନ ନ ଥିଲା । ଯେ କୌଣସି ଅବସ୍ଥାରେ ଥିଲେ ବି, ସେ ଭଗବାନଙ୍କର ପ୍ରିୟ ହୋଇପାରୁଥିଲେ । ସାଧାରଣରେ ଅଲୌକିକ ରୂପେ ଜଣାଯାଉଥିବା ବହୁ ଘଟଣା ଭକ୍ତ ନିକଟରେ ବାସ୍ତବରେ ପରିଣତ ହେଉଥିଲା । ଘଟଣା ଦୃଷ୍ଟିରୁ ଏହାର ଐତିହାସିକତାରେ ସନ୍ଦେହ ପ୍ରକାଶ ପାଉଥିଲେହେଁ, ଭକ୍ତଙ୍କ ପାଇଁ ଏହା ଥିଲା ନିରାଟ ସତ୍ୟ । ବଳରାମ ତଥା ଭାରତର ଅନ୍ୟାନ୍ୟ ସନ୍ଥ ଓ ଭକ୍ତଙ୍କ ପାଇଁ ଏହା ପ୍ରଚାରିତ ହୋଇ ଭକ୍ତ ଜୀବନର ଆଦର୍ଶ ତଥା ଭକ୍ତତତ୍ତ୍ୱକୁ ପ୍ରଚାରିତ କରୁଥିଲା ।

ବଳରାମଙ୍କ ପାଇଁ ପ୍ରଚାରିତ ଉପାଖ୍ୟାନ ସବୁରୁ 'ପାଷାଣ୍ଡ ଦଳନ', 'ପତିତ ଉଦ୍ଧାରଣ', 'ଆତ୍ମନିବେଦନ', ଭଗବାନଙ୍କ ସହ ଆତ୍ମୀୟତା ସ୍ଥାପନ, 'ଭଗବାନଙ୍କଠାରେ ସଂପୂର୍ଣ୍ଣ ଆତ୍ମସମର୍ପଣ', ଭଗବାନଙ୍କ ଅଲୌକିକ ଲୀଳାରେ ଯୋଗଦାନ, ଭଗବାନଙ୍କ ବିଭିନ୍ନ ଅବତାର ସହ ସମ୍ପର୍କ ସ୍ଥାପନ ଓ 'ବ୍ରାହ୍ମଣଠାରୁ ଭକ୍ତର ଶ୍ରେଷ୍ଠତା' ପ୍ରଭୃତି ତତ୍ତ୍ୱ ପ୍ରତିପାଦିତ ହୋଇଛି । ପୁଣି କୁହାଯାଇଛି, ଭକ୍ତ ଭଗବାନଙ୍କର ସ୍ୱଜନ ହୋଇଥିବାରୁ ସେ ସାଂସାରିକ ତଥା ସାମାଜିକ ବନ୍ଧନରୁ ମୁକ୍ତ ଏକ ଶ୍ରେଷ୍ଠ ମାନବ ।



# ବଳରାମଙ୍କ ବ୍ୟକ୍ତିତ୍ୱ ଓ ଜୀବନ ଦୃଷ୍ଟି

ଭକ୍ତ ଭାବରେ ବଳରାମଙ୍କ ପ୍ରସିଦ୍ଧି ତାଙ୍କ ବ୍ୟକ୍ତିତ୍ୱର ପରମ ପରାକାଷ୍ଠା । ସେ ନିଜ ସାଧନା ବଳରେ ଜୀବନର ଏପରି ଏକ ସୋପାନକୁ ଉନ୍ନୀତ ହୋଇଯାଇଥିଲେ ଯେ, ଭଗବାନଙ୍କ ସହ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପିତ ହୋଇପାରିଥିଲା । 'ବ୍ରହ୍ମାଣ୍ଡ ଭୂଗୋଳ'ର ବିଦେହ ରାଜନଙ୍କ ପରି ସେ ଆଉ ସାଧାରଣ ମାନବ ନ ଥିଲେ । ସାଧାରଣ ଦୃଷ୍ଟିରେ ସେ ଜଣେ ଶରୀରଧାରୀ ମାନବ ଥିଲେହେଁ, ସେ ପ୍ରକୃତରେ ଥିଲେ ବିଦେହୀ । ସାଧାରଣ ଜୀବନର ସୁଖ-ଦୁଃଖ, ମାୟାମମତା ପ୍ରଭୃତି ତାଙ୍କୁ ଆଉ ସ୍ପର୍ଶ କରିପାରୁ ନ ଥିଲା । ଜୀବନର ଏହି ଅବସ୍ଥାରେ ସେ ଯେ କେବଳ ଜୀବନମୁକ୍ତ ଅବସ୍ଥା ପ୍ରାପ୍ତ ହୋଇଥିଲେ ତାହା ନୁହେଁ, ସେ ଭଗବାନଙ୍କ ସହ ସିଧାସଳଖ କଥାବାର୍ତ୍ତା କରୁଥିଲେ ଓ ଭଗବାନଙ୍କ ଲୀଳାଖେଳାରେ ଭାଗ ନେଉଥିଲେ । ସେ ଯେପରି ଭଗବାନଙ୍କର ବଶ ଥିଲେ, ସେ ମଧ୍ୟ ସେହିପରି ଭଗବାନଙ୍କୁ ବଶୀଭୂତ କରି ପାରିଥିଲେ । ସାଧନାର ଏହି ଚରମ ଅବସ୍ଥାରେ ସେ ଭଗବାନଙ୍କ ସହ ମିଶି ଏକାକାର ହୋଇଯାଇ ଥିଲେ । ଏହିପରି ଏକ ଅବସ୍ଥାରେ ରହି ସେ କେବଳ କହିପାରୁଥିଲେ, 'ଭକ୍ତି ଦେଲେ ମୁକ୍ତି ମାଗଇ ନାହିଁ', 'ଇଚ୍ଛା କଲେ ମୁଁ ବଇକୁଣ୍ଠକୁ ଯିବି' ପ୍ରଭୃତି ଜୀବନର ଶେଷ କଥା । ସାଧନାର ଏହି ଚରମ ପରିଣତିରେ ସାଧନା ଯେଉଁ ଭାବଦଶାରେ ଉପସ୍ଥିତ ହୁଏ, ତାହାକୁ ଉଲ୍ଲେଖ କରି ବଳରାମ ଦାସ କହିଛନ୍ତି -

ଦଇବୀ ମାୟାରୁ ସେ ଯେ ହୋଇବ ଉଦାସ
ଜୀବନକୁ ଖଟାଇବ ପରମହଂସ ପାଶ ।
ଶୁଣି ନ ଶୁଣିବ ପୁଣି ଦେଖି ନ ଦେଖିବ
ଅନୁକ୍ଷଣେ ପରମହଂସକୁ ଗୁଣୁଥିବ ।

(ଉତ୍ତର କାଣ୍ଡ - ପୃ: ୧୪୪)

'ବ୍ରହ୍ମାଣ୍ଡ ଭୂଗୋଳ'ର ବିଦେହ ଉପାଖ୍ୟାନରେ ମଧ୍ୟ ଏହି କଥା କୁହାଯାଇଛି । ବଳରାମ ଯାହାକୁ 'ଉଦାସ' କହିଛନ୍ତି, ତାହାକୁହିଁ ଗୀତାରେ 'ଜୀବନମୁକ୍ତ' ଅବସ୍ଥା କୁହାଯାଇଛି । ସାଧାରଣତଃ ସାଧକମାନେ ଆତ୍ମା ଓ ପରମାତ୍ମାକୁ ଏକାକାର କରିବା ବା ପିଣ୍ଡ ଓ ବ୍ରହ୍ମାଣ୍ଡର ସମନ୍ୱୟ କରିବାକୁ ସାଧନାର ଶ୍ରେଷ୍ଠ ଅବସ୍ଥା ରୂପେ ଗ୍ରହଣ କରିଥାନ୍ତି । ଏହି ଅବସ୍ଥାରେ ସାଧକ ସଂସାରରେ ଥାଇ ମଧ୍ୟ ନ ଥିବା ପରି ରହୁଥିଲେ । ସବୁ ଦେଖି, ଦେଖି ପାରୁ ନ ଥିଲେ ଏବଂ ସବୁ ଶୁଣି, ଶୁଣି ପାରୁ ନ ଥିଲେ । ଭକ୍ତ ବଳରାମଙ୍କ ଜୀବନର ଏହି ଅବସ୍ଥା ପାଇବା ହିଁ ଥିଲା ଆଦର୍ଶ । ସାଧାରଣତଃ ସନ୍ଥ ଓ

ମହାତ୍ମାମାନେ ଏହି ଅବସ୍ଥାର କାମନା କରିଥାନ୍ତି । 'ଜଗମୋହନ ରାମାୟଣ'ରେ 'ମହାତ୍ମା'ଙ୍କର ଚିତ୍ର ପ୍ରଦାନ କରି କବି କହିଛନ୍ତି,

ଅଜପା ଜପିଲା ଯେ ନ ଚିହ୍ନିଲା ଆତ୍ମା
ତାହାକୁ କେମନ୍ତେ ଆମ୍ଭେ ବୋଲିବା ମହାତ୍ମା ।
ଆତ୍ମା ପରଚେ କରିଣ ସିଦ୍ଧ ଯେବେ ମିଶି ।
ତାହାକୁ ପରମଯୋଗୀ ବୋଲି ଯେ ପ୍ରକାଶି ।

ବଳରାମଙ୍କ ଏହି ଉକ୍ତିରେ 'ମହାତ୍ମା'ଙ୍କ ଜୀବନର ଆଦର୍ଶ ରୂପେ 'ଆତ୍ମା ପରଚେ କରି' ସିଦ୍ଧ ଦେହ ପ୍ରାପ୍ତି ଉପରେ ଗୁରୁତ୍ୱ ଦିଆଯାଇଛି । ସାଧକ ସ୍ତରରେ ସେ 'ଆତ୍ମା ପରଚେ' କରି ମହାତ୍ମା ହୋଇଥିଲେହେଁ, ସାଧାରଣ ମାନବ ଭାବେ ସେ ଥିଲେ ଜଣେ ବିଶିଷ୍ଟ ସନ୍ଥ । ମଣିଷ ସମାଜରେ ମଣିଷ ହୋଇ ରହିବାକୁ ହେଲେ କେତେଗୁଡ଼ିଏ ସଦ୍‌ଗୁଣର ଆବଶ୍ୟକ ହୁଏ । ଏ ଦୃଷ୍ଟିରୁ ଶ୍ରୀରାମ ଥିଲେ ବଳରାମଙ୍କର ଆଦର୍ଶ । ଏପରି ଆଦର୍ଶ ମାନବର ଗୁଣସବୁର ଉଲ୍ଲେଖ କରି ବଳରାମ ଲେଖିଛନ୍ତି,

ସତ୍ୟ ପୁରୁଷଙ୍କର ନୋହଇ ଯେସନେକ ବାଣୀ
ଧର୍ମ ସେ ତାହାଙ୍କର ଅଟଇ କାରେଣୀ ।
ସତ୍ୟ ନ ଛାଡ଼ିବ ନ କରିବ ପ୍ରାକର୍ମ
ପ୍ରାଣୀମାନଙ୍କୁ ନ କହିବ ମର୍ମ ।
ସର୍ବଦା ଶୀତଳ ବଚନ ଭାଷିବ
ଗରୁ ଗଉରୋବ ଲୋକଙ୍କୁ ନ ହସିବ ।
ଦେବତା ଅତିଥି କରିବାକ ପୂଜା
ଆବର ଭଗତି ହୋଇବ ଦେବରାଜା ।
ତାହାକୁ ସେବା ସନ୍ଥଜନଙ୍କର ଗତି ।
ଏ ମାର୍ଗେ ଗଲେ ସେ ସର୍ଗରେ ବସନ୍ତି ।

(ଅଯୋଧ୍ୟା କାଣ୍ଡ, ୩୦୩ - ୩୦୫, ପଦ)

ବଳରାମଙ୍କ ଏହି ଉକ୍ତିରୁ ସନ୍ଥ ଜୀବନର ନିମ୍ନ କେତେକ ଆଦର୍ଶ ପ୍ରତିଫଳିତ ହୋଇଥାଏ ।

(୧) ଧର୍ମ ପଥରେ ଚଳିବା
(୨) ସତ୍ୟ କହିବା
(୩) ଗର୍ବ ବା ଅଭିମାନ ନ କରିବା
(୪) ଅନ୍ୟ ମନରେ କଷ୍ଟ ନଦେବା
(୬) ଗୁରୁଜନଙ୍କୁ ଉପହାସ ନ କରିବା

(୭) ଅତିଥି ଓ ଦେବତାଙ୍କ ପୂଜା କରିବା

(୮) ଦେବରାଜା (ଜଗନ୍ନାଥ)ଙ୍କୁ ସେବା ବା ଭକ୍ତି କରିବା ଇତ୍ୟାଦି ।

'ଜଗମୋହନ ରାମାୟଣ'ର ପ୍ରତ୍ୟେକ ଚରିତ୍ରରେ, ପ୍ରତ୍ୟେକ ପ୍ରସଙ୍ଗରେ, କବି ଏହି ସବୁ ଗୁଣ ଉପରେ ଗୁରୁତ୍ୱ ଆରୋପ କରିଥିବାରୁ କବିଙ୍କ ବ୍ୟକ୍ତିତ୍ୱର ଏହା ଆଧାର ଥିଲା ବୋଲି ଅନୁମାନ କରାଯାଇପାରେ । କିନ୍ତୁ ଏହା ହେଉଛି, ପ୍ରକୃତ ବ୍ୟକ୍ତିତ୍ୱର ଏକ ଅଙ୍ଗ ମାତ୍ର । ମନୁଷ୍ୟ ଯେତେ ଚେଷ୍ଟା କଲେ ବି ମନ ଓ ବଚନ, କଥା ଓ କର୍ମରେ ସମନ୍ୱୟ ଆଣିପାରେ ନାହିଁ । ବହୁ ବଡ଼ ବଡ଼ ଆଦର୍ଶ ପ୍ରଚାର କରୁଥିବା ବହୁ ବ୍ୟକ୍ତି ନିଜ ଜୀବନରେ ବହୁ ଘୃଣ୍ୟ ଘଟଣାର ନାୟକ ହେଉଥିବା ବାରମ୍ବାର ଦେଖିବାକୁ ମିଳେ। ଏହା କେତେକାଂଶରେ ସତ୍ୟ ହେଲେ ବି, ପ୍ରାଚୀନ ଭାରତର ବହୁ ମନୀଷୀ, ମହାତ୍ମା, ମହାପୁରୁଷ ଓ ସନ୍ଥ ମନୁଷ୍ୟ ଜୀବନର ଏହି ସହଜ ଓ ସ୍ୱାଭାବିକ ପ୍ରବୃତ୍ତିକୁ ଅତିକ୍ରମ କରି ନିଜକୁ ଦେବତା ସମ୍ପନ୍ନ ବ୍ୟକ୍ତିରେ ପରିଣତ କରୁଥିଲେ । ସେମାନଙ୍କ କଥା ଓ କର୍ମରେ ବିଭିନ୍ନତା ପ୍ରାୟ ଦେଖିବାକୁ ମିଳୁ ନ ଥିଲା । ବଳରାମ ଥିଲେ ଓଡ଼ିଶାର ଏହିପରି ଜଣେ ଭକ୍ତ ତଥା ମହାପୁରୁଷ ।

ବ୍ୟକ୍ତିତ୍ୱର ପ୍ରଥମ ଝଲକ ମିଳେ ମନୁଷ୍ୟର ରୂପ ବା ଚେହେରାରୁ । ବଳରାମ ଦାସ କଳା ଥିଲେ କି ଗୋରା ଥିଲେ, ମୋଟା ଥିଲେ କି ପତଳା ଥିଲେ, ଗେଡ଼ା ଥିଲେ କି ଡେଙ୍ଗା ଥିଲେ, କହିବା ପାଇଁ କୌଣସି ପ୍ରମାଣ ଆମ ନିକଟରେ ନାହିଁ । ବଡ଼ ଓଡ଼ିଆ ମଠରେ ମହନ୍ତମାନଙ୍କର ଯେଉଁ ଚିତ୍ରପଟ ରଖାଯାଇଛି, ସେଥିରୁ ଗୋଟିଏ ଚିତ୍ରପଟ ବ୍ୟତୀତ ଆଉ ସମସ୍ତଙ୍କର ନାଁ ଅଛି । ନାଁ ନ ଥିବା ଚିତ୍ରପଟକୁ ବଳରାମ ବୋଲି ଅନୁମାନ କରାଯାଇ ପାରେ । କାରଣ ସେ ଥିଲେ ଏହି ପରମ୍ପରାର ଆଦିଗୁରୁ । ଅଚ୍ୟୁତାନନ୍ଦ ଦାସଙ୍କ ରଚିତ 'ତୋଳା ମାଳିକା' ବା 'ଦଶ ପଟଳ ମାଳିକା'ରେ କୌଣସି ଜଣେ ବଳରାମଙ୍କ ରୂପ ଓ ଗୁଣ ସମ୍ପର୍କରେ ଏକ ସଂକ୍ଷିପ୍ତ ବର୍ଣ୍ଣନା ମିଳିଥାଏ । ନିମ୍ନରେ ସେହି ପଂକ୍ତିଗୁଡ଼ିକ ଉଦ୍ଧାର କରାଯାଇଛି-

ବଳରାମ ଦାସ ସେ ଯେ ଜନମ । ଗୋବିନ୍ଦ ତହୁଂ ସେ ଯେ ଉତପନ ।
କଳଙ୍କି ରୂପକୁ ଧାଇ ନିଶ୍ଚଳେ । ଯେକାମ୍ବର ବନେ ବାହାଡ଼ା ମୂଳେ ।
ବାହାଡ଼ା ବୃକ୍ଷ ମୂଳେ ତାର ବାସ । ଗଉର ବର୍ଣ୍ଣ ବାଙ୍ଗର ମନୁଷ୍ୟ ।
ମନୁଷ୍ୟ ଦେଖିଲେ ସେ ଯେ ଡରଇ । କୃଷ୍ଣ ନାମ ଧରି ସ୍ତୁତି କରଇ ।
ନିରତେ କିଶୋରୀ ଦର୍ଶନ କରେ । ଗତ ବାସନାକୁ ହୃଦରେ ଧରେ ।
ତାରକ ମନ୍ତ୍ର ସେ କରେ ଭଜନ । ବେନି ଗୋଟି ପତ୍ର କରେ ଭୋଜନ ।
ସଦା ଆନନ୍ଦ ବ୍ୟଥା ନ ଘେନଇ । ନିରତେ ନୟନେ ହରି ଦେଖଇ ।

ଅଚ୍ୟୁତାନନ୍ଦଙ୍କ ବର୍ଣ୍ଣନାରୁ 'ତାରକ ମନ୍ତ୍ର ସେ କରେ ଭଜନ' ପଂକ୍ତିଟି 'ଜଗମୋହନ

ରାମାୟଣ'ର ରଚୟିତା କବି ବଳରାମଙ୍କ ଚରିତ୍ରର ଅନୁକୂଳ। 'ଗୋବିନ୍ଦ ତହୁଂ ସେ ଯେ ଉତପନ' ପଂକ୍ତିର ଗୋବିନ୍ଦକୁ ଜଗନ୍ନାଥ ଅର୍ଥରେ କଲେ, ଏହା 'ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା' ପଂକ୍ତି ସହ ସାମ୍ୟ ରକ୍ଷା କରେ। ଏହା ବ୍ୟତୀତ ଏଥିରେ ଥିବା ଅନ୍ୟ ସବୁ ପଂକ୍ତି, ଅର୍ଥାତ୍ 'କୃଷ୍ଣନାମ ଧରି ସ୍ତୁତି କରଇ', 'ଗତ ବାସନାକୁ ହୃଦରେ ଧରେ' 'ନିରତେ ନୟନେ ହରି ଦେଖଇ' ଓ 'ସଦା ଆନନ୍ଦ ବ୍ୟଥା ନ ଘେନି' ପ୍ରଭୃତି ପଂକ୍ତି ବଳରାମଙ୍କ ବିଷୟରେ ପ୍ରଚଳିତ ଧାରଣା ସବୁର ବିରୋଧ କରେ ନାହିଁ। କିନ୍ତୁ 'କଳଙ୍କି ରୂପକୁ ଧାଇ ନିଷ୍ଠଳେ। ଯେକାମ୍ରର ବନେ ବାହାଡ଼ା ମୂଳେ', ପଦଟି କବିଙ୍କ ସମ୍ପର୍କରେ ପ୍ରଚଳିତ ଧାରଣାଠାରୁ ସ୍ୱତନ୍ତ୍ର। କାରଣ ସାଧାରଣତଃ କବିଙ୍କୁ ପୁରୀବାସୀ ଓ ସେ ଜଗନ୍ନାଥଙ୍କ ସେବକ ଥିବା ଗ୍ରହଣ କରାଯାଏ। କବିଙ୍କ ଜୀବନୀରୁ ଜଣାଯାଇଥାଏ ଯେ ସେ ସମୟ ସମୟରେ ଓଡ଼ିଶାର ଅନ୍ୟ ସ୍ଥାନମାନରେ ମଧ୍ୟ ରହୁଥିଲେ। ସେ ହୁଏତ କିଛି ଦିନ ପାଇଁ ଏକାମ୍ରର ବନରେ ବାସ କରିଥିବେ। ଏହିସବୁ ଉପାଦାନକୁ ବିଚାରକୁ ନେଇ ଅନ୍ତତଃ ପକ୍ଷେ ଏତିକି ବିଶ୍ୱାସ କରାଯାଇପାରେ ଯେ କବି 'ଗଉର ବର୍ଣ୍ଣ ବାଙ୍ଗର ମନୁଷ୍ୟ' ଥିଲେ।

ମଣିଷ ଆକୃତି, ପ୍ରକୃତି, ରୂପ ଓ ରଙ୍ଗ, ତା' ବ୍ୟକ୍ତିତ୍ୱର ବହିଃପ୍ରକାଶ ମାତ୍ର। ମଣିଷ ମୃତ୍ୟୁବରଣ କରିବା ସଙ୍ଗେ ସଙ୍ଗେ, ସେ ସବୁ ମାଟିରେ ମିଶିଯାଏ। ଦେଖିବା ଲୋକେ ସେହି ଚେହେରାକୁ କିଛି ଦିନ ମନେପକାନ୍ତି ସତ, କିନ୍ତୁ ପରେ ତାହା ମଧ୍ୟ ପାଶୋରି ହୋଇଯାଏ। କିନ୍ତୁ ଯାହା ମନେରହେ, ସେସବୁ ହେଲା ତାଙ୍କର କୀର୍ତ୍ତି ରାଶି ଓ ସମାଜ ସହ ତାଙ୍କର ସମ୍ପର୍କ। ବିଧିବଦ୍ଧ ଜୀବନୀ ଅଭାବରେ ସେସବୁ ଜାଣିବା ସମ୍ଭବ ନହେଲେ ବି ଲୋକମୁଖରୁ ଓ କବିଙ୍କ ରଚନାରୁ ବହୁ ତଥ୍ୟ ଜାଣିହୁଏ। କବି ତାଙ୍କ ରଚନାବଳୀରେ ବିଭିନ୍ନ ଘଟଣାର ବର୍ଣ୍ଣନା କଲାବେଳେ, ବିଭିନ୍ନ ଚରିତ୍ର ଚିତ୍ରଣ କଲାବେଳେ, ମନୁଷ୍ୟର ବିଭିନ୍ନ ପ୍ରକାର ଗୁଣ ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି। ସେସବୁକୁ କବିଙ୍କ ଜୀବନର ପ୍ରଚ୍ଛନ୍ନ ପ୍ରତିବିମ୍ବ ଭାବେ ଗ୍ରହଣ କରି ତାଙ୍କ ବ୍ୟକ୍ତିତ୍ୱର ଏକ ରୂପରେଖ ପ୍ରଦାନ କରିବା ପାଇଁ ଚେଷ୍ଟା କରାଯାଇଛି।

ମନୁଷ୍ୟ ଜୀବନ କେବଳ ସଦ୍‌ଗୁଣର ଆଧାର ନୁହେଁ। ମନୁଷ୍ୟ ଭଲହେବା ପାଇଁ ଯେତେ ଚେଷ୍ଟା କଲେ ବି ବଦ୍‌ଗୁଣସବୁକୁ ପରିତାପ କରିବା ତା' ପକ୍ଷରେ ସମ୍ଭବ ହୁଏ ନାହିଁ। ମଣିଷ ଜୀବନର ଏହାହିଁ ସ୍ୱାଭାବିକ ପ୍ରକ୍ରିୟା। କବି ବଳରାମ ଦାସ ଶ୍ରୀରାମଙ୍କ ମୁଖରେ ସଂସାରର ଏ ବିଚିତ୍ର ଗୁଣ ଉପରେ ଗୁରୁତ୍ୱ ଦେଇ ଲେଖିଛନ୍ତି -

ଏ ପୁଣ୍ୟ ମେଦିନୀ ଯେ ମେଳଛ ଜନ ବହେ
ସକଳ ପ୍ରାଣୀ ଏମନ୍ତ ଏକା ଜଣେ ନୋହେ

ଅବଶ୍ୟ ଦୋଷ କିଛି ଥାଇ ଯେ ଗୁଣ ଥିଲେ
ମନ୍ଦ ନ ମଣିଇ ମୁହିଁ ସ୍ୱରୂପ କହିଲେ ।

(ସୁନ୍ଦରାକାଣ୍ଡ)

ଗୁଣ ଓ ଅବିଗୁଣକୁ ନେଇ ମନୁଷ୍ୟ ଚରିତ୍ର ବିକଶିତ ହେଉଥିଲେ ହେଁ, ସନ୍ଥମାନେ ସଦ୍‌ଗୁଣର ଆଦର କରିଥାନ୍ତି । ସଦ୍‌ଗୁଣ ସବୁ ମଧ୍ୟରୁ ସତ୍ୟ କହିବା ଅନ୍ୟତମ । ସତ୍ୟ ଉପରେ ବଳରାମଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା :

ସତ୍ୟ ପାଇଲେଟି ନର ସ୍ୱର୍ଗେ ବସେ ଯାଇ
ସତ୍ୟ ଲଘନ କଲେ ବହୁତ ପାପ ପାଇ ।

ସତ୍ୟରକ୍ଷା କରି ଶ୍ରୀରାମ ଅଯୋଧ୍ୟାର ରାଜସିଂହାସନ ତ୍ୟାଗ କରି ଚଉଦ ବର୍ଷ ବନକୁ ଗମନ କରିଥିଲେ । ସତ୍ୟ ପାଇଁ ବଳୀ, ହରିଶ୍ଚନ୍ଦ୍ର ପ୍ରଭୃତି ରାଜା ପ୍ରସିଦ୍ଧ । କବି ବଳରାମ ମଧ୍ୟ ସତ୍ୟପଥକୁ ଅନୁସରଣ କରୁଥିବା 'ବଟ ଅବକାଶ'ରୁ ଜାଣିହୁଏ ।

ପରୋପକାରୀ ବିଭୀଷଣଙ୍କୁ ଦର୍ଶନ କରିବା ପାଇଁ ଭକ୍ତ ବଳରାମ ବହୁ ଦିନୁ ଆଶା ରଖିଥିଲେ । ନୀଳାଚଳରେ ଜଗନ୍ନାଥ ଭକ୍ତର ମନକଥା ଜାଣି ଦିନେ ତାଙ୍କୁ ସଙ୍ଗରେ ଘେନି ଲଙ୍କା ଯାତ୍ରା କଲେ । ଯିବାବେଳେ ବଳରାମଙ୍କ ହାତରେ ସୁବର୍ଣ୍ଣ ଝରିଟିଏ ଦେଲେ । ଲଙ୍କାରୁ ଫେରି ଜଗନ୍ନାଥ ମନ୍ଦିରକୁ ଚାଲିଗଲେ । ସୁବର୍ଣ୍ଣ ଝରିଟି ବାଉଳାରେ ବଳରାମଙ୍କ ଠାରେ ରହିଗଲା । ପରଦିନ ଖୋଜା ହେବାରୁ ବଳରାମ ନିଜେ ସୁବର୍ଣ୍ଣ ଝରିଟି ନେଇ ସେବକମାନଙ୍କୁ ଫେରାଇଦେଲେ । ରାଜା ଏ ସବୁ ଶୁଣି ବଳରାମଙ୍କୁ ସତ୍ୟକଥା କହିବାକୁ ଅନୁରୋଧ କଲେ । ମନୁଷ୍ୟ ଦେହରେ ଲଙ୍କା ଯିବା ଅତି ଆଚମ୍ବିତ କଥା । ଲୋକେ ଶୁଣିଲେ ହସିବେ । କେବଳ ଝରିଚୋର ହେବା ସାର୍ଥକ ହେବ । ଏ ସବୁ ଭାବି ବଳରାମ ଅତି କାତର ଭାବେ ଜଗନ୍ନାଥଙ୍କୁ ଜଣାଇବାରୁ,

ହରି ଆଜ୍ଞା ଦେଲେ ତୁ ହୋ ଡରୁଛୁ କାହିଁକି
ଲଙ୍କା ବିଜେ କଥା ମିଛ ହୋଇବ କି ।
ଲଙ୍କା ବିଜେ କାରଣ କହିବୁ ସବୁ ସତ
ଯଥାର୍ଥ କଥାକୁ ଏ ଆମ୍ଭର ସନମତ ।।

ଜଗନ୍ନାଥଙ୍କ ଆଜ୍ଞା ଅନୁଯାୟୀ ବଳରାମ ସତକଥା କହି ଏକ ବିପଦରୁ ରକ୍ଷା ପାଇଥିଲେ ।

ସତ କହି ମନୁଷ୍ୟ ସ୍ୱର୍ଗପ୍ରାପ୍ତି ହେଲା ପରି ଅସତ୍ ପୁରୁଷ ଯେତେ ଶ୍ରେଷ୍ଠ ଜାତିର ହେଲେ ବି ଚାଣ୍ଡାଳରେ ପରିଣତ ହୁଏ । ଏହାହିଁ ଥିଲା ବଳରାମଙ୍କର ଦୃଢ଼ ବିଶ୍ୱାସ । ସେଥିପାଇଁ ଲକ୍ଷ୍ମଣ ମୁଖରେ ଦଶରଥଙ୍କ କାର୍ଯ୍ୟକୁ ନିନ୍ଦା କରି ସେ କହିଛନ୍ତି,

ଅସତ୍ୟ ପୁରୁଷ ସେ ଆମ୍ଭର କିସ ପିତା
ସତ୍ୟ ଥିଲେ ବୋଲିବା ଚଣ୍ଡାଳ ଦେବତା - ୧୩୨୫

× × ×

ନିସତ ପ୍ରାଣୀକି ମାଇଲେ ଦୋଷ ନାହିଁ
ବେଦ ପୁରାଣେ ଏହା ଅଛି ନିର୍ଣ୍ଣା ହୋଇ - ୧୩୨୮

(ଅଯୋଧ୍ୟାକାଣ୍ଡ)

ସତ୍ୟ ପାଳନ ହେଉଛି, ପୁଣ୍ୟ ଲୋକର ପ୍ରକୃତ ଧର୍ମ । ଅସତ୍ୟ ଲୋକ ଠାରୁ ଦୂରରେ ରହିବା ଆବଶ୍ୟକ ।

ସତ୍ୟ ପ୍ରତି ପାଳନ୍ତି ପୁନ୍ୟ ଲୋକମାନେ
ଅସତ୍ୟ ଲୋକଙ୍କର ନ ଯାଇ ସନିଧ୍ୟାନେ - ୧୧୧୯

(ଅଯୋଧ୍ୟାକାଣ୍ଡ)

ସତ୍ୟ ଲଙ୍ଘନ କଲେ ମନୁଷ୍ୟ ଅଶେଷ ପାପର ଭାଗୀ ହୁଏ । ହିନ୍ଦୁଧର୍ମର ପୁରାଣ ଆଗମ ଓ ଧର୍ମଶାସ୍ତ୍ରରେ ପୁଣି ବ୍ରାହ୍ମଣମାନଙ୍କ ମୁଖରେ ସତ୍ୟର ପ୍ରଶଂସା କରି କୁହାଯାଇଛି,

ସତ୍ୟ ଲଙ୍ଘିଲେଣ ଯେତକ ପାପ ପାଇ
ତହିଁର କଥା ହାଦେ କହଣା ନ ଯାଇ ।
ସତ୍ୟ ପାଳିଲେଣ ଯେତେକ ପୁଣ୍ୟ ଗତି
ସାବଧାନ ହୋଇ ତୁ ଶୁଣ ହୋ ଧ୍ରୁପତି ।

(ଅଯୋଧ୍ୟାକାଣ୍ଡ, ୧୦୭୬-୭୭)

ସତ୍ୟ ପାଇଁ ବଳି ରାଜା ନିଜର ନମସ୍ୟ ଗୁରୁ ଶୁକ୍ରଙ୍କ ଉପରେ କ୍ରୋଧ ପ୍ରକାଶ କରିବା ପାଇଁ କୁଣ୍ଠିତ ହୋଇ ନ ଥିଲା ।

ଯେବଣ ଗୁରୁଙ୍କ ପାଦ ବଳକଙ୍କେ ପୋଛି
ପ୍ରଳମ୍ଭ କରି କରି କପାଳ ଫାଟିଅଛି ।
ଯାହାର ପ୍ରସାଦେ ସାଧିଲା ତିନିପୁର
ସତର ଛଳେ ତାକୁ କୋପିଲେ ନୃପବର ।

(ଅଯୋଧ୍ୟାକାଣ୍ଡ - ୧୧୪୪-୪୫)

ସତ୍ୟର ଶକ୍ତି ଅସୀମ । ସତ୍ୟ ବଳରେ ସୃଷ୍ଟି ଚଳେ । ଇନ୍ଦ୍ର ବର୍ଷା କରେ । ସୂର୍ଯ୍ୟ ଆକାଶରେ ଉଦୟ ହୁଏ । ମେରୁ ପୃଥିବୀକୁ ଧାରଣ କରେ । ପବନ ପ୍ରବାହିତ ହୁଏ । ସତ୍ୟରୁ ଷଡ଼ଋତୁ ହୁଏ । ସତ୍ୟ ହେଉଛି ପ୍ରାଣୀମାନଙ୍କର ପରମ ଦେବତା । କେବଳ ବାଇ ଓ ବାତୁଳମାନେ ସତ୍ୟ ଲଙ୍ଘନ କରିଥାନ୍ତି । କବି ବଳରାମ ସତ୍ୟର ମହିମା ଘୋଷଣା କରି କୈକୟୀ ମୁଖରେ କହିଛନ୍ତି,

ଆଜହିଂ ପ୍ରଭାତେ ସୁମରି କଳି ଦାତା
ସତ ପ୍ରାଣୀଙ୍କର ପରମ ଦେବତା ।
ସତ୍ୟେଣ ସିନ୍ଧୁ ଯେ ନ ଲଙ୍ଘଇ କୂଳ

ସତ୍ୟେଣ ଗରଳ ଭକ୍ଷିଲେ ଦେବ ହର ।
ସତ୍ୟ ପାଳି ପୃଥ୍ୱୀ ଯେ ନ ପଡ଼ଇ ତଳ ।
ସତ୍ୟେଣ ଇନ୍ଦ୍ର ଯେ କରଇ ଜଳ ବୃଷ୍ଟି ।
ସତ୍ୟେଣ ଷଡ଼ଋତୁ ଆହ୍ଲାଦଇ ସୃଷ୍ଟି ।
ସତ୍ୟେଣ ମଉଷୋଧି କରଇ ବ୍ୟାଧି ନାଶ
ସତ୍ୟେଣ ଦିନକର ଉଦୟେ ଆକାଶ - ଇତ୍ୟାଦି

(ଅଯୋଧ୍ୟାକାଣ୍ଡ - ୧୧୫୦-୧୧୬୩)

ସତ୍ୟ ପରି ପରୋପକାର ପ୍ରତି କବିଙ୍କର ବିଶେଷ ଶ୍ରଦ୍ଧା ଥିଲା । ଏହା ବି ଥିଲା ଭାରତୀୟ ସଂସ୍କୃତିର ଏକ ବିଶେଷ ଗୁଣ । କବି 'ଜଗମୋହନ ରାମାୟଣ'ର ବହୁ ସ୍ଥଳରେ ପରୋପକାର ମହିମା ପ୍ରତି ପାଠକମାନଙ୍କର ଦୃଷ୍ଟି ଆକୃଷ୍ଟ କରିଛନ୍ତି ।

ପରଉପକାରୀ ଅଟନ୍ତି ଯେବଣ ପ୍ରାଣୀ
ଗମନ୍ତି ସୁରପୁରେ ଯେ ପୁରାଣ ବଖାଣି ।

ପରଉପକାର କରିବାରେ ବିଭୀଷଣ, ସୁଗ୍ରୀବ ଓ ହନୁମାନ ଥିଲେ କବିଙ୍କର ଆଦର୍ଶ । ସେମାନଙ୍କର ଏହି ଗୁଣ ଯୋଗୁଁ ସେମାନଙ୍କର ପଦରଜ ବ୍ରାହ୍ମଣଙ୍କ ଯଜ୍ଞ ଅପେକ୍ଷା ଶ୍ରେଷ୍ଠ ଥିଲା । ଅଯୋଧ୍ୟା ନଗରୀର ପୁନଃନିର୍ମାଣ ହେବା ପରେ ବଶିଷ୍ଠ ଯଜ୍ଞ ଦ୍ୱାରା ଏହାକୁ ପ୍ରତିଷ୍ଠା କରିବାର କଥା । ଅଥଚ ଶ୍ରୀରାମ ପ୍ରଥମେ ପଠାଇଲେ ବିଭୀଷଣ, ସୁଗ୍ରୀବ ଓ ହନୁମାନଙ୍କୁ । ଏହାପରେ ସେ ନିଜେ ଘୋଡ଼ା ଚଢ଼ି ଅଯୋଧ୍ୟାକୁ ଯିବାକୁ ବାହାରିଲେ । ଏଥିରେ ବଶିଷ୍ଠ ଓ ଭରତ ବାଧାଦେଇ କହିଲେ ଯେ ଅଯୋଧ୍ୟା ବିଧିବଦ୍ଧ ଭାବେ ଯଜ୍ଞ ଦ୍ୱାରା ପ୍ରତିଷ୍ଠିତ ହୋଇ ନାହିଁ । ସେତେବେଳେ ଶ୍ରୀରାମ ସେମାନଙ୍କୁ ଉତ୍ତର ଦେଇ କହିଲେ, ଯେହେତୁ ବିଭୀଷଣ, ସୁଗ୍ରୀବ ଓ ହନୁମାନଙ୍କ ପରି ପରୋପକାରୀ ବ୍ୟକ୍ତି ଯେଉଁମାନେ କି କୌଣସି ବର୍ତ୍ତନ ନ ନେଇ ନିଜ ଜୀବନକୁ ପାଣି ଛଡ଼େଇ ମୋତେ ସାହାଯ୍ୟ କରିଥିଲେ, ସେମାନଙ୍କ ପଦରଜହିଁ ଯଜ୍ଞଠାରୁ ଶ୍ରେଷ୍ଠ ।

ବଳରାମ ହିଂସାର ବିରୋଧି ଥିଲେ । ସେଥିପାଇଁ ସେ କହୁଥିଲେ, ଜୀବ ନାଶ କଲେ ବଡ଼ ଦୋଷ ହୁଏ (ଅଯୋଧ୍ୟା- ୧୦୮୮) । ଏପରିକି ହିଂସା ଭାବ ମନରେ ପୋଷଣ କଲେ ପାପ ହୁଏ (ଅଯୋଧ୍ୟା- ୧୨୫୭) । ଏହା ସତ୍ତ୍ୱେ ହିଂସା କରିବା ହେଉଛି ସଂସାରରେ ବହୁ ଜୀବଙ୍କର ଜୀବନର ଗତି । ଯେପରିକି ଶେଣା ପକ୍ଷୀର ଖାଦ୍ୟ ହେଉଛି କାପତା । ଏହା ବିଧାତାର ନିୟମ । ଶ୍ରୀରାମ ବାଳୀ ବଧ ପରେ ନିଜ କାର୍ଯ୍ୟର ସଫେଇ ଦେବାକୁ ଯାଇ ଏହି କଥାହିଁ କହିଛନ୍ତି । ବନରେ ଜୀବ ଶୀକାର କରିବା ରାଜାଙ୍କର ଧର୍ମ । ବଳରାମଙ୍କ ଶ୍ରୀରାମ ଥିଲେ ସାଧାରଣ କ୍ଷତ୍ରୀୟଙ୍କ ପରି ଜଣେ ମାଂସଭୋଜୀ ରାଜା । କଥାର ପ୍ରବାହରେ ବଳରାମ ଏହାକୁ ବାରମ୍ବାର ଉଲ୍ଲେଖ

କରୁଥିଲେ ହେଁ ଏବଂ କ୍ଷତ୍ରୀୟମାନଙ୍କର ଏହା ଜୀବନର ଗତି ବୋଲି ଜାଣିଥିଲେ ହେଁ, ଭଗବାନ ଶ୍ରୀରାମଙ୍କ ପକ୍ଷରେ ପଶୁବଧ କରିବା ବଳରାମଙ୍କ ମତରେ ଏକ ଅନୁଚିତ କାର୍ଯ୍ୟ ଥିଲା । ସେଥିପାଇଁ ଚିତ୍ରକୂଟ ବାସ ବେଳେ ସେ ଏହି ପ୍ରସଙ୍ଗର ଅବତାରଣା କଲେ । ରାମ ହାତରେ ଧନୁଶର ଧରି ମୃଗ, ସମ୍ବର ପ୍ରଭୃତି ଜୀବବଧ କରୁଥିବା ଦେଖି ଋଷିମାନଙ୍କ ମନରେ ଭୟର ସଞ୍ଚାର ହେଲା । ସେମାନେ ଶ୍ରୀରାମଙ୍କୁ କହିଥିଲେ,

ତପୀ ବୋଇଲେ ଆମ୍ଭେ ତୋତେ ଭଏ କଲୁ
ତେଣୁ ମହାତ୍ମା ଶଙ୍କା ମନ ଧଇଲୁ
ଧନୁ ଶସ୍ତ୍ର ଧରି ବନରେ ବିହରୁ
ମୃଗ ଶୂକର ହରିଣ ବଧ କରୁ
ସଜ୍ଜନଙ୍କର ନୋହଇ ଏ ଗତି
ଦୁଷ୍ଟେ ସେ ବହନ୍ତି ଏସନ ପ୍ରକୃତି । (ଆରଣ୍ୟକ କାଣ୍ଡ)

ଶ୍ରୀରାମ ଋଷିମାନଙ୍କୁ ଖୁସି କରିବା ପାଇଁ ସେତେବେଳେ କହିଥିଲେ,

ଆମ୍ଭେ ତିନିଜଣ ତୁମ୍ଭର ପାଶେ ଥାଇ
କନ୍ଦମୂଳ ଖାଇ ଦୁଃଖେଣ ଦିନ ନେଇ ।

(ଆରଣ୍ୟକ କାଣ୍ଡ)

ସୀତା ମଧ୍ୟ ସେହି ମର୍ମରେ କହିଛନ୍ତି,

କନ୍ଦମୂଳ ଫଳ କରୁଥାଇଂ ଗ୍ରାସ
ପର୍ବତ ନିର୍ଝର ପାଣିକି ଆମ୍ଭର ଆଶ ।

(ଆରଣ୍ୟକ କାଣ୍ଡ)

ରାମ ଓ ସୀତାଙ୍କର ଏପରି ଉକ୍ତି ସତ୍ତ୍ୱେ ସେମାନେ ପଞ୍ଚବଟୀରେ ଥିବାବେଳେ ମୃଗ ମାରି ତା'ର ମାଂସକୁ ରନ୍ଧନ କରି ଭୋଜନ କରୁଥିବାର ଦୃଶ୍ୟ ବର୍ଣ୍ଣିତ ହୁଏ ।

ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ମୃଗ ମାଂସ ରନ୍ଧନ କଲେ ମହାସ୍ୟତୀ
× × ×
ଲକ୍ଷଣ ଥୋକାୟେ ଦୂରେ ଭୁଞ୍ଜି ବସି
ଜନେକର ଝିଅ ମାୟେଂସ ପରଷି ।
× × ×
ଶ୍ରୀରାମଙ୍କ ପତ୍ରେ ସୀତ୍ୟା ଭୁଞ୍ଜି ବସି
କନ୍ଦଫଳ ମାଂସ ଲକ୍ଷଣ ପରଷି ।

(ଆରଣ୍ୟକ କାଣ୍ଡ)

'ଜୀବହତ୍ୟା ମହାପାପ'- ଏହି ନୀତି ସହ ବଳରାମ ଯେପରି ପରିଚିତ ଥିଲେ, ସେହିପରି ସେ କ୍ଷତ୍ରିୟମାନଙ୍କ ଆଚାର ବିଚାରକୁ ମଧ୍ୟ ଭଲ ରୂପେ ଜାଣିଥିଲେ । ତେଣୁ ଶ୍ରୀରାମ ଋଷିମାନଙ୍କ ସମ୍ମୁଖରେ ନିଜକୁ ଫଳମୂଳାହାରୀ ରୂପେ ଉଲ୍ଲେଖ କରିଥିଲେ ହେଁ, ମୃଗ ବଧ କରି ମାଂସ ଭକ୍ଷଣ ମଧ୍ୟ କରୁଥିଲେ । 'ଜଗମୋହନ ରାମାୟଣ'ର ଏପରି ଦୁଇ ପ୍ରକାର ମନ୍ତବ୍ୟରୁ ଏକଥା ଅନୁମାନ କରାଯାଇ ପାରେ ଯେ, ସେତେବେଳେ ସମାଜରେ ମାଂସ ଭକ୍ଷଣ ସଂପର୍କରେ ବହୁ ବାଦାନୁବାଦ ସୃଷ୍ଟି ହେଉଥିଲା । କିଛି ଲୋକ ମାଂସ ଭକ୍ଷଣ ସପକ୍ଷରେ ମତ ଦେଉଥିବା ବେଳେ, କିଛି ଲୋକ ଏହାକୁ ହିଂସା କାର୍ଯ୍ୟ ରୂପେ ଗ୍ରହଣ କରୁଥିଲେ । ସେଥିପାଇଁ କବି ବଳରାମ ଶ୍ରୀରାମଙ୍କ ମୁଖରେ ଏହାର ସମାଧାନ କରି ''କ୍ଷୁଧାବେଳେ ମାଇଲେ ଦୋଷ ନାହିଁ କିଛି'' ବୋଲି ମତ ଦେଲେ । ବାଲ୍ମୀକି ରାମାୟଣରେ ମଧ୍ୟ ଶ୍ରୀରାମ ଜୀବବଧ କରୁଥିଲେ । ମାଂସଭକ୍ଷଣ ସମ୍ପର୍କରେ କୌଣସି ଉଲ୍ଲେଖ ନ ଥିଲେ ବି ଏହାକୁ ଅନୁମାନରୁ ଗ୍ରହଣ କରାଯାଇପାରେ ।

କବି ବଳରାମ ଏହି ସମସ୍ୟାର ସମାଧାନ ପାଇଁ ମାୟାମୃଗ ଉପାଖ୍ୟାନ ପୂର୍ବରୁ ଚାମରୀମୃଗ ଉପାଖ୍ୟାନର ସଂଯୋଜନା କଲେ । ସୀତା ବନ ମଧ୍ୟରେ କୃଷ୍ଣବର୍ଣ୍ଣ ଲାଞ୍ଜ ବିଶିଷ୍ଟ ଏକ ସୁନ୍ଦର ମୃଗ ଦେଖି ତା'ର ଲାଞ୍ଜକୁ ଚଉରୀ କରିବା ପାଇଁ ଆଶା କଲେ ଏବଂ ଶ୍ରୀରାମ ସେହି ମୃଗକୁ ବଧ କରିବା ପାଇଁ ଅନୁରୋଧ କଲେ । କିନ୍ତୁ ଅନୁରୋଧ ରକ୍ଷାକରି ବ୍ୟକ୍ତିର ଆମୋଦ ପାଇଁ ଏକ ଜୀବ ବଧ କରିବା କଥାକୁ ସୀତା ସହ୍ୟ କରିପାରିଲେ ନାହିଁ । ସେଥିପାଇଁ ସେ ଶ୍ରୀରାମଙ୍କୁ ପୁଣି ଅନୁରୋଧ କଲେ,

ସୀତା ବୋଲୁଛନ୍ତି ଶ୍ରୀରାମ ମୁଖ ଚାହିଁ
ଅକାରଣେ ଜୀବ ନ ମାର ଗୋସାଇଁ ।
ଲାଞ୍ଜରେ ସେ କାର୍ଯ୍ୟ ମାଂସରେ କାର୍ଯ୍ୟ ନାହିଁ
ସୀତା ବୋଲ ଶୁଣି ହସିଲେ ରଘୁସାଇଁ ।

(ଆରଣ୍ୟକ କାଣ୍ଡ)

ସୀତାଙ୍କ କଥା ଶୁଣି ଶ୍ରୀରାମ ମୃଗର କେବଳ ଲାଞ୍ଜ କାଟି ଆଣିବା ପାଇଁ ଅନ୍ୟ ଏକ ଶର ସନ୍ଧାନ କଲେ । ସେତେବେଳେ ସେହି ଶରକୁ ଉଦ୍ଦେଶ୍ୟ କରି ସେ କହିଥିଲେ,

ଅକାରଣେ ମାଇଲେ ପାଇବା ନା ଦୋଷ ।

(ଆରଣ୍ୟକ କାଣ୍ଡ)

ପରବର୍ତ୍ତୀ ଶର ପୂର୍ବରୁ ମୃଗକୁ ବଧ କରିବା' ପାଇଁ ପ୍ରେରିତ ହୋଇଥିବା ଶରକୁ ଯାଇ କହିଲା,

ତୁ ହୋ ଜୀବ ବଧ ନ କର ନାରାଚ
ଖୋଷା ଖୋଷିବେ ସୀତ୍ୟା ଚାମରେ ହିଁ କାର୍ଯ୍ୟ ।

(ଆରଣ୍ୟକ କାଣ୍ଡ)

ଅକାରଣେ ଜୀବ ବଧ କଲେ ପାପରେ ଭାଗୀ ହେବା କଥା ଶ୍ରୀରାମ, ସୀତା ଓ ଏପରିକି ନିର୍ଜୀବ ଶର କହୁଥିଲେ ହେଁ ଶ୍ରୀରାମଙ୍କର ସ୍ପଷ୍ଟ ମତ ହେଲା,

ହୋଇ ହୋଇ ବୋଲି ବୋଇଲେ ରଘୁବଳି
କ୍ଷୁଧାବେଳେ ମାଇଲେ ଦୋଷ ନାହିଁ କିଛି ।

(ଆରଣ୍ୟକ କାଣ୍ଡ)

ବ୍ରାହ୍ମଣମାନଙ୍କୁ କବି କେବେ ହେଲେ ଅନାଦର କରୁ ନ ଥିଲେ । ପ୍ରତ୍ୟେକ ଶୁଭ ଅବସରରେ ବ୍ରାହ୍ମଣମାନଙ୍କୁ ପ୍ରଚୁର ଦାନ ଦିଆଯାଇଛି । କାରଣ କବି କହୁଥିଲେ, ବ୍ରାହ୍ମଣମାନଙ୍କୁ ଦାନ ଦେଲେ ଧର୍ମ ହୁଏ । ବ୍ରାହ୍ମଣ ହେଉଛି ଦ୍ୱିତୀୟ ବ୍ରହ୍ମା । କିନ୍ତୁ ବ୍ରାହ୍ମଣ କହିଲେ କେବଳ ପଇତା ପକେଇଥିବା ମୂର୍ଖ ବ୍ରାହ୍ମଣ ନୁହନ୍ତି, ବେଦ ଧର୍ମ ଜାଣିଥିବା ଓ ସତ୍‌କର୍ମରେ ଲିପ୍ତ ଥିବା ବ୍ରାହ୍ମଣ । ଯେତେବେଳେ ବ୍ରାହ୍ମଣ ବେଦ ଅଧ୍ୟୟନ, ପର ଉପକାର ପ୍ରଭୃତି ସତ୍‌କର୍ମ ତ୍ୟାଗ କରି ଲୋଭର ବଶବର୍ତ୍ତୀ ହୁଏ, କାମର ଅଧୀନ ହୁଏ, ସେତେବେଳେ ସେ ଚାଣ୍ଡାଳ ସହିତ ସରିହୁଏ । ଆରଣ୍ୟକ କାଣ୍ଡରେ ଗୟାତୀର୍ଥର ବ୍ରାହ୍ମଣମାନଙ୍କୁ କବି ଯେଉଁ ନିନ୍ଦା କରିଛନ୍ତି, ତାହା ମୂଳରେ କବିଙ୍କ ଜୀବନର ଆଦର୍ଶ ହିଁ ପ୍ରତିଭାତ । ସେଥିପାଇଁ ଲୋଭୀ, ତୀର୍ଥବାସୀ ବ୍ରାହ୍ମଣମାନଙ୍କୁ କବି ଶ୍ରୀରାମଙ୍କ ମୁଖରେ ଅଭିଶାପ ପ୍ରଦାନ କରିଛନ୍ତି,

ବ୍ରାହ୍ମଣଙ୍କୁ ବୋଇଲେରେ ଯେତେ ଅରଜିବ
ଆରଦିନକୁ ଗଣ୍ଡାଏ ମାଣେହେଁ ନ ଥିବ ।
× × ×
ଯଦ୍ୟପି ବୋଲାଇବ ଭିକ୍ଷୁକ ଲକ୍ଷ ଲକ୍ଷ ଧନ
ତଥାପି ବୋଲାଇବ ଭିକ୍ଷୁକ ବିଦ୍ୱଜ୍ଜନ ।
ମୁଠିକର ପାଇଁ ସେ ବୁଲିବ ଦେଇ ଦେଇ
ଅବଣିଜାର ହୋଇଣ ନ ଥିବାକ କେହି ।
ବାଳ-ବୃଦ୍ଧ-ଯୁବା ସବୁ କରିବେ ବାଣିଜ୍ୟ
ଲାଭ ପାଇଲେଣ ତୁମ୍ଭେ ବିକିବ ତନୁଜ ।"

(ଆରଣ୍ୟକ କାଣ୍ଡ)

କବିଙ୍କର ଏହି ଉକ୍ତି କେବଳ ଗୟାର ବ୍ରାହ୍ମଣମାନଙ୍କ ପାଇଁ କୁହାଯାଇ ନ ଥିଲା, ଦେଶର ସବୁ ବ୍ରାହ୍ମଣଙ୍କ ପାଇଁ ଏହା ଥିଲା ବଳରାମଙ୍କ ଉକ୍ତି ।

କବି ଚଣ୍ଡାଳ ଓ ବ୍ରାହ୍ମଣ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖୁ ନ ଥିଲେ । ଉଭୟେ ମନୁଷ୍ୟ । କେବଳ ନୀଚ କର୍ମ କରି ସେଥିରୁ କେତେକ ଚାଣ୍ଡାଳରେ ପରିଣତ ହେଉଥିବା ପରି, ଉଚ୍ଚ କର୍ମ କରି ଆଉ କେତେକ ବ୍ରାହ୍ମଣ ସଙ୍ଗେ ସମାନ ହୁଅନ୍ତି । ଲୋକେ କୁହନ୍ତି,

ଚାଣ୍ଡାଳକୁ ଛୁଇଁଲେ ବ୍ରାହ୍ମଣ ଅପବିତ୍ର ହୁଏ । ବଳରାମ ଯେ ଏଥିରେ ବିଶ୍ୱାସ କରୁ ନ ଥିଲେ ତାହା ତାଙ୍କ ରାମାୟଣରେ କେତେକ ଘଟଣାରୁ ଜଣାଯାଏ । ଗୁହକ ଜାତିରେ ଶବର ହେଲେ ବି ଶ୍ରୀରାମ ତାକୁ ନିଜ ପ୍ରାଣର ଦୋସର ବୋଲି କହିଛନ୍ତି । ଗୁହକ ଘରେ ରହି ଅନ୍ନପାଣି ଗ୍ରହଣ କରିବାରେ ମଧ୍ୟ ତାଙ୍କର ଆପତ୍ତି ନ ଥିଲା । କେବଳ ପିତାମାତାଙ୍କର ସତ୍ୟରକ୍ଷା କରିବା ପାଇଁ ସେ ଗୁହକଠାରୁ ବିଦାୟ ମାଗିଥିଲେ । ଲଙ୍କାରୁ ରାବଣ ବଧ କରି ଅଯୋଧ୍ୟା ଫେରିବାବେଳେ ତାଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା ଗୁହକକୁ ସମ୍ବାଦ ଦେବା । ଅଶ୍ୱମେଧ ଯଜ୍ଞ ସମୟରେ ସେ ଗୁହକ ଓ ତାଙ୍କ ଜାତିଭାଇଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିଥିଲେ ।

ଗୁହକ ନାମେ ଶବର ପାଇଂ ଯେ ଦିବ୍ୟ ଘର
ସବୁ ଘରଠୁଂ ସେ ଘର ଦିଶଇ ସୁନ୍ଦର ।

(ଲଙ୍କାକାଣ୍ଡ)

ଶବରୀର ଉଚ୍ଛିଷ୍ଟ ଗ୍ରହଣ କରିବାରେ କେବଳ ଶ୍ରୀରାମଙ୍କ ମହିମା ପ୍ରକାଶ ପାଇନାହିଁ, ଏ ଗଳ୍ପକୁ 'ଜଗମୋହନ ରାମାୟଣ'ରେ ଯଥୋଚିତ ସ୍ଥାନ ଦେଇ କବି ବଳରାମ ଶବର ଜାତି ପ୍ରତି ନିଜର ଶ୍ରଦ୍ଧା ପ୍ରକାଶ କରିଛନ୍ତି । ଭଗବାନଙ୍କ ନିକଟରେ ଜାତି, ଅଜାତିର ପ୍ରଶ୍ନ ନାହିଁ । 'ବଟ ଅବକାଶ'ରେ ମଧ୍ୟ କୁହାଯାଇଛି,

ଦୂରେ ଥାଇ ଚିନ୍ତା କଲେ ନିକଟେ ହିଁ ଥାନ୍ତି
ବଡ଼କୁଳ ନ ବାଛନ୍ତି ଜାତି ଏ ଅଜାତି ।

ଶୁଦ୍ରକ ମୁନି ତପସ୍ୟା କରିବାରୁ ବ୍ରାହ୍ମଣର ପୁଅ ମରିବା ରାମାୟଣର କଥା । ତପସ୍ୟା କରିବାରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଜାତିର ଅଧିକାର । ଶୂଦ୍ର ତପସ୍ୟା କଲେ ସଂସାରର ଅହିତ ହୁଏ । କବି ବଳରାମ ଏହି ଉପାଖ୍ୟାନକୁ ଯେଉଁଭଳି ଭାବେ ପରିବର୍ତ୍ତନ କରିଛନ୍ତି, ସେଥିରୁ ଶୁଦ୍ର ଜାତି ପ୍ରତି ତାଙ୍କର ଦୃଷ୍ଟିକୋଣ ଅତି ସ୍ପଷ୍ଟ । ତପସ୍ୟା ବଳରେ ଶୂଦ୍ର ବ୍ରହ୍ମ ଜାତିରେ ପରିଣତ ହେବା କଥା ପୁରାଣରୁ ଶୁଣି ଶୂଦ୍ର ତପସ୍ୱୀ ଇନ୍ଦ୍ରିୟ ନିଗ୍ରହ କରି କାୟା ଶୁଖାଇ ଇନ୍ଦ୍ରପଦ ଲାଭ ପାଇଁ ତପସ୍ୟା କରେ । ତାହାର ଏହି ଅନଧିକାର କାର୍ଯ୍ୟ ଯୋଗୁଁ ସେ ଶ୍ରୀରାମଙ୍କ ଦ୍ୱାରା ଦଣ୍ଡିତ ହୁଏ । କିନ୍ତୁ ଫଳ ହେଲା ବିପରୀତ । ଇନ୍ଦ୍ରପଦ ତ ଚିରସ୍ଥାୟୀ ନୁହେଁ, କିଛି ଦିନ ଇନ୍ଦ୍ରପଦ ଭୋଗ କରିବା ପରେ ତପସ୍ୟାର ଫଳ ସରିଯାଇଥାନ୍ତା ଓ ତାକୁ ଇନ୍ଦ୍ରପଦ ତ୍ୟାଗ କରିବାକୁ ହୋଇଥାନ୍ତା । ଅଥଚ ଭଗବାନଙ୍କ ମାନବ-ଅବତାର ଶ୍ରୀରାମଙ୍କ ଦ୍ୱାରା ବଧ ହେବାରୁ ସେ ଅକ୍ରାମର କନ୍ଧ ହେଲା ଓ ଇନ୍ଦ୍ରଠାରୁ ବଡ଼ ପଦ ପାଇଲା । କେବଳ ସେତିକି ନୁହେଁ, ଘଟଣା ଏକ ସ୍ମରଣୀୟ ଦିବସରେ ପରିଣତ ହେଲା । ସେଥିପାଇଁ ଭାଦ୍ରବ ଶୁକ୍ଳପକ୍ଷ ପଞ୍ଚମୀର ନାମ ହେଲା ଋଷି ପଞ୍ଚମୀ । ସେଦିନ ପାଇଁ ଯେଉଁମାନେ ଶୁଦ୍ରମୁନିଙ୍କୁ ସେବା କରିବେ, ସେମାନେ

ସ୍ୱାମୀ ସୌଭାଗୀ ହେବେ । ଦୋଚାରୁଣୀ ହେଲେ ବି ବୈକୁଣ୍ଠ ପାଇବେ । 'ଗୀତା ଅବକାଶ''ରେ ଥିବା କିମ୍ବଦନ୍ତୀ ଅନୁଯାୟୀ କବି ବାଉରୀ ଜାତିକୁ ଗୀତାପାଠ କରିବାର ଅଧିକାର ପ୍ରଦାନ କରିଥିଲେ । ଶୂଦ୍ର ଜାତିର ମହିମା ବୃଦ୍ଧି କରିବା ପାଇଁ କବି ବଳରାମ ରଚନା କଲେ 'ଲକ୍ଷ୍ମୀ ପୁରାଣ' । ଶୂଦ୍ରକୁ ଅନାଦର କରିବା ହେତୁ ଜଗନ୍ନାଥ ଓ ବଳରାମଙ୍କ ପରି ଦେବତା ମଧ୍ୟ ଖାଇବାକୁ ନ ପାଇ ବାରଦ୍ୱାର ଶୁଙ୍ଘିପିଣ୍ଡା ହୋଇଥିଲେ । ସେମାନେ ନିଜର ଅପରାଧ ବୁଝିବା ପରେ ସେମାନଙ୍କ ମହାପ୍ରସାଦ ସେବନରେ ଜାତି, ଅଜାତିର ବିଚାର ରହି ନ ଥିଲା । ଏସବୁ ଉପାଖ୍ୟାନରୁ ବଳରାମ ଯେ ଶୂଦ୍ର ଜାତିକୁ ସମାଜରେ ଉଚ୍ଚ ସ୍ଥାନ ଦେବା ପାଇଁ ସତତ ଚେଷ୍ଟା କରୁଥିଲେ ତାହା ଜାଣିହୁଏ ।

କେବଳ ଶୂଦ୍ର ଜାତି ନୁହନ୍ତି, ସମାଜରେ ଅବହେଳିତ ସ୍ତ୍ରୀ ଜାତି ପ୍ରତି ମଧ୍ୟ କବି ସଂବେଦନଶୀଳ ଥିଲେ । ତାଙ୍କ ମତରେ ସ୍ତ୍ରୀ ଜାତିର ଗୁଣ ଅଛି, ଅବିଗୁଣ ବି ଅଛି । ଗୋଟିଏ ଦୃଷ୍ଟିରୁ ସମାଜରେ ସ୍ତ୍ରୀ ହେଉଛି ବିପଦର ହେତୁ । ଚଉଦ ଭୁବନରେ ସ୍ତ୍ରୀମାନେ ସେମାନଙ୍କ ଅନ୍ୟାୟ ଓ ଅନାଚାର ପାଇଁ ପ୍ରସିଦ୍ଧ । କେବଳ ସ୍ତ୍ରୀ ପାଇଁ ବାଳି, ରାବଣ, ମହିଶାସୁର ପ୍ରଭୃତି ପୃଥିବୀର ବଡ଼ ବଡ଼ ବୀର ନାଶଗଲେ । ଏହି ସ୍ତ୍ରୀ ଲୋଭରେ ପଡ଼ି ଇନ୍ଦ୍ର ସହସ୍ର ଯୋନି ହେଲେ । ସ୍ତ୍ରୀମାନେ ମନ୍ଦ ପ୍ରାଣୀ, ଏକଥା ଜାଣିପାରି ନଳ ବସ୍ତ୍ର କାଟି ସ୍ତ୍ରୀଠାରୁ ନିଜକୁ ଅଲଗା କରି ନେଇଥିଲେ । ସମାଜରେ ଲୋକେ ସ୍ତ୍ରୀମାନଙ୍କୁ ଏହିପରି ନିନ୍ଦା କରୁଥିଲେ ହେଁ, ସ୍ତ୍ରୀ ବିନା ସୃଷ୍ଟି ଶୋଭାପାଏ ନାହିଁ । ସ୍ତ୍ରୀ ହେଉଛି ଧର୍ମ, ସ୍ତ୍ରୀ ହେଉଛି କର୍ମ । ସ୍ତ୍ରୀ ଯେପରି ଯୋଗର ସହାୟକ ସେହିପରି ଭୋଗର ମଧ୍ୟ । ସେମାନେ ହେଉଛନ୍ତି 'ଆଦି ବୀଜ ବ୍ରହ୍ମା' । ସ୍ତ୍ରୀ ବିନା ପୁରୁଷ ଶୋଭାପାଏ ନାହିଁ । ସେମାନେ ସାଧବୀ, କୁଟୁମ୍ବା । ସ୍ତ୍ରୀ ଯୋଗୁଁ ସଂସାର ଆତଜାତ ହୁଏ । ବ୍ରହ୍ମା ସେଥିପାଇଁ ସ୍ତ୍ରୀମାନଙ୍କୁ ଆଗ ସୃଷ୍ଟି କରିଛନ୍ତି । ସ୍ତ୍ରୀମାନଙ୍କ ମହିମା ଜାଣି ବ୍ରହ୍ମା ଗାୟତ୍ରୀଙ୍କୁ, ବିଷ୍ଣୁ ଲକ୍ଷ୍ମୀଙ୍କୁ, ଶିବ ପାର୍ବତୀଙ୍କୁ, ବରୁଣ ଗଙ୍ଗାଙ୍କୁ ହୃଦୟରେ ଧାରଣ କରିଛନ୍ତି । ସ୍ତ୍ରୀମାନେ ସଂସାରରେ ପ୍ରମଦା, ବାମା, ଯୁବତୀ, ବଲ୍ଲଭୀ, କୁଟୁମ୍ବୀ, ଅଙ୍ଗନା, ସଉଭାଗୀ, ଧର୍ମପତ୍ନୀ ଓ ଅବଳା ନାମରେ ପରିଚିତ । ଏହିପରି ବିଭିନ୍ନ ଭାବେ ସ୍ତ୍ରୀ ଜାତିକୁ ପ୍ରଶଂସା କରିବା ମୂଳରେ ସ୍ତ୍ରୀ ଜାତି ପ୍ରତି ବଳରାମଙ୍କ ଶ୍ରଦ୍ଧା ପ୍ରକଟିତ । ସ୍ତ୍ରୀ ସବୁ ଗୁଣ ତଥା ଶୋଭାର ଆଧାର ହୋଇଥିବାରୁ ସ୍ତ୍ରୀ ଲୋଭ ସମ୍ବରଣ କରିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ସେଥିପାଇଁ କବି 'ଜଗମୋହନ ରାମାୟଣ'ର ବହୁ ପ୍ରସଙ୍ଗରେ ସ୍ତ୍ରୀ ଜାତିର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି ।

ସ୍ତ୍ରୀ ସହ ରହି ଓ ସ୍ତ୍ରୀକୁ ଶ୍ରଦ୍ଧା କରି ଘର କରିବା ଗୃହସ୍ଥର ଧର୍ମ ହେଲେ ବି ଅତିଶୟ ଶୃଙ୍ଗାରିକତାକୁ ବଳରାମ ବିଭିନ୍ନ ନଜିର ଦେଇ ବାରଣ କରିଥିଲେ । ଗୃହସ୍ଥଙ୍କ ଅପେକ୍ଷା ଯତି, ସନ୍ନ୍ୟାସୀ ବା ଜଟାଧାରୀମାନଙ୍କ ପାଇଁ ସେ ଆହୁରି କଠୋର ଥିଲେ ।

ନାନା ସୁଖଭୋଗରେ ଦିନ କାଳ ହରିବା ଗୃହସ୍ଥକୁ ଶୋଭାପାଏ । ଦେଶତ୍ୟାଗୀ ଓ ଯତିମାନଙ୍କ ପାଇଁ ଯୁବତୀ ମୋହ ବା କାମରସ ପ୍ରୀତି ଅତ୍ୟନ୍ତ ଦୋଷାବହ । ଶ୍ରୀରାମଙ୍କ ପ୍ରତି ଚକ୍ରବାକର ଉକ୍ତିରେ ଏହି ଭାବନାହିଁ ପ୍ରକାଶିତ :

ବୋଇଲା ତୁ କିମ୍ପା ଦୁଃଖ ଦେଉ ଆସି
ଯତି ହୋଇ ମନ୍ତୁ କାମରସେ ପଶି ।
ଦେଶ ଛାଡ଼ିଣ ତୁ କଲୁ ବନବାସ ।
ଆବର ଯୁବତୀକି କରୁଛୁ ମୁହାଂସ ।
କନ୍ଦମୂଳ ଖାଇ ବକଳ ପରିହରଣ
ଯେତେ ମନ୍ତେ ଥାଇ ତୁ ଚିନ୍ତୁଛୁ ରମଣ ।
ଆମ୍ଭେ ଗୃହବାସୀ ଗିରସ୍ତ ପଣ କରି
ନାନା ସୁଖଭୋଗେ ଦିନ କାଳ ହରି ।
ଆମ୍ଭେ ସେ ରମଣୀ କରୁଛୁ ଶରଧା ।
ତୋ ଅଙ୍ଗ କିମ୍ପାଇ କରଇ କାମ ବାଧା ।
ଯତି ହୋଇଣ ତୁ ଧନୁ ଶସ୍ତ୍ର ଧରି
ଆବର ଯୁବତୀ ରୂପ ଅନୁସରି ।।

(ଆରଣ୍ୟକ କାଣ୍ଡ)

ଯତି ଓ ଗୃହବାସୀଙ୍କ ପାର୍ଥକ୍ୟ ଉପରେ ଏତେ ଗୁରୁତ୍ୱ ଦେବା ଷୋଡ଼ଶ ଶତାବ୍ଦୀର ସାମାଜିକ ପରିବେଶ ଦୃଷ୍ଟିରୁ ହୁଏତ ବିଶେଷ ଆବଶ୍ୟକ ଥିଲା । ସେତେବେଳର ବହୁ ବୈଷ୍ଣବ ପ୍ରାୟ ଗୃହସ୍ଥ ଥିଲେ । ଯେଉଁମାନେ ଯତିବ୍ରତ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ବୈଷ୍ଣବର ସନ୍ନ୍ୟାସ ଧର୍ମକୁ କଠୋରଭାବେ ପାଳନ କରିପାରୁ ନ ଥିଲେ । ସେମାନଙ୍କର ଏହି ଅଧୋଗତି ବଳରାମଙ୍କ ପରି ସଚେତନ ନାଗରିକଙ୍କ ମନରେ କଷ୍ଟ ଦେଉଥିଲା । ସେଥିପାଇଁ ସୁରାଭାଣ୍ଡେଶ୍ୱର ଉପାଖ୍ୟାନର ଭଣ୍ଡଯତି କଥା, ଦଣ୍ଡକାରଣ୍ୟର ଋଷିମାନଙ୍କ ପ୍ରବଳ କାମଭାବନା ଓ ଶ୍ରୀରାମଙ୍କ ବିରହକାଳୀନ ସୀତାନୁଚିନ୍ତାଜନିତ ଦୁଃଖକୁ କାମବାଧା ନାମ ଦେଇ ସେ ସମାଜର ସେହି ଭଣ୍ଡ ତପସ୍ୱୀମାନଙ୍କୁ ତିରସ୍କାର କରିଥିଲେ ।

ସମାଜକୁ ଏପରି ଚେତାବନୀ ଦେଉଥିବା ସତ୍ତ୍ୱେ କବି ନିଜେ ବେଶ୍ୟାସକ୍ତ ଅପବାଦରୁ ମୁକ୍ତ ନ ଥିଲେ । କିନ୍ତୁ ଏ ଅପବାଦ ଯେ କବିଙ୍କୁ ସହ୍ୟ କରିପାରୁ ନ ଥିବା, କୁଚକ୍ରୀ କୁଟିଳ ଲୋକଙ୍କ କୁମନ୍ତ୍ରଣାର ପରିଣାମ, ଏହା କବିଙ୍କ ଗ୍ରନ୍ଥ ପାଠକଲେ ଜଣାଯାଏ । କବି ଦାରା, ସୁତଙ୍କ ସହ ନୀଳାଚଳରେ ବାସକରୁଥିବା 'ଜଗମୋହନ ରାମାୟଣ' ଓ 'ବାର୍ଦ୍ଧ୍ୟତାଭକ୍ତି'ରୁ ଜଣାଯାଏ । ସେ ସବୁକୁ କବି ଭଗବାନଙ୍କ ଅସୀମ ଦୟା ଭାବେ

ସ୍ୱୀକାର କରିଛନ୍ତି । ଏପରିସ୍ଥଳେ ସେମାନଙ୍କୁ ହତାଦର କରି କବି ବେଶ୍ୟାଘରେ ଦିନ କାଟୁଥିବା ଅସମ୍ଭବ ମନେହୁଏ । କବି ଯେ କେବଳ ପରିବାର ସହ ସୁଖରେ ରହୁଥିଲେ, ତାହା ନୁହେଁ, ପରିବାର ପ୍ରତି ତାଙ୍କର ଦାୟିତ୍ୱ ସମ୍ପର୍କରେ ମଧ୍ୟ ସେ ବିଶେଷ ସଚେତନ ଥିଲେ । ସେ କହିଛନ୍ତି,

କୁଟୁମ୍ବ ଲେଛିଣ ଯେ ଆନ ଧର୍ମ କରେ
ଅନ୍ତେ ସେ ନରକ ପାଇ କହି ପୁରାଣରେ ।
ସବୁ ପୁଣ୍ୟମାନଙ୍କର କୁଟୁମ୍ବ ଯେ ମୂଳ
କୁଟୁମ୍ବ ନ ପୋଷିଲେ ଯେ ନାଶ ଯାଇ କୁଳ ।

କବି ଭଲ ଭାବରେ ଜାଣିଥିଲେ ଲୋଭରୁ ପାପ ଓ ପାପରୁ ମୃତ୍ୟୁ । "ଲୋଭରୁ ଯେ ପାପ ହୁଏ ପାପରୁ ନିଧନ" । ସେଥିପାଇଁ ସେ ନିଜ ଜୀବନରୁ ଲୋଭକୁ ସଂପୂର୍ଣ୍ଣ ରୂପେ ପରିହାର କରିଥିଲେ । ଭଗବାନ ଯେତିକି ଦେଇଛନ୍ତି, ସେତିକିରେ ସନ୍ତୁଷ୍ଟ ହେବା ତାଙ୍କ ଜୀବନର ଲକ୍ଷ୍ୟ ଥିଲା । କବି ସେଥିପାଇଁ ବାମନ ଅବତାର ମୁଖରେ କହନ୍ତି, "ଧନ ରତ୍ନରେ ମୋହର ପ୍ରୟୋଜନ ନାହିଁ ।" ଅନ୍ୟ ସ୍ଥଳରେ କବି ନିଜ ସଂପର୍କରେ ସୂଚନା ଦେଲାବେଳେ 'ଅଳପକେ ସନ୍ତୁଷ୍ଟ' ଥିବା କଥା କହିଛନ୍ତି,

ଦାରା ସୁତ ଧନ ଜନ ସୁଖଭୋଗ ଶିରୀ
ଅଳପେ ଆପଣେ ଦେଇଅଛନ୍ତି ତା ହରି ।

ଅଭାବବେଳେ ଲୋକେ ସାଧାରଣତଃ ରାଜଦ୍ୱାରରେ ଯାଚନା କରିବାକୁ ଯାଇଥାନ୍ତି । ଅଥଚ ବଳରାମ ତାଙ୍କ ଜୀବନରେ ଯେତେବେଳେ ଯାହା ଦରକାର ପଡୁଥିଲା, ତାହା ସେ କୌଣସି ରାଜାଙ୍କଠାରୁ ଭିକ୍ଷା ନ କରି ଭଗବାନଙ୍କୁ ନିବେଦନ କରୁଥିଲେ । 'ବଟ ଅବକାଶ'ରେ କବି ଜୀବନର ଏହି ଆଦର୍ଶ ପ୍ରତିଫଳିତ । ରାଜା ଯେତେବେଳେ କବିଙ୍କୁ ଅଭାବ ବେଳେ ରାଜାଙ୍କଠାରୁ ମାଗିବା କଥାର ସୂଚନା ଦେଇଛନ୍ତି, କବି ସେତେବେଳେ ଅତି ଦୃଢ଼କଣ୍ଠରେ ଏହାର ପ୍ରତିବାଦ ଜଣାଇ କହିଛନ୍ତି,

ମୁଁ ବୋଇଲି ମୁଁ ଯେ ମାଗିବି କାହାକୁ
ମାଗିଲେ ମାଗଇ ଏକା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ।

କବି ବଳରାମଙ୍କ ବ୍ୟକ୍ତିତ୍ୱର ଶ୍ରେଷ୍ଠ ଭୂଷଣ ଥିଲା ବିନମ୍ରତା । 'ଜଗମୋହନ ରାମାୟଣ'ର ପ୍ରତ୍ୟେକ ପଂକ୍ତିରେ ତାଙ୍କ କବିପ୍ରତିଭା ପ୍ରକାଶ ପାଇଥିଲେ ହେଁ, ସେ ଏହି ମହାତ୍ ଗ୍ରନ୍ଥର କବି ରୂପେ ଜଗନ୍ନାଥଙ୍କୁ ଗ୍ରହଣ କରିଛନ୍ତି ।

ଜଗମୋହନ ରାମାୟଣ କବି ଜଗନ୍ନାଥ
ତାହାଙ୍କର ଆଜ୍ଞାରେ ନିହିଲା ମୋର ହାଥ ।

କବି ଜଗନ୍ନାଥଙ୍କ ସଖା, ସୋଦର, ସେବକ, ବେଟା ଅନନ୍ୟ ଭକ୍ତ ଭାବରେ ନିଜକୁ

ପ୍ରାୟ ଉଲ୍ଲେଖ କରିଥିଲେ ହେଁ, ପ୍ରଚଳିତ କୌଣସି ଧର୍ମ ପ୍ରତି ତାଙ୍କ ମନରେ ବିଦ୍ୱେଷ ନଥିଲା । 'ଜଗମୋହନ ରାମାୟଣ'ରେ ପ୍ରତ୍ୟେକ କାଣ୍ଡର ବର୍ଣ୍ଣନାରୁ ଏହାହିଁ ପ୍ରମାଣିତ ହୁଏ । ସେ ଜଗନ୍ନାଥଙ୍କ ବ୍ୟତୀତ ଶିବ, ଅଗ୍ନି, ଶକ୍ତିଦେବୀ ପ୍ରଭୃତିଙ୍କୁ ମଧ୍ୟ ବନ୍ଦନା କରଛନ୍ତି । ଶ୍ରୀରାମ ବିଭୀଷଣଙ୍କୁ ଯେଉଁ ସବୁ ବ୍ରତ ପାଳନ କରିବାକୁ ଉପଦେଶ ଦେଇଛନ୍ତି, ସେଥିରୁ ମଧ୍ୟ ହିନ୍ଦୁଧର୍ମର ସବୁ ଦେବତାଙ୍କ ପାଇଁ କବିଙ୍କର ସମ୍ମାନ ଥିବା ସୂଚିତ ହୁଏ । କେବଳ ବୈଦିକ ଧର୍ମ ନୁହେଁ, ବୌଦ୍ଧଧର୍ମ ପ୍ରତି କବିଙ୍କର କୌଣସି ଅନାଦର ନ ଥିଲା । ଷୋଡ଼ଶ ଶତାବ୍ଦୀ ଓଡ଼ିଶାରେ ଏହି ଦୁଇଟି ଧର୍ମ ଲୋକପ୍ରିୟ ଥିବା କବିଙ୍କ ଉଲ୍ଲେଖରୁ ଜଣାଯାଏ । କବି ଲଙ୍କାକାଣ୍ଡରେ କହିଛନ୍ତି,

ବେଦ ବଉଦ ମୋହର ଏହି ଦୁଇ ମତ
ମୁହିଂ ସିନା ଭିଆଇଲି ଦେବତା ଦଇତ ।

ବଳରାମ ଦାସ ସବୁପ୍ରକାର ଧର୍ମ ଓ ସବୁପ୍ରକାର ସାଧନାମାର୍ଗ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ ହେଁ ଗର୍ବ, ଅଭିମାନ ଓ ବାହ୍ୟାଚାର ପ୍ରତି ତାଙ୍କର ଅଶେଷ ଘୃଣା ଥିଲା । ସାଧକ ସିଦ୍ଧି ହାସଲ କରି ଯେତେ ଅଲୌକିକ ପ୍ରତିଭାର ଅଧିକାରୀ ହେଲେ ବି, ତା'ର ସମସ୍ତ ସାଧନା ଜନତାଙ୍କ ମଙ୍ଗଳ ପାଇଁ ଅଭିପ୍ରେତ । ଲୋକଙ୍କୁ କେବଳ ଉପଦେଶ ଦେଇ ନୁହେଁ, ନିଜ ଜୀବନରେ ସେ ସବୁକୁ ପ୍ରଦର୍ଶନ କରି ସେ ହୁଏ ଆଦର୍ଶ ମାନବ । ଏହାର ବିଶିଷ୍ଟ ଉଦାହରଣ ହେଉଛି; ରାବଣ ବଧ ପରେ ଅଶୋକବନରୁ ସୀତାଙ୍କ ଆଗମନ । ସୀତା ଆସୁଥିବା ଶୁଣି ବାନର, ଋକ୍ଷ, ରାକ୍ଷସ ଜାତିର ଲୋକେ ତାଙ୍କୁ ଦେଖିବା ପାଇଁ ବ୍ୟଗ୍ର ହୋଇପଡ଼ିଛନ୍ତି । ଯାହାପାଇଁ ଏତେ ଦିନର ଭୀଷଣ ଯୁଦ୍ଧ, ଏତେ ଲୋକ କ୍ଷୟ, ଏତେ କଷ୍ଟ, ଏତେ ଦୁର୍ଦ୍ଦଶା, ସେ ସୀତାଙ୍କ ଦର୍ଶନ ପାଇଁ ଲାଳାୟିତ ହେବା ସମସ୍ତଙ୍କ ପକ୍ଷରେ ସ୍ୱାଭାବିକ ଥିଲା । ଉପସ୍ଥିତ ଦର୍ଶକମାନେ ପରସ୍ପରକୁ ଠେଲି ଭିଡ଼ ମଧ୍ୟରୁ ସୀତାଙ୍କୁ ଦେଖିବା ପାଇଁ ବ୍ୟଗ୍ର ଥିଲେ । ସବୁପ୍ରକାର ସତର୍କତା ସତ୍ତ୍ୱେ ଲୋକଙ୍କୁ ସମ୍ଭାଳିବା ସହଜ ହେଲା ନାହିଁ । ଭିଡ଼ ମଧ୍ୟରେ ଜାନକୀଙ୍କ ଡାଣ୍ଡୋଳା ମଧ୍ୟ ଧୀରେ ଆସୁଥିଲା । ଶ୍ରୀରାମ ଉପସ୍ଥିତ ଜନତାଙ୍କ ହୃଦୟର ଭାବ ବୁଝି ସୀତାଙ୍କୁ ପାଦରେ ଆସିବା ପାଇଁ ଆଦେଶ ଦେଲେ । ଏହି କଥା 'ବାଲ୍ମୀକି ରାମାୟଣ'ରେ ଥିଲେ ବି ବଳରାମ ଏହାକୁ ଅତି ଜୀବନ୍ତ ଭାବେ ବର୍ଣ୍ଣନା କରିଛନ୍ତି । ରାଜା ହେଉଛନ୍ତି ମୁଖ୍ୟତଃ ପ୍ରଜାପାଳକ । ପ୍ରଜାଙ୍କ ଅର୍ଜିତ ଧନରେ ସେ ରାଜକୀୟ ସୁଖ ଭୋଗ କରୁଥିଲେହେଁ, ସାଧାରଣ ଜନତାଙ୍କ ଠାରୁ ସେ ଆଦୌ ଅଲଗା ନୁହନ୍ତି । ଏହାହିଁ ଥିଲା ଜଗନ୍ନାଥ ଧର୍ମର ଆଦର୍ଶ । ଜଗନ୍ନାଥ ସେଥିପାଇଁ ମନ୍ଦିର ଛାଡ଼ି ବର୍ଷକେ ଥରେ ବାହାରକୁ ଆସିଥାନ୍ତି । ଉତ୍କଳର ଗଜପତି ମଧ୍ୟ ସେହି ଅବସରରେ ନିଜର ରାଜକୀୟ ପଦମର୍ଯ୍ୟାଦାକୁ ଭୁଲି ଚାଣ୍ଡାଳର କାର୍ଯ୍ୟ କରି ନିଜକୁ ଜନତା ସହିତ ମିଶିବାର ସୁଯୋଗ ଦେଇଥାନ୍ତି । ବଳରାମ

ଜଗନ୍ନାଥ ଧର୍ମର ଏହି ଆଦର୍ଶ ଓ ପରମ୍ପରାକୁ ପ୍ରଦର୍ଶନ କରିଛନ୍ତି, ସୀତାଙ୍କ ଆଗମନକାଳୀନ ଦୃଶ୍ୟରେ ଓ ଶ୍ରୀରାମଙ୍କ ବାଣୀରେ ।

ବଳରାମ ତାଙ୍କ ଜୀବନରେ ଏହିସବୁ ଆଦର୍ଶକୁ ପାଳନ କରି ଏକ ମହନୀୟ ଓ ଆଦର୍ଶ ବ୍ୟକ୍ତିତ୍ୱରେ ପରିଣତ ହୋଇଛନ୍ତି । ସତ୍ୟ, ଅହିଂସା, ପରୋପକାର, ବିନୟ ପ୍ରଭୃତି ସଦ୍‌ଗୁଣକୁ ଜୀବନର ଭୂଷଣ କରି ସେ ହୋଇଛନ୍ତି ଓଡ଼ିଶାର ଶ୍ରେଷ୍ଠ ମହାପୁରୁଷ । କେବଳ ଆତ୍ମା ପରଚେ କରି ସେ ମହାତ୍ମା ନୁହନ୍ତି । ସେ ଥିଲେ ସାକ୍ଷାତ ଧର୍ମଦେହ । ଜୀବନରେ ଧର୍ମପଥ ଅନୁସରଣ କରି ସେ ସମାଜରେ ନିଜର ଆଦର୍ଶ ବ୍ୟକ୍ତିତ୍ୱକୁ ପ୍ରତିଷ୍ଠିତ କରିଥିଲେ । ମଧ୍ୟଯୁଗୀୟ ଓଡ଼ିଶା କାହିଁକି, ସମସ୍ତ ଭାରତବର୍ଷର ସନ୍ଥସଂପ୍ରଦାୟ ଏହି ଆଦର୍ଶର ପଥିକ ଥିଲେ । ସେମାନେ କେବଳ ବଡ଼ ବଡ଼ କଥା କହୁ ନ ଥିଲେ, ସେ ସବୁ କାର୍ଯ୍ୟରେ ମଧ ପରିଣତ କରି ଲୋକଙ୍କୁ ଦେଖାଉଥିଲେ । ଏହାହିଁ ଥିଲା ସେମାନଙ୍କ ଜୀବନର ଆଦର୍ଶ । ବଳରାମ କୌଣସି ବ୍ୟକ୍ତି, ପରିବାର ବା କୌଣସି ନିର୍ଦ୍ଦିଷ୍ଟ ସମାଜର ନ ଥିଲେ । ସମସ୍ତ ଜଗତ ମଙ୍ଗଳ କରିବା ଥିଲା ତାଙ୍କ ଜୀବନର ମହାନ ବ୍ରତ । ସେଥିପାଇଁ ସେ ତାଙ୍କ ରାମାୟଣର ନାମ ଦେଲେ 'ଜଗମୋହନ ରାମାୟଣ' । ଜଗତର ମଙ୍ଗଳ ସମ୍ପାଦନା କରିବା ପାଇଁ ଏହା ଉତ୍ସର୍ଗୀକୃତ ।

ବଳରାମଙ୍କ ବ୍ୟକ୍ତିତ୍ୱକୁ କଳନା କରିବାର ଅନ୍ୟ ଏକ ଉପାୟ ହେଉଛି ସମାଜ ପ୍ରତି ତାଙ୍କର ମନୋଭାବ । ସମାଜ ସହ ତାଙ୍କର ମନ ଯେଉଁଠି ମିଶିନାହିଁ, ସମାଜରେ ସେ ଯେଉଁଠି ଦୋଷ, ଦୁର୍ବଳତା ଦେଖିଛନ୍ତି, ସେତେବେଳେ ବଳରାମ ସେ ସବୁର ନିରାକରଣ ପାଇଁ ଜଣେ ବିପ୍ଳବୀ ପରି ଚିତ୍କାର କରିଛନ୍ତି । ସେଥିରୁ ଗୋଟିଏ ହେଲେ ଶାସ୍ତ୍ରବିଶାରଦ ପଣ୍ଡିତଗୋଷ୍ଠୀ । ସେମାନେ ଧର୍ମର ପ୍ରକୃତ ସ୍ୱରୂପ ନ ଜାଣି, କେବଳ ସାକ୍ଷୀ, ଶବଦ, ଦୋହା, ଶ୍ଳୋକ, ସ୍ମୃତି, ଗୀତ, କବିତା ଶିଖି ଏବଂ ଆବଶ୍ୟକ ବେଳେ ସେଥିରୁ ପଦେଅଧେ ଗାଇ, ଲୋକଙ୍କ ସମ୍ମୁଖରେ ନିଜର ପାଣ୍ଡିତ୍ୟର ପ୍ରଦର୍ଶନ କରୁଥିଲେ । ବିନମ୍ରତା ନୁହେଁ, ଅହମିକା ହିଁ ଥିଲା ସେମାନଙ୍କ ଜୀବନର ଭୂଷଣ । ଏହିପରି ଆଉ ଗୋଟିଏ ବ୍ୟାଧିଗ୍ରସ୍ତ ଗୋଷ୍ଠୀ ହେଲା, ବିଭିନ୍ନ ଭେକ ଧାରଣ କରିଥିବା ଶ୍ରେଣୀ । ସେମାନେ ହେଲେ ମାଳା ତିଳକ ଧାରଣ କରିଥିବା ବୈଷ୍ଣବ, ବିଭୂତି-ଭୂଷଣ ଭୂଷିତଯୋଗୀ, ସାଧନାର ଅହମିକାରେ ନିମଜ୍ଜିତ ଥିବା ସାଧକ ଆଦି ।

ଏମାନଙ୍କର ବାହ୍ୟାଚାର, ଭଣ୍ଡତା ଓ ଅହମିକା ଯେ ଭକ୍ତ ବଳରାମଙ୍କୁ ବିବ୍ରତ କରିଥିଲା ତାହା ନୁହେଁ, ସେମାନେ ହିଁ ଥିଲେ ସେ ସମୟର ପ୍ରତିଷ୍ଠିତ ବ୍ୟକ୍ତି । ସେମାନେ ସେମାନଙ୍କର ତଥାକଥିତ ପାଣ୍ଡିତ୍ୟ, ସାଧନା ଓ ଭେକ ବଳରେ ସାଧାରଣ ଜନତାକୁ ବିଭିନ୍ନ ଭାବେ ନିର୍ଯ୍ୟାତିତ କରୁଥିଲେ । ଦୋଷ ନ ଥାଇ ଦଣ୍ଡର ବ୍ୟବସ୍ଥା କରୁଥିଲେ । ସେମାନଙ୍କ ଅତ୍ୟାଚାର ଫଳରେ ସମାଜର ବହୁ ବ୍ୟକ୍ତି ସର୍ବସ୍ୱାନ୍ତ ହୋଇଯାଉ ଥିଲେ ।

ରାଜାମାନେ ମଧ୍ୟ ଥିଲେ ସେମାନଙ୍କର କ୍ରୀଡ଼ାପୁତ୍ତଳିକା । ସେମାନଙ୍କ ନିର୍ଦ୍ଦେଶକୁ ରାଜା ଅନେକ ସମୟରେ ମାନିବା ପାଇଁ ବାଧ୍ୟ ଥିଲେ । ଏହି ଦଳିତ, ନିଷ୍ପେଷିତ ଜନତାଙ୍କୁ ବିପଦରୁ ଉଦ୍ଧାର କରି ସେମାନଙ୍କୁ ପ୍ରକୃତ ସାଧକଙ୍କ ସହ ପରିଚିତ କରାଇବାକୁ ବଳରାମ ନିଜ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଫଳରେ ପୁରୀର ପଣ୍ଡିତ ଓ ପଣ୍ଡାମାନେ ସମବେତ ହୋଇ ବଳରାମଙ୍କୁ ଆକ୍ରମଣ କରିଥିଲେ । ବଳରାମ ନିଜ ସାଧନା ବଳରେ, ଜଗନ୍ନାଥଙ୍କ ଅଶେଷ କୃପାରୁ ଓ ନିଜ ପାଣ୍ଡିତ୍ୟ ଦ୍ୱାରା ଏହି ସମାଜପତିମାନଙ୍କ ଆକ୍ରମଣକୁ ପ୍ରତିହତ କଲେ । ସେମାନଙ୍କ ଦୋଷ ଦୁର୍ବଳତା ପ୍ରଦର୍ଶନ କରିବା ପାଇଁ ସେ ଲେଖିଲେ ବିଭାଣ୍ଡକ ଓ ଉର୍ବଶୀ ଉପାଖ୍ୟାନ, ସୁରା ଭାଣ୍ଡେଶ୍ୱର ଓ ସତୀ ଅନସୂୟା କଥା । ଏସବୁରେ ସେ ଦେଖାଇଲେ ଭଣ୍ଡ ତପସ୍ୱୀ ଓ କାମାତୁର ବ୍ରାହ୍ମଣ ଚରିତ୍ରର ଅସଲ ରୂପ । ଏଥିପାଇଁ କବିଙ୍କୁ ଜୀବନରେ ବହୁ କଷ୍ଟ ବରଣ କରିବାକୁ ହୋଇଥିଲା । ଏମାନଙ୍କ ଚକ୍ରାନ୍ତରେ ସେ ରାଜକର୍ମଚାରୀମାନଙ୍କ ଦ୍ୱାରା ବାରମ୍ବାର ବନ୍ଧାହୋଇ ରାଜଦରବାରରେ ଉପସ୍ଥିତ ହେଉଥିଲେ । ବଳରାମଙ୍କ ପରି ଜଣାଶୁଣା ଭକ୍ତ ଯେତେବେଳେ ଏପରି ଭାବେ ଦଣ୍ଡିତ ହୋଇପାରୁଥିଲେ, ସେତେବେଳେ ଅନ୍ୟ ସାଧାରଣ ସାଧକଙ୍କ ଦୁର୍ଦ୍ଦଶା ସହଜରେ ଅନୁମାନ କରାଯାଇପାରେ ।

ବଳରାମଙ୍କ ସଂଘର୍ଷମୟ ଜୀବନର ପ୍ରକୃଷ୍ଟ ଉଦାହରଣ ରୂପେ 'ଜଗମୋହନ ରାମାୟଣ'ର ବିଶ୍ୱାମିତ୍ର ଉପାଖ୍ୟାନକୁ ଗ୍ରହଣ କରାଯାଇପାରେ । ଏହାର ମୂଳକଥା ବାଲ୍ମିକୀ ରାମାୟଣରୁ ଗୃହୀତ ହୋଇଥିଲେ ହେଁ, କବି ଏଥିରେ ମହାଭାରତ, ହରିବଂଶ ଓ ବିଷ୍ଣୁପୁରାଣରୁ କେତେକ କଥାଂଶ ଆଣି ଏହାକୁ ଆହୁରି ପଲ୍ଲବିତ କରିଛନ୍ତି । ଷୋଡ଼ଶ ଶତାବ୍ଦୀରେ ଯେପରି ଶୁଦ୍ର ଓ ନାରୀମାନେ ସାଧନା କରିବାର ଅଧିକାର ପାଇ ନ ଥିଲେ, ସେହିପରି ଅତୀତରେ କ୍ଷତ୍ରିୟମାନେ ବ୍ରହ୍ମର୍ଷିପଦରୁ ବଞ୍ଚିତ ହେଉଥିଲେ । ସେଥିପାଇଁ ବିଶ୍ୱାମିତ୍ର ବ୍ରହ୍ମର୍ଷି ବଶିଷ୍ଠଙ୍କ ବିରୁଦ୍ଧରେ ଅବିରତ ସଂଗ୍ରାମ କରି, ଜୀବନରେ ବହୁ କଷ୍ଟ ଭୋଗ କରି, ନିଜ ପରିବାରକୁ ଅଶେଷ କଷ୍ଟ ଦେଇ, ଶେଷରେ ବ୍ରହ୍ମର୍ଷିପଦ ଲାଭ କଲେ । ବଳରାମ ମଧ୍ୟ ସେହିପରି ବ୍ରାହ୍ମଣ ଓ ତଥାକଥିତ ସାଧକମାନଙ୍କ ଚକ୍ରାନ୍ତ ଓ ବ୍ୟୂହ ମଧ୍ୟରୁ ନିଜକୁ ମୁକ୍ତ କରି ଶୁଦ୍ର ଓ ସ୍ତ୍ରୀ ମାନଙ୍କୁ ସେମାନଙ୍କ ମାନବ ଅଧିକାର ଦେବା ସଙ୍ଗେ ସଙ୍ଗେ ନିଜକୁ ମହାପୁରୁଷ ଭାବେ ପ୍ରତଷ୍ଠିତ କରିପାରିଥିଲେ । ଏହି ଉପାଖ୍ୟାନ ମାଧ୍ୟମରେ ସେ ନିଜ ସମାଜକୁ କହିଥିଲେ, ମନୁଷ୍ୟର ମହାନତା ଏହାର ଜାତି, କୁଳ ଓ ବଂଶମର୍ଯ୍ୟାଦା ଉପରେ ନିର୍ଭର କରେ ନାହିଁ, ସାଧନା ହେଉଛି ଏହାର ପ୍ରକୃତ ମାନଦଣ୍ଡ । ସାଧନା ଦ୍ୱାରା ମନୁଷ୍ୟ ବଡ଼ ହୁଏ । ଅନବରତ କର୍ମ ଓ ଅଭ୍ୟାସ ବଳରେ ମନୁଷ୍ୟ କାମ, କ୍ରୋଧ, ଲୋଭ ପ୍ରଭୃତି ମନୁଷ୍ୟ ଜୀବନର ଷଡ଼ରିପୁକୁ ଦମନ କରିପାରିଲେ ହୁଏ ପ୍ରକୃତ ସାଧକ । ବଳରାମ କେବଳ ନିଜ ସମୟର ଲୋକଙ୍କ ପାଇଁ

ଚିନ୍ତିତ ନ ଥିଲେ, ସେ ନିଜର ଦିବ୍ୟଦୃଷ୍ଟି ବଳରେ ଦେଶର ଅନ୍ଧକାରାଚ୍ଛନ୍ନ ଭବିଷ୍ୟତକୁ ଦେଖିଥିଲେ ।

ବ୍ରାହ୍ମଣ, ନୃପତି ଓ ବହୁକୁଟୁମ୍ବୀ ଲୋକମାନେ କଳିଯୁଗରେ ଯେ ନିନ୍ଦିତ ହେବେ, ଏହା ଥିଲା କବିଙ୍କର ଭବିଷ୍ୟବାଣୀ । ଏମାନେ କଳିଯୁଗରେ ନିଜର ଧର୍ମ, କର୍ମ ଛାଡ଼ି ପତିତ ହେବେ, ଏହା କହିବା ପାଇଁ ସେ ବିଭୀଷଣଙ୍କୁ ବାଛିଥିଲେ । ବିଭୀଷଣ ଶ୍ରୀରାମଙ୍କ ପାଦତଳେ ଶରଣ ପଡ଼ିବାବେଳେ କଳିଯୁଗର ଏହି ତିନୋଟି ଅଭୂଷଣ ଉପରେ ଗୁରୁତ୍ୱ ଦେଇଛନ୍ତି । ବିଭୀଷଣଙ୍କ ମନ ପରୀକ୍ଷା ପାଇଁ ଲକ୍ଷ୍ମଣଙ୍କୁ ସାକ୍ଷୀ ରୂପେ ସମୁଦ୍ର କୂଳକୁ ପଠାଇ ଦିଆଗଲା । ବିଭୀଷଣ ନିଜ ହୃଦୟର ସ୍ୱଚ୍ଛତା ପ୍ରତିପାଦନ କରିବାପାଇଁ ସମୁଦ୍ରରେ ତିନୋଟି ବୁଡ଼ ପକାଇଲେ । ପ୍ରଥମ ଥର ସେ କହିଲେ, ''ମୁଁ ଯଦି ଶ୍ରୀରାମଙ୍କ ପ୍ରତି ହୃଦୟରେ ଦ୍ରୋହ ରଖିଥିବି, ତା'ହେଲେ ପରଜନ୍ମରେ ମୁଁ ବ୍ରାହ୍ମଣ ରୂପେ ଜନ୍ମଗ୍ରହଣ କରିବି ।'' ଦ୍ୱିତୀୟ ଥର ବୁଡ଼ ପକାଇ ସେ କହିଲେ, ''ମୋ ହୃଦୟରେ ଯଦି ଶ୍ରୀରାମଙ୍କ ପ୍ରତି କୌଣସି କପଟ ଥାଏ, ତା'ହେଲେ ପରଜନ୍ମରେ ମୁଁ ରାଜକୁଳରେ ଜନ୍ମ ନେବି ।'' ତୃତୀୟ ସ୍ନାନ ପରେ ସେ କହିଲେ, ''ଯଦି ରାମଙ୍କ ପାଇଁ ମୋ ହୃଦୟରେ କଳୁଷତା ଥାଏ, ତା'ହେଲେ ମୁଁ ହେବି ବହୁକୁଟୁମ୍ବୀ ।'' ଲକ୍ଷ୍ମଣ ତିନୋଟି ଯାକ ଶପଥ ଶୁଣି କିଛି ବୁଝିପାରିଲେ ନାହିଁ । ସେ ଆସି ଶ୍ରୀରାମଙ୍କ ସମ୍ମୁଖରେ ସବୁ କଥା ପ୍ରକାଶ କଲେ । ସମସ୍ତଙ୍କୁ ବିସ୍ମିତ କରି ଶ୍ରୀରାମ କହିଲେ, ''ବିଭୀଷଣର ଆତ୍ମା ପ୍ରକୃତରେ ନିର୍ମଳ । ସେ ଶରଣ ପାଇବାର ଯୋଗ୍ୟ । କାରଣ କଳି ଯୁଗରେ ବ୍ରାହ୍ମଣ, ରାଜା ଓ ବହୁକୁଟୁମ୍ବୀ ଲୋକେ ବହୁଭାବେ ନିନ୍ଦିତ ହେବେ । ପ୍ରକୃତ ପାପୀମାନେ ହିଁ ଏହି ଜନ୍ମ ପାଇ ଅଶେଷ କଷ୍ଟ ଭୋଗ କରିବେ ।'' ଏ ଯୁଗକୁ ଚାହିଁଲେ, ବଳରାମଙ୍କ ଭବିଷ୍ୟବାଣୀ ଯେ କେତେଦୂର ସତ୍ୟ ଥିଲା, ତାହା ଜାଣି ହୁଏ ।



# ବଳରାମ ଦାସଙ୍କ କବିତ୍ୱ

କଥା କହିବା ବଳରାମଙ୍କ ମୁଖ୍ୟ ଲକ୍ଷ୍ୟ ଥିଲେ ବି କଥା ମଝିରେ ବୋଧହୁଏ କଥାକୁ ସୁନ୍ଦର କରିବାପାଇଁ ସେ ସ୍ଥାନ ଦେଖି ବିଭିନ୍ନ ପ୍ରକାର ବର୍ଣ୍ଣନାର ସଂଯୋଜନା କରୁଥିଲେ । ରାଜକୀୟ ବିଭବ-ବର୍ଣ୍ଣନା ସେଥିମଧ୍ୟରୁ ଅନ୍ୟତମ । ବଳରାମଙ୍କ ପିତା ମନ୍ତ୍ରୀ ଥିଲେ । ଅଥଚ ରାଜଦରବାରରେ ବଳରାମଙ୍କ କାର୍ଯ୍ୟ ସମ୍ବନ୍ଧରେ କୌଣସି ସୂଚନା ମିଳେ ନାହିଁ । ତେବେ ସେ ରାଜଦରବାର ସହ ନିବିଡ଼ ଭାବରେ ଜଡ଼ିତ ଥିଲେ ଓ ରାଜକୀୟ ପରିବେଶରେ ପାଳିତ ହୋଇଥିଲେ, ତାହା 'ଜଗମୋହନ ରାମାୟଣ'ର ବିଭିନ୍ନ ବର୍ଣ୍ଣନା ପାଠ କଲେ ଅନୁମାନ କରିହୁଏ ।

ରାମାୟଣର ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ ଅଯୋଧ୍ୟା,ଲଙ୍କା ଓ କିଷ୍କିନ୍ଧ୍ୟାନଗରୀ ତଥା ରାମ, ରାବଣ, ବାଳୀ ଓ ସୁଗ୍ରୀବଙ୍କ ପରି ରାଜାଙ୍କ ରାଜକୀୟ ବିଭବ ବର୍ଣ୍ଣନା କରିବା ଆବଶ୍ୟକ ଥିଲା । ଏସବୁ ବର୍ଣ୍ଣନା କଲାବେଳେ ସେ ବିଶେଷ ଭାବେ ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲେ । ସେଥିପାଇଁ ସବୁ ନଗରୀର ଗଠନଶୈଳୀ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନାରେ ସେ ଗୋଟିଏ ପଦ୍ଧତି ଗ୍ରହଣ କରଛନ୍ତି । ସବୁ ନଗରୀ ମେଢ଼, ମଣ୍ଡପ, ଅଟ୍ଟାଳି, ଜଗତୀ, କୂପ, ବାମ୍ଫି, ପୋଖରୀ ଦ୍ୱାରା ସୁଶୋଭିତ । ସବୁଠାରେ ରାଜା,ମନ୍ତ୍ରୀ ଓ ସମନ୍ତଙ୍କ ପାଇଁ ଅଲଗା ଅଲଗା ଉଆସ ବା ଘର । ଅଷ୍ଟାଦଶ ଜାତିର ଲୋକଙ୍କ ପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ବ୍ୟବସ୍ଥା । ନଗର ସବୁ ଧନଧାନ୍ୟରେ ପୂର୍ଣ୍ଣ । ସବୁ ଘର ଉପରେ କଳସ ଓ ଚିରାଳ । ସତେ ଅବା ସବୁ ଘରେ ଲକ୍ଷ୍ମୀ ବିରାଜିତ । ଲୋକେ ମଧ୍ୟ ସ୍ୱର୍ଗର ନରନାରୀ ପରି ସୁନ୍ଦର । ନଗର ସବୁର ସୌନ୍ଦର୍ଯ୍ୟ ପରିକଳ୍ପନା କଲାବେଳେ ତାଙ୍କୁ କେବଳ ସୁନା, ରୂପା, ହୀରା, ନୀଳା, ମୋତି ଓ ମାଣିକ୍ୟ ହିଁ ଦେଖାଯାଇଥିଲା । ଅଯୋଧ୍ୟା ନଗରୀର ବର୍ଣ୍ଣନା କରି କବି ଲେଖିଛନ୍ତି-

ରାଜାର ମନ୍ଦିର ଦିବ୍ୟ ଚାରୁକାନ୍ତି
ମେଢ଼, ମଣ୍ଡପ ଅଟ୍ଟାଳି ଜଗତୀ ।
ଅଗରୁ ଚନ୍ଦନ ଖମ୍ବ ରୁଅ ସେଣି
ଉପରେ ତେଜପତ୍ର ଛାଇଲା ଛାୟେଣୀ ।
ମୁକୁତାର ଝରା ନୀଳରତ୍ନ ଜଡ଼ି
ସୁବର୍ଣ୍ଣର ପ୍ରତିମା ପିତୁଳି କମଗଢ଼ି ।
ମର୍କତର କଳସ ନେତର ଚିରାଳ
ଚନ୍ଦ୍ରାତପ ତେଜ ଆଦିତ୍ୟ ପ୍ରବଳ ।" (୧୯୩ - ୧୯୬)

ଜରଠା ବେଶ୍ୟାର 'ନାଟ୍ୟାଶ୍ରମ'ରେ ମଧ୍ୟ ସେହି ରାଜକୀୟ ଥାଟ । ଅଗୁରୁ, ଚନ୍ଦନ, କର୍ପୁର, କସ୍ତୁରୀ ଓ ସୁଗନ୍ଧିତ ପୁଷ୍ପର ସୁବାସରେ ଏହା ସୁରଭିତ । ମୁକ୍ତା, ମଣି ଓ ସ୍ୱର୍ଣ୍ଣନିର୍ମିତ ଦ୍ରବ୍ୟ ସବୁରେ ଏହା ସୁସଜ୍ଜିତ । ଆଲଟ, ଚାମର ମୁକ୍ତା ନିର୍ମିତ ଦର୍ପଣ, ସୁବର୍ଣ୍ଣ ନିର୍ମିତ ଗଡୁ, ଖୋରା ଓ ଖୋରି ପ୍ରଭୃତି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥରେ ମଧ୍ୟ ସେହି ଆଭିଜାତ୍ୟ ଓ ଆଡ଼ମ୍ବର ।

ରାଜଦରବାର ସହ ବଳରାମଙ୍କ ନିବିଡ଼ ପରିଚୟ ତାଙ୍କ ପ୍ରଦତ୍ତ ନିଯୋଗକାରୀଙ୍କ ନାମାବଳୀରୁ ଜଣାଯାଏ । ସେତେବେଳେ ରାଜଦରବାର କହିଲେ ରାଉତ ଓ ରଣରାଉତ, ମାହନ୍ତ, ଯୋଦ୍ଧା, ପଯେକାର ରଥୀ, ମହାରଥୀ, ପାଇକ, ସଇନି, ସେନାପତି, ଦ୍ୱାରୀ, ପାହାରୀ, ଡଗରା, ଦ୍ୱାରପାଳ, ଦୋସାଧୁ, ଚମକିଆ, ମୁକୁଟବନ୍ଧା, ଯୋଦ୍ଧା, ଭୋଡ଼ଙ୍ଗିଆ ପାଇକ, ବେହେରା, ବାରିକ, ନଟ ଭାଟ, କଏବାର, ଅଗଛାମୁଆ, ବାରତିଆ, ଦାଣ୍ଡୁଆଚାର ସାରଥି, ସେବାୟତ, ବିନୋଦିଆ, ଗଣିକା, ବିଳାସୁଣୀ, ଲେଙ୍କା, ଲମ୍ବହତା, ଖୁଣ୍ଟିଆ, ପଣ୍ଡା, ପଢ଼ିହାରୀ, ଭଣ୍ଡାର ଅଧିକାରୀ ଓ ଅନ୍ୟାନ୍ୟ ବିଶ୍ୱାସୀ ଲୋକଙ୍କୁ ବୁଝାଉଥିଲା । ରାଜା ଏହିମାନଙ୍କୁ ଧରି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ରାଜକର୍ମଚାରୀଙ୍କ ପରି ରାଜାଙ୍କ ସେବାରେ ଥିବା ବିଭିନ୍ନ ରଙ୍ଗର ଘୋଡ଼ା, ବିଭିନ୍ନ ପ୍ରକାରର ବାଦ୍ୟ ଓ ବିଭିନ୍ନ ପ୍ରକାର ଅସ୍ତ୍ର, ଶସ୍ତ୍ର, ରାଜାଙ୍କ ଉଆସରେ ଥିବା ବିଭିନ୍ନ ପ୍ରକାର ନବର (ଆସ୍ଥାନ, ନବର, ନୃତ୍ୟରଙ୍ଗ ସ୍ଥାନ, ଦେବାର୍ଚ୍ଚନା ଘର, ଦୋହରା ଘର, ରାଣୀହଂସପୁର, ତୋଟାପୁର, ଉଦ୍ୟାନ, ଜଗତୀ, ହାତୀ ଘୋଡ଼ା ଶାଳ, ଭଣ୍ଡାର ଘର,) ବିଭିନ୍ନ ପ୍ରକାର ବାହାନ, (ଯାନ, ସୁଖାସନ, ଖଟଦୋଳ, ଚଉଦୋଳ, ବାଙ୍କିଆ, ହୟ, ଗଜ, ରଥ), ବିଭିନ୍ନ ପ୍ରକାର ରାଜକୀୟ ସଂକେତ (ଛତ୍ର, ଚିରାଳ, ଆଲମ୍ବ, ବିଲମ୍ବ, ଉଲାଖ, ବୀରନେତ)ର ବାରମ୍ବାର ବର୍ଣ୍ଣନା କରି ସେ ରାଜକୀୟ ଐଶ୍ୱର୍ଯ୍ୟ ପ୍ରତି ଶ୍ରୋତାଙ୍କ ଦୃଷ୍ଟି ଆକୃଷ୍ଟ କରିଛନ୍ତି ।

'ଜଗମୋହନ ରାମାୟଣ'ର ବହୁ ସ୍ଥଳରେ ବଳରାମ ରାଜକୀୟ ବିଭବ ପ୍ରଦର୍ଶନର ଆୟୋଜନ କରିଥିଲେ ହେଁ ଲଙ୍କାକାଣ୍ଡରେ ରାବଣର ଯୁଦ୍ଧଯାତ୍ରା ବେଳେ ଏହାପାଇଁ ଆହୁରି ଏକ ଅପୂର୍ବ ସୁଯୋଗ ଉପସ୍ଥିତ ହୁଏ । ଯୁଦ୍ଧରେ ବାରମ୍ବାର ପରାସ୍ତ ହେବା ପରେ ରାବଣ ହତାଶ ହୋଇପଡ଼େ । ଏହି ହତାଶ ଭାବକୁ ଦୂର କରିବା ପାଇଁ ସେ ଆୟୋଜନ କରେ ଅଳଙ୍କାର ଓ ବସ୍ତ୍ରର ଏକ ପ୍ରଦର୍ଶନୀ । ସେତେବେଳେ ସେ ଭାବେ:

ଏ ମୋହର ଅର୍ଜ୍ଜିଲା ଅଟଇ ସିନା ଧନ
ଚଉଦଭୁବନୁ ବାଛି ଆଣିଛି ଏମାନ ।
ଏଥକୁ ହିଁ ଦେବଙ୍କ ଭଣ୍ଡାର ନୋହେ ସରି
ସପତ ନିଧି ମୁଁ ପୁରାଇଛି ଯତ୍ନ କରି ।

ଏବେ ଏହା ବିଧ୍ୱଂସିବି ଶ୍ରୀରାମ ନିମନ୍ତେ
ଦେହ ଥିଲେ ପୁଣି ତାହା ଅର୍ଜିବି କିଞ୍ଚିତେ ।

ଏବଂ ଆଦେଶ ଦିଏ,

ଯେ ଯାହାର ଅନୁରୂପେ ଦିଅ ଆୟେମାନ
ବିଚିତ୍ର ବସ୍ତ୍ରମାନ ବିଳସ ଅନୁକ୍ଷଣ ।
ଯେତେ ଲୋକ ସଂଗ୍ରାମକୁ ଯିବେ ମୋହ ସଙ୍ଗେ
ଅଳଙ୍କାର ମଣ୍ଡି ହୋଇ ଥିବେ ସେ ସର୍ବାଙ୍ଗେ
ଦେଖିବା ମାତ୍ରକେ ଶତ୍ରୁ ହୋଇବ ଅଜ୍ଞାନ
ବୋଲିବ ଅର୍ଜିଲେ ଏ କେମନ୍ତେ ଏତେ ଧନ ।

ରାବଣର ଏହି ଆଦେଶ ପରେ ଲଙ୍କାପୁରର ଭଣ୍ଡାର ଶୂନ୍ୟ ହୋଇଗଲା । ଯୋଦ୍ଧାମାନେ ନେତ, ପାଟ, ପତନୀ, ହନୁଆ, ବସନ, ପାଟ, ପାଛୋଟି, ଦୋସରା, ନେପୁର, ମୁକ୍ତା, ରତ୍ନମାଳା, ହାର, ତାଟଙ୍କ, କିରୀଟି, ବିନ୍ଦ, ସୁନାସୂତା, କଙ୍କଣ, ମୁଦି, ସୁବର୍ଣ୍ଣପଇତା, ତାଡ଼, ସରଳ, ଶିକୁଳି, ସୁନା ଓ ଚଉସରା ପ୍ରଭୃତି ଅଳଙ୍କାରରେ ମଣ୍ଡିତ ହୋଇ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ପ୍ରତ୍ୟେକ ଅଳଙ୍କାରରେ ପୁଣି ବ୍ରହ୍ମଜାତ ହୀରା, ମର୍କତମଣି, ପ୍ରବାଳ ମାଣିକ୍ୟ, ପଦ୍ମପୁଷ୍ପରାଗ ଓ କୁରୁବିନ୍ଦ ପ୍ରଭୃତି ବହୁମୂଲ୍ୟ ରତ୍ନଖଚିତ । ଶ୍ରେଷ୍ଠ ଯୋଦ୍ଧାଙ୍କ ପାଇଁ କନକ ସ୍ନାନ, ମୁକ୍ତାସ୍ନାନ, କର୍ପୂରଗୁଣ୍ଡି ସ୍ନାନର ବ୍ୟବସ୍ଥା ଥିଲା । ପ୍ରତିଷ୍ଠିତ ଯୋଦ୍ଧାମାନଙ୍କୁ କପାଳରେ କସ୍ତୁରୀ, କଳେବରରେ ଗନ୍ଧ, ଯୁଆଦ ଓ ଚତୁଃସମଲେପନ ଦ୍ୱାରା ସମ୍ମାନିତ କରି ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କରାଯାଉଥିଲା ।

କେବଳ ବସ୍ତ୍ର ଓ ଅଳଙ୍କାର ନୁହେଁ, ଖାଦ୍ୟପେୟରେ ମଧ୍ୟ ରାଜାଘରର ଠାଣି ସମ୍ପୂର୍ଣ୍ଣଭାବେ ଦେଖିହୁଏ । ଭରଦ୍ୱାଜ ଓ ବଶିଷ୍ଠଙ୍କ ଆଶ୍ରମ, ପୁଣି ଅଯୋଧ୍ୟାର ଭୋଜିରେ ବଳରାମ ଯେଉଁ ଖାଦ୍ୟସାମଗ୍ରୀର ଉଲ୍ଲେଖ କରିଛନ୍ତି, ସେସବୁକୁ ଜଗନ୍ନାଥ ମନ୍ଦିରରେ ନତୁବା ଗଜପତିଙ୍କ ରାଜପ୍ରାସାଦରେ ସେ ଦେଖିଥିବେ । ସାଧାରଣ ଲୋକଙ୍କ ଘରେ ଏସବୁ ମିଳିବା ତ ଦୂରର କଥା, ଅନେକେ ହୁଏତ ନାଁ ଶୁଣି ନ ଥିବେ । ପୁରାଣ ମାଧ୍ୟମରେ ସେସବୁ ଖାଦ୍ୟପେୟର ନାଁ ଶୁଣି କୃତାର୍ଥ ହେବାଛଡ଼ା ଗରିବ ଓଡ଼ିଆ ପକ୍ଷରେ ଆଉ ଉପାୟ ବା କ'ଣ ଥିଲା ? ସହସ୍ରାର୍ଜ୍ଜୁନ ସେନାଙ୍କ ମୁଖରେ କବି ସେହିକଥା ହିଁ କହିଛନ୍ତି-

ଦେଖି ନ ଥିଲୁ ଯେ ପୁଣି ଖାଇ ଯେ ନ ଥିଲୁ
ଅପୂର୍ବ ପଦାର୍ଥମାନ ନୟନେ ଦେଖିଲୁ
ବସ୍ତ୍ର ଅଳଙ୍କାର ଦେଖି ହେଲୁ ଆଚମ୍ବିତ
କାହୁଂ ଏହା ଭିଆଇଲ କହ ମୁନି ସତ୍ୟ ।

(ଅଯୋଧ୍ୟା - ପୃ ୧୧)

ଏହା କେବଳ ସହସ୍ରାର୍ଜ୍ଜୁନର କଥା ନୁହେଁ, ଏହା ହେଉଛି ସମସ୍ତ ଓଡ଼ିଆ ସମାଜର ହୃଦୟବାଣୀ ।

ରାଜ ଦରବାର ସହ ନିକଟ ସଂପର୍କରୁ ରାଜ ଐଶ୍ୱର୍ଯ୍ୟ ବର୍ଣ୍ଣନା କରିବା ପାଇଁ ବଳରାମ ଯେ ପ୍ରେରିତ ହୋଇଥିଲେ, ତାହା ନୁହେଁ, ଏହା ଥିଲା ସେ ଯୁଗର ଏକ ସ୍ୱାଭାବିକ ପ୍ରବୃତ୍ତି । ନିଜର ନ ଥିଲେ ବି ଅନ୍ୟର ଐଶ୍ୱର୍ଯ୍ୟରେ ଲୋକେ ଈର୍ଷାନ୍ୱିତ ହେଉ ନ ଥିଲେ । ବରଂ ଅନ୍ୟର ସୁଖ ଦେଖି ସୁଖୀ ହେଉଥିଲେ । ଭାଗ୍ୟବାଦୀ ଭାରତୀୟ ଜନତା ନିଜ ଭାଗ୍ୟକୁ ଆଦରି ସୁଖୀ ହେବାରେ ଅଭ୍ୟସ୍ତ ଥିଲେ । ସେମାନଙ୍କ ଚକ୍ଷୁରେ ରାଜା ଓ ଦେବତା ମଧ୍ୟରେ ପାର୍ଥକ୍ୟ ନ ଥିଲା । ପୁରୀର ଗଜପତି ଥିଲେ ଚଳନ୍ତି ବିଷ୍ଣୁ । ଯେପରି ଦିଲ୍ଲୀର ସମ୍ରାଟ ଥିଲେ ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା । ପୁଣି ପୁରାଣରୁ ସେ ତ ନିଜ କଥା ଶୁଣୁ ନ ଥିଲେ, ଶୁଣୁଥିଲେ ବିଷ୍ଣୁଙ୍କ ଅବତାର ଶ୍ରୀରାମ ବା ପରମ ବ୍ରହ୍ମଙ୍କ କଥା । ସେ ଜଗତର ମାଲିକ । ହୀରା, ନୀଳା, ମୋତି, ମାଣିକ୍ୟ ସବୁ ତ ତାଙ୍କରି ସୃଷ୍ଟି । ସେଥିପାଇଁ ସେମାନେ ଭଲ ଭାବରେ ଜାଣିଥିଲେ ଯେ ହୀରା, ନୀଳା, ମୋତି, ମାଣିକ୍ୟ ରାଜା ବା ଦେବଭୋଗ୍ୟ ପଦାର୍ଥ । 'ଜଗମୋହନ ରାମାୟଣ'ର ଗୋପାଳ ପରି ଏ ଦେଶର ସାଧାରଣ ଜନତା କେବଳ ଏ ସବୁ ବହୁମୂଲ୍ୟ ପଦାର୍ଥକୁ ଦେଖି ନ ଥିଲେ, ତାହା ନୁହେଁ, ସାଧାରଣ ଜୀବନ ନିର୍ବାହ ପାଇଁ ଏସବୁର ଅସାରତା ମଧ୍ୟ ଭଲଭାବେ ବୁଝୁଥିଲେ ।

ଶୁଣିଣ ଉପହାସ୍ୟ କରନ୍ତି ଗୋପାଳେ
କେ ଜାଣଇ ମଣି କେଉଁଣ ଗଛେ ଫଳେ ।
ଆମ୍ଭେ ତୋତେ କିମ୍ପା ମାଗଣା ଦୁଧ ଦେବୁ
ଏହା ବିକି ଆମ୍ଭେ କୁଟୁମ୍ବ ପୋଷିବୁ ।

ସାଧାରଣ ଜୀବନରେ ମଣି ମାଣିକ୍ୟର ଆବଶ୍ୟକତା ନ ଥିଲେ ବି କାବ୍ୟ ପୁରାଣରୁ ଶୁଣି ଆନନ୍ଦ ନେବାରେ ଆପତ୍ତି ନ ଥିଲା । ସେଥିପାଇଁ ସେ ଯୁଗର ପ୍ରାୟ ସବୁ କବି ହୀରା, ନୀଳା, ମୋତି, ମାଣିକ୍ୟର କଥାକୁ ଅବାଧରେ ବ୍ୟବହାର କରୁଥିଲେ । ବାହାରକୁ ବାହାରିବା ବେଳେ ସଜେଇ ହୋଇ ଯିବାକୁ ହୁଏ । ଏହା ମଧ୍ୟ ଥିଲା କାବ୍ୟର ପରମ୍ପରା । ପାଠକ ବା ଶ୍ରୋତାମାନେ ମଧ୍ୟ ଏହି ପରମ୍ପରା ସହ ନିବିଡ଼ ଭାବେ ପରିଚିତ ଥିଲେ । କେବଳ ଦେଶ ଓ କାଳ ଭେଦରେ କବି ନିଜର ବ୍ୟକ୍ତିଗତ ମୁଦ୍ରାଙ୍କ ଏହା ଉପରେ ଅଙ୍କିତ କରି ନିଜ ପ୍ରତିଭାର ପରିଚୟ ଦେଉଥିଲେ । ସେଇଥିରୁ ପରୀକ୍ଷିତ ହେଉଥିଲା କବିଙ୍କ ପାରିଲାପଣ । ଏକ ଦିଗରେ ରାଜକୀୟ ବିଭବର ଆଡ଼ମ୍ବରପୂର୍ଣ୍ଣ ବର୍ଣ୍ଣନା, ଅନ୍ୟପକ୍ଷରେ ସହସ୍ରାର୍ଜ୍ଜୁନ ଓ ଗୋପାଳଙ୍କ ପରି ଆଶ୍ଚର୍ଯ୍ୟ, ଚକିତ ଓ ଆଚମ୍ବିତ ହେଉଥିବା ସାଧାରଣ ଲୋକଙ୍କ ମଧ୍ୟ ଦେଇ 'ଜଗମୋହନ ରାମାୟଣ'ର କଥା ଓ ବର୍ଣ୍ଣନା

ଗତି କରିଛି । ବଳରାମ ଯେ ସବୁବେଳେ ରାଜକୀୟ ବିଭବର ବର୍ଣ୍ଣନା କରୁଥିଲେ ତାହା ନୁହେଁ, ବେଳେବେଳେ ଗୁହ ଶବର ଓ ମନ୍ଥରା ପରି ସାଧାରଣ ଚରିତ୍ର ମଧ୍ୟ କବିଙ୍କ ଦୃଷ୍ଟିକୁ ଆକୃଷ୍ଟ କରିଥିଲା । ବାଲ୍ମିକୀ ରାମାୟଣର କନ୍ଧ ଜାତୀୟ ଗୁହ ଶବର ହେଲା ବଳରାମଙ୍କ ଗୁହ ଶବର । ଶବରୁଣୀର ରାମଭକ୍ତି ଓ ଶବର ଜାତିର ଜଗନ୍ନାଥ ପୂଜା ବିଷୟରେ କବି ସଚେତନ ଥିଲେ । ସେଥିପାଇଁ 'ଜଗମୋହନ ରାମାୟଣ'ରେ ଗୁହଶବର ପ୍ରସଙ୍ଗ ଆସିବାକ୍ଷଣି କବି ବଳରାମ ଗୁହ ଓ ସେହି ଜାତୀୟ ଲୋକଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଖୋଜିନେଲେ । ଗୁହର ପ୍ରତିନିଧିତ୍ୱରେ ସମସ୍ତ ଶବର ଜାତି ହେଲେ ଶ୍ରୀରାମଙ୍କ ମିତ୍ର । କବି ଶ୍ରୀରାମ ଓ ଶବର ଜାତିର ମିତ୍ରତା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବେଶଭୂଷା, ଖାଦ୍ୟପେୟର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି; ଅଯୋଧ୍ୟାକାଣ୍ଡରେ ପୁଣି ଲଙ୍କାକାଣ୍ଡରେ । ଏହି ବର୍ଣ୍ଣନାରେ ଶବର ଜାତି ପ୍ରତି କବିଙ୍କ ସହାନୁଭୂତି ଯେ କେବଳ ପ୍ରକାଶ ପାଇଛି ତାହା ନୁହେଁ, ଏ ଯୁଗର ନୃତତ୍ତ୍ୱବିଦ୍‌ମାନଙ୍କ ପରି ସେ ସେମାନଙ୍କ ସଂସ୍କୃତି ଓ ଚଳଣିକୁ ନିବିଡ଼ ଭାବେ ପରୀକ୍ଷା କରି ଦେଖିଛନ୍ତି ।

ବଳରାମଙ୍କ ବାସ୍ତବ ଦୃଷ୍ଟିଭଙ୍ଗୀ ଦାସୀମାନଙ୍କ ବର୍ଣ୍ଣନାରେ ଆହୁରି ସ୍ପଷ୍ଟ । ବୃଦ୍ଧରାଜା ଦଶରଥଙ୍କ ପୁତ୍ର ଜନ୍ମୋତ୍ସବରେ ସବୁଠାରୁ ବେଶି ଖୁସି ହୋଇଥିଲେ ଅଯୋଧ୍ୟାର ଅଧିବାସୀମାନେ । ସେମାନଙ୍କ ଆନନ୍ଦ ଆଉ ଅନ୍ତଃପୁର ମଧ୍ୟରେ ଆବଦ୍ଧ ହୋଇ ରହିପାରି ନ ଥିଲା । ସେମାନେ ଆଯୋଧ୍ୟାର ରାଜଦାଣ୍ଡରେ ତୁଣ୍ଡରେ ପାନ ଓ ମୁଣ୍ଡରେ ଫୁଲ ଖୋସି, ମୃଗୀହସା ଦେଇ, ଆଡ଼କରି ଚାହିଁ, ଲମ୍ବା ପଣତ ଉଡ଼ାଇ, ଗାଲରେ ହଳଦୀ ଓ ଆଖିରେ କଜ୍ଜ୍ୱଳ ବୋଳି, ଖୋଷାର ଫୁଲମାନଙ୍କୁ ବାରମ୍ବାର ଖୋଲି, ହିଆର ପଣତକୁ ଆଡ଼ କରି କ୍ଷଣେ ଚାଲି, କ୍ଷଣେ ଦଉଡ଼ି ନିଜର ଉଲ୍ଲାସ ପ୍ରକାଶ କରିଥିଲେ । ମନ୍ଥରାର ବର୍ଣ୍ଣନା କଲାବେଳେ ମଧ୍ୟ କବି ସେହିକଥା ଲେଖିଛନ୍ତି-

ତୁଣ୍ଡେ ତାର ପାନ ଯେ ମଥାରେ ଫୁଲ ଖୋସା
ଲୋକଙ୍କୁ ଦେଖିଣ ଯେ ଦିଅଇ ମୁର୍ଗୀହସା ।
ଗାଲରେ ହଳଦୀ ଚୁନ ଯେ ନୟନେ କଜଳ,
× × ×
ଶାଢ଼ୀର ଅଞ୍ଚଳ ତାର ଭୂମିରେ ଲୋଟଇ
ଫରଫର ଉଡ଼ଇ ଭୂମିରେ ସାଉଣ୍ଟଇ ।

ନଗରରେ ଦାନଧର୍ମ ହେଲାବେଳେ ବିଭିନ୍ନ ଲୋକ ବିଭିନ୍ନ ପ୍ରକାର ଜିନିଷ ପ୍ରତି ଆକୃଷ୍ଟ ହୋଇଥାନ୍ତି ଅଥଚ ଦାସୀମାନେ ନିଅନ୍ତି ଧନ, ବସ୍ତ୍ର, ଥାଳି, ଝରି ଓ ଡାବରି ।

ମିଥିଳା ନଗରର ନାଗରୀମାନଙ୍କର ବିଭ୍ରମ ବର୍ଣ୍ଣନା କଲାବେଳେ ମଧ୍ୟ କବିଙ୍କ ଦୃଷ୍ଟି ରାଜପୁରରେ ସୀମିତ ହୋଇ ରହିନାହିଁ । ଏ ବର୍ଣ୍ଣନାରୁ କବିଙ୍କ ରସିକତାକୁ ମୁକ୍ତ

କରିଦେଲେ, ଓଡ଼ିଆ ଗାଁର ଏକ ସାଧାରଣ ଦୃଶ୍ୟ ଆଖି ଆଗରେ ଝଲସି ଉଠେ । ବର ଦେଖିବା ପାଇଁ ଆବାଳବୃଦ୍ଧ ବନିତାଙ୍କର ଅସୀମ ଆଗ୍ରହ ଏଥିରେ ପ୍ରତିଫଳିତ । ମଳାଶୂର, ଦେଢ଼ଶୂର, ଶ୍ୱଶୁର ଓ ଅନ୍ୟାନ୍ୟ ଗୁରୁଜନମାନଙ୍କ ଉପସ୍ଥିତିକୁ ଉପେକ୍ଷା କରି ଓଡ଼ିଆ ନାରୀ ଯେଉଁଭାବେ ବର ଦେଖିବା ପାଇଁ ବାହାରି ଆସେ, ଏହା ହେଉଛି ତାହାର ଏକ ଜୀବନ୍ତ ଦୃଶ୍ୟ । ଦେହ ଘୋଡ଼ାଇବା ପାଇଁ ସେଇ ଖଣ୍ଡିଏ ଶାଢ଼ୀ । ଦଉଡ଼ିବାବେଳେ ସେଥିରୁ ଅଧେ ଦିହରୁ ଖସି ଯାଇ ମାଟିରେ ଘୁସୁରୁଥାଏ । ରସିକ ବଳରାମ ଯୁବତୀମାନଙ୍କର ଠାଣି ଓ ଚାହାଣୀରେ ବିମୋହିତ ହୋଇ ରସସିକ୍ତ ପଦସବୁ ରଚନା କରୁଥିଲେ ହେଁ, ସେଥିରୁ ବାସ୍ତବତାକୁ ଠଉରେଇବାରେ ଅସୁବିଧା ହୁଏ ନାହିଁ ।

ଗଜ, ଅଶ୍ୱ ଓ ରଥର ସାଜସଜ୍ଜାରେ ରାଜକୀୟ ବିଭବ ସାଧାରଣତଃ ପ୍ରକାଶିତ ହୋଇଥାଏ । 'ଜଗମୋହନ ରାମାୟଣ'ରେ ଏସବୁର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଦଶରଥ ମିଥିଳାକୁ ଗଲାବେଳେ ସୁମନ୍ତ ସହିତ ଅଶ୍ୱାରୋହୀମାନେ, ବଶିଷ୍ଠଙ୍କ ତତ୍ତ୍ୱାବଧାନରେ ରାଣୀମାନେ ହାନ୍ଦୋଳା ଓ ପାଲିଙ୍କିରେ, ଏବଂ ଦଶରଥ 'ସହସ୍ରେକ ହାଥି' ପରିବେଷ୍ଟିତ ହୋଇ ହାତୀ ଉପରେ ଯାତ୍ରା ଆରମ୍ଭ କରିଥିଲେ । ଦଶରଥଙ୍କ ହାତୀର ନାମ ଥିଲା ଶତ୍ରୁଜୟ । ଦକ୍ଷିଣ ଭାଗରେ ସୁମନ୍ତଙ୍କ ପୁତ୍ର ବିଦ୍ୟାଧର । ତାଙ୍କ ହାତୀଙ୍କ ନାମ ଥିଲା ବଇରି ବିଭାଣ୍ଡକ । ସେ ରାଜାଙ୍କ ଶିର ଉପରେ ବୀରଛତ୍ର ଧାରଣ କରିଥିଲେ । ବାମ ପାଖରେ ଯାବାଳିଙ୍କ ପୁତ୍ର ସୋମଧର । ତାଙ୍କ ହାତୀଙ୍କ ନାମ ଶତ୍ରୁମର୍ଦ୍ଦନ । ସେ ରାଜାଙ୍କୁ ତାମ୍ବୁଳ ଯୋଗାଉଥିଲେ । ଏହି ତିନୋଟିଯାକ ଗଜ ସମତୁଲ ହୋଇ ଚାଲିଥିଲେ । ଏଥିରୁ ରାଜାଙ୍କ ହାତୀ ଅଇରାବତ କିମ୍ବା ଦିଗଗଜ ପରି ଶୋଭା ପାଉଥିଲା । ତା'ର ସର୍ବାଙ୍ଗ ଶ୍ୱେତ ଚାମର ଦ୍ୱାରା ସୁଶୋଭିତ । କଣ୍ଠଦେଶରେ ପାଟ ଦଉଡ଼ି ଓ ସୁବର୍ଣ୍ଣ ଶିକୁଳିରେ ବନ୍ଧା ରୂପା ଛାଉଣି ହୋଇଥିବା କଂସା ଘଣ୍ଟି ଏବଂ ଘଣ୍ଟି ମୂଳରେ ଲୁହାର ଥୋପା, ଚରଣରେ ଘାଘୁଡ଼ି ମାଳା, ହସ୍ତୀ ଗମନ କଲାବେଳେ ସେ ସବୁରୁ ଶବ୍ଦ ପ୍ରକାଶିତ ହେଉଥିଲା । ଶ୍ୱେତଚାମର, ରଙ୍ଗପାଟ, ଲୁହା ଆରେଣି, ହାତୀର କଣ୍ଠଦେଶରେ ସୁସଜ୍ଜିତ ଥିଲା । ଏହା ବ୍ୟତୀତ ମୁକ୍ତାର ଝରା, ନୀଳା, ମଣି, ରଙ୍ଗ ପୋୟଳା ଗଣ୍ଡସ୍ଥଳରେ ଶୋଭା ପାଉଥିଲା । ଏସବୁ ସହିତ-

ପୁସ୍ୟେଣ ଶୋଭାବନ ଦିଶଇ ମାତଙ୍ଗ
କପୋଳେ ଘଷିଲା ଅଛଇ ଅଭଙ୍ଗ
କର୍ଣ୍ଣ ପର୍ବତ ପରିଯନ୍ତେ କସ୍ତୁରୀ ଲେଖନ
ଉହ୍ନରେ ଇଲାଟ ପାଟି ଦିଶଇ ଶୋଭାବନ ।

ଏହିପରି ଏକ ସୁସଜ୍ଜିତ ହସ୍ତୀର କନ୍ଧ ଦେଶରେ ନେତର ତୁଳି ସବୁ ନିବିଡ଼ କରି ବନ୍ଧା ହୋଇଥିଲା । ତା'ରି ଉପରେ ଉପବେଶନ କରିଥିଲେ ମହାରାଜା ଦଶରଥ । ସେ ତାଙ୍କ

ଚରଣକୁ ପାଟକାଛ ଉପରେ ଖୋସିକରି ବସିଥିଲେ । ବାମକରରେ ଥିଲା ଆରତୀ ଓ ଡାହାଣ କରରେ ଅଙ୍କୁଶ । ପାଖରେ ମାହୁନ୍ତ ଖଦି ଘେନି ବିଞ୍ଚୁଥିଲା । ସେହି ଶୋଭାଯାତ୍ରାରେ ରାଜାଙ୍କ ସହ ବହୁ ହାତୀ ଚାଲିଥିଲେ । ବଳରାମ ସେମାନଙ୍କର ବର୍ଣ୍ଣନା ଦେଇ ଲେଖିଛନ୍ତି:

ଯୋହାଙ୍କର ପଛେ ଆସନ୍ତି ନୃପତି
ନିଘୋଡ଼ ହୋଇଛନ୍ତି ସହସ୍ରେକ ହାଥି
କେବଣ ହସ୍ତୀମୁଖ ସିନ୍ଦୁର ଭୂଷଣ
କେବଣ ହସ୍ତୀ ଦିଶଇ ବିଭୂତି ବିଲୋପନ
କେବଣ ହିଂ ଗଜର ବହଇ ମଡ ଖଳବଳ
ଅବିଛନେ ଝରୁଅଛଇ କର୍ଣ୍ଣମୂଳ
କେବଣ ମତ୍ତଗଜ ଅଛଇ ଉଶ୍ୱାସି
ବାହାର ହୋଇଂ ଯାଇ ସେ ସାହାଣେ ନ ପଶି ।

ଦୃଷ୍ଟାନ୍ତ ଦେଇ କଥା କହିବା ଥିଲା ବଳରାମଙ୍କ ରଚନା ଶୈଳୀର ଏକ ବୈଶିଷ୍ଟ୍ୟ । ସେଥିପାଇଁ ସେ ବାରମ୍ବାର ବିଭିନ୍ନ ଉପମାନର ବ୍ୟବହାର କରୁଥିଲେ । ଉପମାନ ନ ଦେଇ ବେଳେବେଳେ ସେ କେବଳ ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତିରେ ତାଙ୍କ ବର୍ଣ୍ଣନାକୁ ଚମତ୍କାର କରି ପ୍ରକାଶ କରୁଥିଲେ । 'ଜଗମୋହନ ରାମାୟଣ'ରେ ଏପରି ବର୍ଣ୍ଣନାର ବହୁ ଉଦାହରଣ ଉପଲବ୍ଧ ହେଉଥିଲେ ବି ନିମ୍ନରେ ମନମାୟାର ଚାତୁର୍ଯ୍ୟୋକ୍ତିକୁ ଉଦ୍ଧାର କରାଯାଇଛି ।

ଶ୍ରୀରାମଙ୍କୁ ସଭା ମଧ୍ୟରେ ଦର୍ଶନ କରିବା କ୍ଷଣି ମନମାୟା ବୁଝି ପାରିଲା ଯେ ଏହି ହେଉଛନ୍ତି ପ୍ରକୃତରେ ସୀତାଙ୍କର ବର । ସେ ସୀତାଙ୍କ ସମ୍ମୁଖରେ ନିଜର ମନକଥା ପ୍ରକାଶ କରି କହିଲା-

ଯେ ତୋହୋର ବର ଗୋ ପ୍ରବେଶ ଯେଥି ଆସି
ବିଶ୍ୱାମିତ୍ର ସଙ୍ଗରେ ଅଛନ୍ତିଟି ବସି ।

ସୀତା ଭାବିଲେ ଏହା ହେଉଛି, ସଖୀର ଜମାଳି ।

ଯେହା ଶୁଣି ହସି ବୋଲଇ ମହିପାଳୀ
କିମ୍ପାଇ ସଖି କଲୁ ଗୋ ଜମାଳି । (ଆଦି - ପୃ ୨୭୮)

ଏହାର ଉତ୍ତରରେ ମନମାୟା ନିଜ ଉକ୍ତିର ସତ୍ୟତା ପ୍ରମାଣ କରିବା ଭଙ୍ଗୀରେ କହିଚାଲିଛି-

ଅଯୋନିସମ୍ଭୂତା ଗୋ ସଂଯେ ଜମଳଣୀ
ତୋତେ ବରପଣେ ଗୋ ଯୋଗାଇ ଚକ୍ରପାଣୀ ।
ଯେ ସେ ଚକ୍ରପାଣି ସେ ସେ ଦେବହରି
ଯେ ସେ ଶ୍ରୀହରି ସେ ସେ ଜଗତ ଅଧିକାରୀ ।
ସର୍ବଜନ ମନ ମୋହି ପାରନ୍ତି ଯେ ହରି

ସେହୁ ସେ ଜଗନ୍ନାଥ ଅଟଇ ଅଧିକାରୀ ।
ଯାହାକଇ ଖଟଇ ସର୍ବଜନ ମନ
ତାହା ସେ ବୋଲି ସଖି ପୁରୁଷକରି ମୋକ୍ଷପାନ ।
ଯେ ସେ ପୁରୁଷଙ୍କର ମୋକ୍ଷପାନ ହୋଇ,
ତାହାକୁ ଦେଖିଲେ ସର୍ବଜନ ମୋହିଂ ହୋଇ ।
ଯାହାକୁ ସକଳ ଜନ ମୋହି ହୋନ୍ତି
ଜଗତମୋହୋନ ସେ ତାହାକୁ ବୋଲନ୍ତି ।
ଯେ ଜଗତମୋହୋନ ତାହାକୁ ଦେଖିଲେ ଯେ ବଶ୍ୟ ହୋଇ
ଯାହାକୁ ବଶ୍ୟ ହୋଇ ତାହାକୁ ଭଇ କହି ।
ଯାହାକୁ ଭଇ ପାଇ ସେହି ସେ ଭାଗ୍ୟବନ୍ତ
ଯେ ସେ ଭାଗ୍ୟବନ୍ତ ସେ ସେ ତୋର କାନ୍ତ ।
ଯେ ସେ ତୋହୋର କାନ୍ତ ସେ କଉଶିକ ପାଶେ
ସଭାଲୋକେ ଦେଖି ଚାହାନ୍ତି ହରଷେ । (ଆଦି-ପୃ ୨୭୮ - ୭୯)

କଥା ଯେଉଁଠି ଆରମ୍ଭ ହୋଇଥିଲା, ସେହିଠାରେ ସରିଗଲା । ମଝିରେ ରହିଲା, ଚକ୍ରପାଣି, ଶ୍ରୀହରି, ମୋକ୍ଷପାନ, ସର୍ବଜନ ମୋହି, ଜଗତମୋହୋନ, ବଶ୍ୟ ହୋଇ, ଭଲ ପାଇ, ଭାଗ୍ୟବନ୍ତ ପ୍ରଭୃତି ଶବ୍ଦର ପ୍ରୟୋଗ । ପ୍ରଥମ ପଦ ଯେଉଁ ଶବ୍ଦରେ ସରିଛି, ପରବର୍ତ୍ତୀ ପାଦ ସେହି ଶବ୍ଦ ଉପରେ ଜୋର ଦେଇ ଆରମ୍ଭ ହୋଇଛି । 'ରୁଦ୍ର ସୁଧାନିଧି', 'ରସକଲ୍ଲୋଳ' ଓ ଅନ୍ୟାନ୍ୟ ବହୁ କାବ୍ୟରେ ଏ ପ୍ରକାର ପ୍ରୟୋଗ ମିଳୁଥିଲେ ହେଁ, ଏଥିରେ କେବଳ କେତେକ ଶବ୍ଦର ପୁନରାବୃତ୍ତି ଦେଖିବାକୁ ମିଳେ ନାହିଁ, କଥାକୁ ପ୍ରମାଣ କରିବାର ପବୃତ୍ତି ବିଦ୍ୟମାନ ।

ବଳରାମ ଉପମାନ ପ୍ରୟୋଗରେ ଅତ୍ୟନ୍ତ ପାରଙ୍ଗମ ଥିଲେ । ଏଥିପାଇଁ ପୁରାଣ ଶୈଳୀରେ ରଚିତ ଗ୍ରନ୍ଥ ଉପଯୁକ୍ତ କ୍ଷେତ୍ର ନ ହେଲେ ବି ବଳରାମଙ୍କ କବି ମନ ଏହି ଶୃଙ୍ଖଳାକୁ ବାରମ୍ବାର ଭାଙ୍ଗି ଦେଇଥିଲା । ଶ୍ରୀରାମ ଓ ସୀତାଙ୍କର ପ୍ରଥମ ସାକ୍ଷାତକାଳୀନ ଦୃଶ୍ୟରେ ଶ୍ରୀରାମଙ୍କର ଉକ୍ତି ଅତ୍ୟନ୍ତ ଉପଭୋଗ୍ୟ ।

ଅଧରେ ଅଧର ପାନ ଦିଅରେ ପ୍ରାଣସଖି
ତୁହି ଶାଳୀ ଅନ୍ନ ମୁହିଁ ଉପବାସୀ ।
ଭୋଗକଲେ ତୋତେ ହୋଇବ ପ୍ରାଣ ଥିର
ମୁହିଁ ଚାତେକ ତୁ ଆକାଶର ନୀର ।
× × ×
ତୁ କାଳ ଗରଳ ମୁଁ ଅଟଇ ସଦାଶିବ
ତୋହୋର ମୋହୋର ସେ ଅଟଇ ସଦଭାବ ।

ତୁହି ବେଦ ପୋଥି ମୁହିଁ ଅଟଇ ବେଦପାଣି
ଆନକି ତୋହର ଗୁଣଗ୍ରାମ ଜାଣି ।
ମୁହିଁ ସୁରପତି ତୁ ଅଟୁ ସୁଧାରସ
ଆନକି ଭାର୍ଜନ ତୋତେ କରିପାରେ ଗ୍ରାସ ।
ମୁହିଁ ଅଗସ୍ତି ତୁ ସପତ ସାଗର
ତୁହି କୁମୁଦ ମୁଁ ଯେ ଅଟଇ ନିଶାକର ।
ତୋତେ ଦେଖିଲେ ମୋହୋର ଆନନ୍ଦ ହୋଯେ ପ୍ରାଣ
ତୁ ସଖୀ ପଦ୍ମ ମୁଁ ଛାୟାର ରମଣ ।
ମୁହିଁ କାମଦେବ ତୁ ହି ସେ ଅଟୁ ରତି
ତୋହୋର ସ୍ୱରୂପକୁ ମୁଁ ଅନୁରୂପେ ପତି ।
× × ×
ହସି କଥା କହି ରଖୁ କିନା ପ୍ରାଣ
ତୁ ସେ ଲକ୍ଷ୍ମୀ ମୁଁ ଯେ ଅଟଇ ନାରାୟେଣ । (ଆଦି - ପୃ ୩୯୨)

ବଳରାମ କେବଳ ପୁରାଣକାର ନ ଥିଲେ, ସେ ଥିଲେ ଓଡ଼ିଶାର ପ୍ରଥମ ପଦାବଳୀ ଲେଖକ । ଦୁର୍ଗା, ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ଲୀଳାକୁ ନେଇ ସେ ବହୁ କ୍ଷୁଦ୍ର କବିତା ରଚନା କରିଥିଲେ । ସେସବୁ କବିତାରୁ ତାଙ୍କ କଳ୍ପନାମୁଖର ମନର ପ୍ରକୃଷ୍ଟ ପରିଚୟ ମିଳିଥାଏ । ଜଗନ୍ନାଥଙ୍କ ପହଣ୍ଡିକାଳର ଦୃଶ୍ୟ କବିଙ୍କୁ ରାଜକର୍ମଚାରୀମାନଙ୍କ ଦ୍ୱାରା ବନ୍ଧାହୋଇ ଯାଉଥିବା ଚୋର ସଦୃଶ ଜଣାଯାଇଛି । କବିଙ୍କ ମନରେ ପଡ଼ିଛି ଭଗବାନଙ୍କର ବହୁ ଅତୀତ କର୍ମ :

ସଖି ! ଚାହାଁ ଗୋ ।
ହସ ହସ ହଉଛନ୍ତି ନାହା ଗୋ ।
ବେଦ ଲଗନେ କହିଛି ଯାହା ଗୋ ।
ନିଘୋଡ଼ କରି ଭୁଜ ଧରି ନେଉଛନ୍ତି କେହି ନାହାନ୍ତିକି ସାହା ଗୋ ।
ସଖି ଗୋ ! ଜାଣିଲା ମୋ ପ୍ରଭୁ ଜଗତ ଖାତେକ ତାଙ୍କୁ ଲୋକେ ନେଉଛନ୍ତି ଧରି,
ପାହିବାକୁ ରାତ୍ର ପହଡ଼େକ ଥାଉ ସେ ହରିଲେ କାହାର ନାରୀ ଗୋ ।
ସଖି ଗୋ ! ବିଭା ହୋଇଲାର ପ୍ରାୟେକ ଦିଶନ୍ତି ଅଣ୍ଟାରେ ପାଟର ଡୋର
ଚକ୍ର ଆକାରେ ସେବକ ବେଢ଼ିଛନ୍ତି ଆବୋରି ଡାକି ଛାମୁର ।
ସଖି ଗୋ ! ପୂର୍ବେ ରାଜଜେମା ଚୋରାଇ ଆଣିଲେ ତା'କି ଚର ଭେଟାଇଲେ ଆଣି ।
ବଳରାମ ଦାସ ତା' ଦେଖି ଉଷତ ଧରି ନେଲେଟି ତିନି ପରାଣୀ ଗୋ ।

ଦେବୀ ଦୁର୍ଗାଙ୍କ ବନ୍ଦନା କଲାବେଳେ, ସେ ସବୁଠାରେ କେବଳ ରଙ୍ଗକୁ ହିଁ ଦେଖିଛନ୍ତି :

ମାଗୋ ରଙ୍ଗ ଶସ୍ତ୍ର ରଙ୍ଗ ବସ୍ତ୍ର
ରଙ୍ଗ ତୋ ଅଧର ନେତ୍ର
ନଖ ମୁଖ ରଙ୍ଗ ତୋର
ଲଲାଟେ ରାଗ ସିନ୍ଦୁର ।
କରେ ରଙ୍ଗ ଚୁଡ଼ି ଗୋ ମା ଅଳତା ରଙ୍ଗ ତୋ ପାୟେ
ମାଗୋ ରଙ୍ଗ ପାଟ ବରତ ତୋ ବାହେ
ମାଗୋ ରଙ୍ଗ ତୋ ପଦ୍ମଆସନ
ରଙ୍ଗ ତୋ ପୀତ ବସନ
ରଙ୍ଗ ତୋ କାନ୍ଧେ ପଇତା
ରଙ୍ଗ ତୋ ଲଲାଟପଟ ଚିତା ।
ମାଗୋ ରଙ୍ଗ ଅଗ୍ନିରୁ ତୁ ଜାତ ହୋୟେ
ରଙ୍ଗେ ତୃପ୍ତିକଲେ ଦେବତାୟେ
ରଙ୍ଗେ ଶିବର ହୋଇଲୁ ଘରଣୀ
ରଙ୍ଗେ ମୈଷାସୁର ମର୍ଦ୍ଦିନି ।
କାଳ ତକରାଳି କାଳି କରାଳି ରଣ ବେତାଳି
ରୁଧିର ପିବନ୍ତେ ତୋଷ, ଭଣେ ବଳରାମ ଦାସ ।

କବିଙ୍କର ଆଉ ଗୋଟିଏ କବିତା ବିରହିଣୀ ରାଧାଙ୍କର ବସନ୍ତକାଳୀନ ଭାବନା ନେଇ ରଚିତ :

ବସନ୍ତ ବହିଲା କୋକିଳ ରାବିଲା ମଦନ ଆସୁଛି ବହି
ତାଙ୍କ ପ୍ରିୟ ସଖି ଯେକ ରୁଣ୍ଡ ହୋଇ ବୃନ୍ଦାବନେ ଥିବା ରହି ଗୋ ।
ମଦନ ଆସି ସେ କିସ କରିପାରେ ମଦନକୁ କିମ୍ପା ଡର
ଏକାଉ କୃଷ୍ଣମୋ କୋଟିମୟ ମଦନ ପିଛିଲେ ଶ୍ରୀ ଗିରିଧର ଗୋ ।
ମଦନ ଆରତେ ନନ୍ଦ ସୁତ କାହ୍ନୁ ଜୀବଧନ ପ୍ରାଣମଣି
ତୃଷାରେ ତୃଷିତ ଚାତେକ ପରାୟେ ବଳରାମ ଦାସ ଭଣି ଗୋ ।

ଶ୍ରୀରାଧା ସଖୀମେଳରେ ଯମୁନାରେ ସ୍ନାନ କରିବା ପାଇଁ ଉଦ୍ୟତ ହେଉଥିବା ବେଳେ କୌଣସି ଜଣେ ସଖୀ ରାଧାକୁ ବାରଣ କରି କହିଛି, "ରାଧେ ତୁ ଯମୁନା ନ ଯା ଗୋଧୋଇ" । କବିତାର ଭାଷା ଓ ଭାବନାରେ ଜଣେ ପ୍ରତିଭାବାନ କବିର କରସ୍ପର୍ଶ ଦେଖିବାକୁ ମିଳିଥାଏ ।

ରାଧେ ଗୋ ହସ୍ତରେ ଦୟେଣା ମୁଣ୍ଡରେ ଅୟେଣା କାନ୍ଧରେ ପତନୀ ଶାଢ଼ୀ
ସର୍ବ ସଖୀ ଘେନି ଚଳେ ଚନ୍ଦ୍ରାବଳୀ ଯେସନେ ସିନ୍ଧୁ ଦୁଲାଳୀ ଗୋ ॥ ଘୋଷା ॥
ରାଧେ ତୁ ଯମୁନା ନ ଯା ଗାଧୋଇ ।
ଯମୁନାର ପାଣି ବାସନ୍ଦ ହୋଇଛି ଘାଟ ଘେନୁଛି ମାଧୋଇ ଯେ !
ନାକେ ନାକଚଣା ଗୋଡ଼ରେ ପାହୁଡ଼ ହସ୍ତରେ ସୁବର୍ଣ୍ଣ ବାହି ।
ଡାଳିମ୍ବ ନେତକୁ ଉଠାଣି ବୟେସ ନେଉଟି ନ ଚାହୁଁ ରାହି ଗୋ ॥
ଆଜର ସ୍ନାହାନ କୂପ ଜଳେ ସାର ଯମୁନା ନ କର ଆଶ ।
ଘଟ ଦାନ ଦେଲେ ସୁଖେ ଗାଧୋଇବ ଭଣେ ବଳରାମ ଦାସ ଗୋ ॥

ଯମୁନାକୁ ଗୋଧୋଇ ନଯିବା ପାଇଁ ରାଧାଙ୍କୁ ବାରଣ କରିବାର ଦୃଶ୍ୟ ବହୁ କବିଙ୍କ ରଚନାରୁ ମିଳିଲେ ବି 'ଡାଳିମ୍ବ ନେତକୁ ଉଠାଣି ବୟେସ ନେଉଟି ନ ଚାହୁଂ ରାହି ଗୋ' ପଦରୁ ରାଧାଙ୍କ ସୌନ୍ଦର୍ଯ୍ୟରେ ଯେଉଁ ମାଦକତା ସୃଷ୍ଟି ହୋଇଛି, ତାହା ଅନ୍ୟତ୍ର ଦୁର୍ଲ୍ଲଭ ।

ବିରହୀ କୃଷ୍ଣ ମଦନ ଜ୍ୱାଳାରେ କାତର ହୋଇ ସଖୀକୁ ସଙ୍କେତ ଦେଇ ରାଧାଙ୍କ ପାଖକୁ ପଠାଇଛନ୍ତି । ରାଧା ମଧ ବିରହିଣୀ । ସଖୀଠାରୁ କୃଷ୍ଣଙ୍କ ବ୍ୟଥା କଥା ଶୁଣି ସେ ସଖୀ ସହ ବୃନ୍ଦାବନକୁ ଯାଇଛି ରାତିଅଧରେ । ସେଠାରେ ମିଳନ ହୋଇଛି ନୟନ ସହ ନୟନର । ପରେ ସେମାନେ ରାସକ୍ରୀଡ଼ା ରଚନା କରି ହରଷ ହୋଇଛନ୍ତି । ଭାବନା ଦୃଷ୍ଟିରୁ ଏଥିରେ ନୂତନତା ନାହିଁ ସତ, କିନ୍ତୁ ଭାଷା ପ୍ରୟୋଗରେ ବଳରାମଙ୍କ ଦକ୍ଷତା ଏହାର ପ୍ରତ୍ୟେକ ପ୍ରୟୋଗରେ ପ୍ରକାଶିତ ।

ଦୂତୀ ବଚନ ଶୁଣିଣ ଆନନ୍ଦ । ବିମ୍ବ ଅଧରେ ହସେ ମନ୍ଦ ମନ୍ଦ
ତାହାର ବିହୁନେ ମୋ ତନୁ କ୍ଷୀନ । ବିଳମ୍ବ ନ କରି ଚଳ ବହନ ॥ ଘୋଷା ॥
ଆଣ ପ୍ରାଣସଖୀ ! ମଦନ ବାଣ ମୋତେ କଲ ଦୁଃଖି ।
ସହଚରୀ ହାଥେ ସଙ୍କେତ ମାଳି । ଚଳିଲା ଦୂତିକା ଭେଟିଲା ବାଳୀ ।
ବସିଛି ରାଧିକା ଅବନୀ ଚାହିଁ । ଲିହ ଘେନିଣ ମେଦିନୀ ଚିରଇ ।
ଶୁଣ ସଖି ଯାହା ଅଇଲି ଦେଖି । ତୋର ବିହୁନେ କୃଷ୍ଣ ବଡ଼ ଦୁଃଖି ।
ଅନଙ୍ଗ ବାଣ କରିଅଛି ଜ୍ୱାଳା । ସଙ୍କେତ ଦେଇଛି ଏ ପୁଷ୍ପମାଳା ।
ସେ ଦୂତୀ ବଚନ, ସଜ ହୁଅ ସଖି ଯିବା ବହନ ।
ଶୁଣି ରାଧିକା ହରଷ ହୋଇଣ । ସାଜିଲେ ଅଙ୍ଗେ ନାନା ଆଭରଣ ।
ବେଳ ଜାଣିଣ ହୋଇଲେ ବାହାର । ବେଭାରେ ରଜନୀ ଅର୍ଦ୍ଧ ଅନ୍ଧାର ।
ସେ କଲେ ଗମନ । ଯାଇଁ ଭେଟିଲେ ନନ୍ଦେଲି ନନ୍ଦନ ।
ନୟନେ ନୟନେ ମିଳିଲା ଯହୁଁ । ରାହାସ ଉସବ ରଚିଲେ ତହୁଁ ।

ଭୁଜେ ଭିଡ଼ା ଗିଡ଼ି ମୁଖେ ଚୁମ୍ବନ। ରତି ସାରିଣ ପିନ୍ଧିଲେ ବସନ।
ସେ ହରଷ ହୁଇ। ବଳରାମ ଦାସ ପାଦେ ସେବଇ।

ଏହିପରି ଆଉ ଗୋଟିଏ କବିତା ଗୋପୀମାନଙ୍କ ପାଇଁ। ସେମାନେ ଯମୁନା ଯିବେ ଦୁର୍ଗାଙ୍କ ପାଖରେ ବର ମାଗିବେ ନନ୍ଦ ପୁଅଙ୍କୁ ବର ରୂପେ ପାଇବା ପାଇଁ। ନବ ବ୍ରତର ଦିନ। ବିଳମ୍ବ ହେଉଛି। ବରଜ କାମିନୀମାନେ ତକାତକି ହୋଇ ଯିବା ପାଇଁ ପ୍ରସ୍ତୁତ ହେଉଛନ୍ତି। ଏହି ଭାବନାକୁ ନେଇ କବି ଲେଖିଲେ-

ମାଗୋ ଶରଦ ଋତୁ ହୋଇଲା ପ୍ରବେଶ
ବରଜ କାମେନୀ ମାନେ ଉଲ୍ଲାସ।
ଯେକକୁ ଆରେକ କୁହାକୋହି ହୋଇ
ଚାଲ ଗୋ ଯମୁନା ଯିବା ଗାଧୋଇ।
ତରୁଣୀ କାଳେ ନବବ୍ରତ ଗୋ ମାଆ
ବିଳମ୍ବ କିମ୍ପାଇଁ କର।
ଚାଲ ଦେବୀଙ୍କି ଜଣାଇ ମାଗିବା ବର।
ମାଗୋ ଗନ୍ଧ ଚନ୍ଦନ କର୍ପୂର ଚୁଆଦି
କାନ୍ଧେ ବସନ ବିବିଧ ସୁଗନ୍ଧି,
ଦେବୀଙ୍କ ପୂଜା ବିଧି ଘେନି ଚଳି,
ପୁଣି ଯମୁନା ତଟେ ପ୍ରବେଶ ଗୁଆଳି,
ସ୍ନାହାନ ସାରି ବିବିଧ ପ୍ରସିଦ୍ଧି
ତାଙ୍କୁ ମିଳି ପୂଜିଲେ ସକଳ କାମେନୀ
ଆମ୍ଭର ବାଞ୍ଛା ପୂରାଅ ଯିଗ୍ନସେନୀ।
କାନ୍ତାନୀ କରୁଣା କର ଗୋ ମାଆ
ମାଗୋ ନନ୍ଦନନ୍ଦନ ହୋନ୍ତୁ ଆମ୍ଭ ବର।
ମାଗୋ କାମଦେବ ମନେ ଗର୍ବ ବହିଲା
ଗୋପନ ବରକୁ ପୟାଣ କଲା।
ଆମ୍ଭେ ଅବଳା ଯହୁଁ ତୁଷ୍ଟି କଲୁ
ପୁଣି ନନ୍ଦନନ୍ଦନକୁ ବର ପାଇଲୁ।
ଆମ୍ଭ ପ୍ରାଣପତି ଗୋବିନ୍ଦେ ହୁଅନ୍ତୁ
ପୂରାଅ ବାଞ୍ଛା ଆମ୍ଭର
ମାଗୋ ଦାସ ବଳିଆ ତୋ ପାଦେ କିଙ୍କର।

ଭୀଷଣ ବର୍ଷାରେ କବିଙ୍କ ଘରଖଣ୍ଡି ଭାଙ୍ଗିଗଲା। ସେଦିନ ଗୁରୁ ପଞ୍ଚମୀ। କବି

ବ୍ରତ ପାଳନ ପାଇଁ ସତ୍ୟବତୀ ଇନ୍ଦ୍ରଙ୍କ କୋପରୁ ନିରାଶ ହେଲେ । ଏଥିପାଇଁ ଇନ୍ଦ୍ରଙ୍କ ଉପରେ ଅଭିମାନ କରି କବି ଲେଖିଲେ ଗୋଟିଏ କ୍ଷୁଦ୍ର କବିତା ।

ପୂର୍ବେ ଯେ ଦିବାନିଶି ସାତଦିନ ବରଷି ପ୍ରଭୁଙ୍କ ତୁଲେ ବାଦ କଲୁ
ବାର ଯୋଜନ ଗିରି ବାମ କରେଣ ଧରି ହାରିଣ ଶରଣ ପଶିଲୁ
ବାସେବ ହେ, ସେ ରୋଷେ ଭାଙ୍ଗୁ ଆମ୍ଭ ଘର ।
ଯେଡ଼େ ନଜାଣୁ ବାଇ କ୍ଷଣେ ନପାରୁ ରହି ଜଣାଇଲେ ପ୍ରଭୁଙ୍କ ଛାମୁର ।
ଗୁରୁ ପଞ୍ଚମୀ ବ୍ରତ କରି ଯେ ଥିଲୁ ସତ୍ୟ କରି ତା ପାଳି ନ ପାରିଲୁ
ଲକ୍ଷ୍ମୀଙ୍କ କୋପଭର ଡରେଣ ଥରହର, ଜାଣୁ ତ ଯେମନ୍ତ ହୋଇଲୁ
ରାବଣ ପୁଅ ମେଘା ଜିଣିଲା ତୋତେ ଛଘା
ତେଣୁ ତା ନାମ ଇନ୍ଦ୍ରଜିତ
ତୋହର ପାଇଁ ହରି ବେଗେ ତାହାନ୍ତ ମାରି
ସେ ଗୁଣ କରିଛୁ ଆମ୍ଭନ୍ତ । ୩ ।
ପାରିଜାତେକ ଆଣୁ ମୁଣ୍ଡ ତୋ ହାଣୁ ହାଣୁ
ସେବେଳେ ରଖିଲେ ତୋ ପ୍ରାଣ
ସେ କଥା ପାଶୋରିଲୁ ସ୍ୱର୍ଗେ ଇନ୍ଦ୍ର ହୋଇଲୁ
ଯେବେ ତୁ କହୁ ଟାଣପଣ ।
ବେଳେକ ସହିବା ହେ ପ୍ରଭୁଙ୍କୁ ନ କହିବା
ତୁହିତ ସର୍ଗେ ଇନ୍ଦ୍ର ଗୋଟା ।

ଅଯୋଧ୍ୟା ନଗରୀର ରାଜପୁତ୍ର ଶ୍ରୀରାମଙ୍କ ଜନ୍ମ, ବିବାହ, ରାଜ୍ୟାଭିଷେକ ଓ ରାଜ୍ୟଜୟ ପ୍ରଭୃତି ଘଟଣା କବିଙ୍କୁ ରାଜପୁରର ବିଭବ ପ୍ରତି ଆକୃଷ୍ଟ କରିଥିବା ପରି ଶ୍ରୀରାମଙ୍କର ବନବାସକାଳୀନ ଜୀବନ କବିଙ୍କୁ ପ୍ରକୃତି ବର୍ଣ୍ଣନା କରିବା ପାଇଁ ଅପୂର୍ବ ସୁଯୋଗ ପ୍ରଦାନ କରିଥିଲା । ଆଦିକାଣ୍ଡରେ ଜରତାର ବନ ପ୍ରବେଶ, ବିଶ୍ୱାମିତ୍ରଙ୍କ ଆଶ୍ରମ ପଥରେ ଥିବା ବିପୁଳ ବନ, ଅଯୋଧ୍ୟାକାଣ୍ଡର ଚିତ୍ରକୁଟ, ଆରଣ୍ୟକର ଦଣ୍ଡକାରଣ୍ୟ ଓ କିଷ୍କିନ୍ଧ୍ୟା କାଣ୍ଡରେ ମାଲ୍ୟବନ୍ତର ଶୋଭା ଏହାର ଉଦାହରଣ । ଏହିସବୁ ସ୍ଥାନରେ ବନ ବର୍ଣ୍ଣନା କଲାବେଳେ କବି ପରିଗଣନାତ୍ମକ ଶୈଳୀରେ ବୃକ୍ଷ, ପଶୁ, ପୁଷ୍ପ ଓ ପକ୍ଷୀର ଉଲ୍ଲେଖ ଗୋଟିକ ପରେ ଗୋଟିଏ କରିଅଛନ୍ତି । ଏଥିରୁ କବି ଓଡ଼ିଶାର ବନ ଜଙ୍ଗଲ ସହ ସମ୍ପୂର୍ଣ୍ଣ ଭାବେ ପରିଚିତ ଥିବା ଜଣାଯାଏ । ବନ ବର୍ଣ୍ଣନାର ଏହାହିଁ ଥିଲା ପ୍ରାଚୀନ ପରମ୍ପରା । ବାଲ୍ମିକୀ, କାଳିଦାସଙ୍କ ପରି ସଂସ୍କୃତ ସାହିତ୍ୟର ବିଶିଷ୍ଟ କବିଙ୍କ ରଚନାବଳୀରୁ ଏହାର ଉଦାହରଣ ସଂଗ୍ରହ କରାଯାଇ ପାରେ । ବାଲ୍ମିକୀ ଚିତ୍ରକୁଟରେ ବର୍ଣ୍ଣନା ଦେଇ ଲେଖିଛନ୍ତି-

ଆମ୍ରଜମ୍ବୁ ସର୍ନୈର୍ଲୋଧ୍ରୈଃ ପ୍ରିୟାଳୈଃ ପନସୈର୍ଧବୈଃ
ଅଏଙ୍କୋଲୈର୍ଭବ୍ୟ ତିନି ଶୈର୍ବିଲ୍ୱତିନ୍ଦୁକ ବେଣୁଭିଃ । ୮ ।
କାଶ୍ମାର୍ଯାରିଷ୍ଟବରଣୈର୍ମଧୁ କୈସ୍ତିଲ କୈରପି
ବଦର୍ଯ୍ୟାମଲ୍କୁ କୈନୀଂ ଗୈର୍ବେ ତ୍ରଧନ୍ୱନ ବୀଜ କୈଃ । ୯ ।

(ଅଯୋଧା - ୮ - ୯)

ବୃକ୍ଷ ଓ ଫୁଲଠାରୁ ପଶୁପକ୍ଷୀଙ୍କ ବର୍ଣ୍ଣନାରେ ପାର୍ଥକ୍ୟ ଦେଖିବାକୁ ମିଳେ । କବି ବେଳେବେଳେ ପକ୍ଷୀସବୁଙ୍କ ନାଁ କହିଯାଇଛନ୍ତି । ଉଦାହରଣ ପାଇଁ ଆଦିକାଣ୍ଡରୁ ଗୋଟିଏ ପଦ ଉଦ୍ଧାର କରାଯାଇ ପାରେ,

କାଠକଟା, ବାୟା, କପୋତ, ଗେଣ୍ଡାଳିଆ
ପିକ, ପାରୁଆ, ନୀଳକଣ୍ଠ, ବକ, ଭାରଥିଆ,

କେବଳ ଆଦିକାଣ୍ଡ ନୁହେଁ, ଅନ୍ୟସ୍ଥଳରେ ମଧ୍ୟ କବି ଏହି ପ୍ରକାର ବର୍ଣ୍ଣନା ଦେବାକୁ ଭୁଲି ନାହାନ୍ତି । ବାରମ୍ବାର ଏକ ପ୍ରକାର ବର୍ଣ୍ଣନା ପାଠକ ବା ଶ୍ରୋତାଙ୍କ ପାଇଁ ନିଶ୍ଚିତ ଭାବେ କ୍ଳାନ୍ତିକାରକ । କିନ୍ତୁ 'ଜଗମୋହନ ରାମାୟଣ' ପରି ବିପୁଳକାୟ ଗ୍ରନ୍ଥ ମଧ୍ୟରେ ଏହା ଅନୁଭବ କରିହୁଏ ନାହିଁ । ସଚେତନ ଆଲୋଚକ ପକ୍ଷରେ ଏହା ପୁନରାବୃତ୍ତିର ଦ୍ୟୋତକ ହେଲେହେଁ ପୁରାଣର ଶ୍ରୋତା ନିକଟରେ ଏହା ଥିଲା ଜ୍ଞାନ ଓ ଗାରିମାର ପରିମାପକ । କବି କିନ୍ତୁ ସବୁବେଳେ ପରିଗଣନାତ୍ମକ ଶୈଳୀ ମଧ୍ୟରେ ଆବଦ୍ଧ ନ ଥିଲେ । ପଶୁ ଓ ପକ୍ଷୀଙ୍କର ବିଚିତ୍ର ଲୀଳା ବର୍ଣ୍ଣନା କରି 'ଜଗମୋହନ ରାମାୟଣ'କୁ ସେ ରସସିକ୍ତ କରିଥିଲେ । ତାଙ୍କ ଗ୍ରନ୍ଥରୁ ମିଳୁଥିବା ଅଜସ୍ର ଉଦାହରଣ ମଧ୍ୟରୁ ଜରତାର ନୌକାଯାତ୍ରା ବର୍ଣ୍ଣନାକୁ ଦେଖାଯାଉ ।

ଜରତାର ନାବ୍ୟାଶ୍ରମ ଜଙ୍ଗଲର ପଶୁପକ୍ଷୀଙ୍କ ମଧ୍ୟରେ ସୃଷ୍ଟି କରିଛି ଏକ ଅପୂର୍ବ ଶିହରଣ । ସେମାନେ ଭୀତତ୍ରସ୍ତ ବିସ୍ମିତ ପୁଣି ଆନନ୍ଦିତ । ଅନୁଭବୀ ଯାତ୍ରୀପରି ବଳରାମ ସେମାନଙ୍କର ସେଇ ଆବେଗଭରା ମୁହୂର୍ତ୍ତଗୁଡ଼ିକୁ ରୂପଦେଲେ 'ଜଗମୋହନ ରାମାୟଣ'ରେ । ଜଙ୍ଗଲର ବହୁ ପଶୁ ନଈକୂଳରେ ଯାଉଁ ଯାଉଁ ନାବକୁ ଦେଖି ଠିଆ ହୋଇଗଲେ । ନାବ ଚାଲିଯିବାପରେ ନାବ ଗତିର ଆଘାତରେ ସୃଷ୍ଟି ହେଉଥିବା ଅସଂଖ୍ୟ ତରଙ୍ଗମାଳା ମଧ୍ୟରେ ପଶୁମାନଙ୍କର ପ୍ରତିବିମ୍ବ ବହୁଗୁଣିତ ହୋଇ ପ୍ରକାଶ ପାଇଥିଲା । କବି ଏହି ଦୃଶ୍ୟଟିକୁ ନିମ୍ନଭାବେ ଲିପିବଦ୍ଧ କରିଛନ୍ତି-

କେବଣ ଜୀବଜନ୍ତୁ ନଦୀକି ଚାହାନ୍ତି
ନାବ ଚଳିଯାନ୍ତେ ଦିଶନ୍ତି ପନ୍ତି ପନ୍ତି ।

ଜୀବଜନ୍ତୁଙ୍କ ପରି ପକ୍ଷୀମାନଙ୍କ ମନରେ ମଧ୍ୟ ନାନା ଭାବାନ୍ତର ସୃଷ୍ଟି ହୁଏ । ନାବକୁ ଦେଖି କିଛି ପକ୍ଷୀ ବସା ଛାଡ଼ି ଉଡ଼ିଯାଆନ୍ତି ତ କିଛି ପକ୍ଷୀ ପାଣିରେ ବୁଡ଼ିଯାଇ ଆତ୍ମରକ୍ଷା

କରନ୍ତି । ଡିମ୍ବ ପାଖରେ ବସିଥିବା ପକ୍ଷୀ ଭାଗ୍ୟକୁ ଆଦରି ସେହିଠାରେ ରହି ଯାଉଥିବାବେଳେ ଅନ୍ୟ କେତେକ ପକ୍ଷୀ ରଡ଼ିଦେଇ ଆକାଶରେ ଉଡ଼ି ବୁଲୁଥାନ୍ତି ।

କଣ୍ଠା ପାଣିକୁଆ ହଂସରାଜି ପକ୍ଷୀ
ବସା ଛାଡ଼ିଣ ଯେ ପଳାନ୍ତି ନାବ ଦେଖି ।
କେହୁ ତହିଁ ବୁଡ଼ିରହନ୍ତି ବସା ଆଶେ
କେବଣ ଚଢ଼ାଇ ଯେ ରହିଲେ ଡିମ୍ବ ଆସେ ।
କେହୁଁ ତହିଁ ପାରେ ଉଡ଼ନ୍ତି ରଡ଼ିଦେଇ
ନାବ ଗଲେଣ କେ ଦେଖନ୍ତି ବସା ଯାଇ ।

ଆଯୋଧ୍ୟାକାଣ୍ଡରେ କବି ପୁଣି ଥରେ ଏହିସବୁ ପକ୍ଷୀଙ୍କର ଗଣନା କରିଥିଲେ ହେଁ ବର୍ଣ୍ଣନାରେ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ପ୍ରତ୍ୟେକ ପ୍ରକାରର ପକ୍ଷୀ ନିଜର ସ୍ୱର, ଗତିବିଧି ଓ ପ୍ରକୃତି ଯୋଗୁଁ ଅନ୍ୟଠାରୁ ଅଲଗା । ସେ ସବୁକୁ ଦେଖି ଦେଖେଇବାରେ ବଳରାମ ଥିଲେ ଅତ୍ୟନ୍ତ ପାରଙ୍ଗମ ।

ଟେଣ୍ଟାଇ, କାକରଖାଇ, ଡାମରା ଯେ କୁଜି
ବୃକ୍ଷେ ବସି ରାବୁଛନ୍ତି ହୋଇ ପୁଞ୍ଜି ପୁଞ୍ଜି ।
ଚକୁଆ ଚକୋଇ ପକ୍ଷୀ ଜଳେ ଖେଳୁଛନ୍ତି
ନୀଳକଣ୍ଠ ଚଢ଼ାଇ ଯେ ଗଗନେ ଉଡ଼ନ୍ତି ।
ବେଣୁ ବୃକ୍ଷେ ବସିଅଛି କଜଳପାତିଆ
ପାଣି ମଧ୍ୟେ ବୁଡ଼ି ଖେଳୁଛନ୍ତି ପାଣିକୁଆ ।

ପ୍ରକୃତି ବର୍ଣ୍ଣନା କଲାବେଳେ କବି କେବଳ ବନ ସୌନ୍ଦର୍ଯ୍ୟର ବର୍ଣ୍ଣନା କରି ନାହାନ୍ତି । ପ୍ରସଙ୍ଗର ଆବଶ୍ୟକତାନୁଯାୟୀ କେତେବେଳେ ରାମାୟଣରେ ପ୍ରଭାତ ହୋଇଛି ତ କେତେବେଳେ ରାତ୍ରିର ଅନ୍ଧକାରରେ ଖଦ୍ୟୋତ ସବୁର ଶୋଭା କବିଙ୍କୁ ବିମୁଗ୍ଧ କରିଛି । କେତେବେଳେ ମାଲ୍ୟବନ୍ତର ଶ୍ରାବଣକାଳୀନ ବର୍ଷା କବିଙ୍କୁ ଭୀତତ୍ରସ୍ତ ଓ ସିକ୍ତ କରି ଦେଇଛି ତ କେତେବେଳେ ଶରତକାଳର ନିର୍ମଳ ରଜନୀ ଶୋଭାରେ ତାଙ୍କ ହୃଦୟ ନିର୍ମଳ ହୋଇଯାଇଛି । ବଳରାମଙ୍କ ବର୍ଷା ବର୍ଣ୍ଣନାରୁ ତାଙ୍କ ପ୍ରକୃତି-ସଚେତନତା ଦେଖାଯାଇପାରେ-

ଶ୍ରାବଣ ପ୍ରବେଶ ହୁଏ ଏଥୁ ଅନନ୍ତରେ
ଘୋର ବୃଷ୍ଟି କରିଣ ବରଷେ ଜଳଧରେ ।
ଅଖଣ୍ଡିତ ଧାରା ଯେ ନ ଦିଶେ ଦଶ ଦିଶ
ବନ ପଲ୍ଲବି ତା ପୁଣି ହୁଅଇ ଅଦୃଶ୍ୟ ।
ନଦୀମାନେ ବଢ଼ନ୍ତି ଯେ ପୂରେ ପୁଷ୍କରିଣୀ

ପର୍ବତ ଉପରୁ ଝରି ପଡ଼ଇ ଯେ ପାଣି।
ସୂର୍ଯ୍ୟଙ୍କ କିରଣ ତେଜ ନ ଦିଶେ ଗଗନେ
ବୃକ୍ଷେ କମ୍ପମାନ ହୋନ୍ତି ପ୍ରଚଣ୍ଡ ପବନେ।

ବର୍ଣ୍ଣନା ସଂକ୍ଷିପ୍ତ ହେଲେ ବି ଏଥିରେ ଶ୍ରାବଣ ମାସର ଏକ ଜୀବନ୍ତ ଚିତ୍ର ମିଳିଥାଏ। ଶ୍ରୀରାମ ବର୍ଷାଋତୁର ଏହି ସୌନ୍ଦର୍ଯ୍ୟକୁ ଚକ୍ଷୁ ସମ୍ମୁଖରେ ଦେଖୁଥିଲେ ହେଁ ଏହା ତାଙ୍କ ହୃଦୟକୁ ଉଦ୍ଦୀପ୍ତ କରି ନାହିଁ। ଏଥିରେ ଅଳଙ୍କାର ପ୍ରୟୋଗର ଚମତ୍କାରିତା ବି ନାହିଁ। ଏଠାରେ କବିଙ୍କର କେବଳ ଗୋଟିଏ ଉଦ୍ଦେଶ୍ୟ ଓ ତାହା ହେଉଛି ବର୍ଷାର ସ୍ୱାଭାବିକ ବର୍ଣ୍ଣନା। ବାଲ୍ମିକୀ ଓ କାଳିଦାସଙ୍କ ପ୍ରକୃତି ବର୍ଣ୍ଣନାରେ ମଧ ଏହିପରି ଶୈଳୀ ଦେଖିବାକୁ ମିଳିଥାଏ।

ପ୍ରକୃତିର ଆଲମ୍ବନ ରୂପ ପରି ଏହାର ଉଦ୍ଦୀପନ ରୂପ ବର୍ଣ୍ଣନା କରିବା କବିଙ୍କର ଅତି ପ୍ରିୟ ଥିଲା। ସେ ବିରହ ଓ ମିଳନ ବେଳାର ଭାବରାଜିକୁ ଉଦ୍‌ଜୀବିତ କରିବା ପାଇଁ ପାରମ୍ପରିକ ରୀତିରେ ବସନ୍ତ ବର୍ଣ୍ଣନା କରିଛନ୍ତି। ଏଥିରେ କବିଙ୍କ ସ୍ୱତନ୍ତ୍ର ପର୍ଯ୍ୟବେକ୍ଷଣ ଏବଂ ଅନୁଭବର ଅଭାବ ପରିଲକ୍ଷିତ ହୁଏ। କିନ୍ତୁ ସୀତାଙ୍କ ବିରହ-ବ୍ୟଥିତ ଶ୍ରୀରାମ ବୃନ୍ତହୀନ କଦମ୍ବ ପୁଷ୍ପକୁ ଦେଖି ପତ୍ନୀହୀନ ପତିର ଦୁର୍ଦ୍ଦଶାକୁ ସ୍ମରଣ କରିଛନ୍ତି। ସେହିପରି ସୀତାଙ୍କ ସୌନ୍ଦର୍ଯ୍ୟ ସହ ତୁଳନା ଦିଆଯାଉଥିବା ଫୁଲସବୁକୁ ନିରୀକ୍ଷଣ କଲାପରେ ଶ୍ରୀରାମଙ୍କ ବିରହ ବ୍ୟଥା ବହୁଗୁଣିତ ହୋଇ ଯାଇଛି। ବୃନ୍ତହୀନ କଦମ୍ବକୁ ଦେଖି ଶ୍ରୀରାମ କହିଛନ୍ତି-

ଏଥିର ବେଣ୍ଟକୁ ଯେ ଛିଣ୍ଡାଇ ପକାଇଲି
କେଉଁଠାରୁ ଛିଡ଼ିଲା ଯେ ଜାଣି ନ ପାରିଲି।
ସୀତା ଅନୁକ୍ଷଣେ ମୋର ପାଶେ ଯେବେ ଥିଲା
ଖୋଜି ନ ପାଇଲି ମୁହିଁ କେଉଁଆଡ଼େ ଗଲା।

(ଅଯୋଧ୍ୟା - ପୃ ୫୯)

ବଳରାମ ସନ୍ଥକବି ଭାବେ ପ୍ରସିଦ୍ଧି ଲାଭ କରିଥିଲେ। ଜୀବନର ଆଦ୍ୟ ଭାଗରେ ରାଜପୁରର ସମୃଦ୍ଧ ବାତାବରଣ ସହ ତାଙ୍କର ନିବିଡ଼ ସଂପର୍କ ଥିବା ଅନୁମାନ କରାଯାଉଥିଲେ ହେଁ ପରବର୍ତ୍ତୀ ଜୀବନରେ ସେ ହେଲେ ଏକ ବିଶିଷ୍ଟ ବୈଷ୍ଣବ। ଓଡ଼ିଶାର ପୁରପଲ୍ଲୀ ସହ ମିଶି ପ୍ରକୃତିର ମୁକ୍ତ ବାତାବରଣକୁ ଭଲ କରି ଦେଖିବାର ସୌଭାଗ୍ୟ ତାଙ୍କର ଥିଲା। ପ୍ରକୃତିର ନୈସର୍ଗିକ ବାତାବରଣଠାରୁ ସେ ଦୂରରେ ନ ଥିଲେ ବି ପରମ୍ପରାକୁ ତ୍ୟାଗ କରିପାରି ନ ଥିଲେ। ସେଥିପାଇଁ ତାଙ୍କ ପ୍ରକୃତି ବର୍ଣ୍ଣନାର କୌଣସି କୌଣସି ଅଂଶରେ ତାଙ୍କ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳୁଥିଲେହେଁ ସେ ସବୁରେ ନୂତନତା ନାହିଁ।

ବାଲ୍ମିକୀ, ବ୍ୟାସ ଓ କାଳିଦାସଙ୍କୁ ହିଁ ସେ ଅନୁସରଣ କରିଛନ୍ତି । ତାଙ୍କ କାବ୍ୟର ପ୍ରକୃତି ବିଚିତ୍ରବର୍ଣ୍ଣା ନୁହେଁ । ଏଥିରେ ପ୍ରକୃତିର ଅଳଂକୃତ ଓ ମାନବୀଗଣ ରୂପ ପ୍ରକାଶ ପାଇପାରି ନାହିଁ । ତାଙ୍କ ପ୍ରକୃତି ନୀତି ଓ ଉପଦେଶ ମଧ୍ୟଦେଇ ଗତିକରି ନାହିଁ ବା ତାଙ୍କ ପ୍ରକୃତିରେ ସେ ପରମତତ୍ତ୍ୱର ଦର୍ଶନ ମଧ୍ୟ କରି ନାହାନ୍ତି । ରାମାୟଣର କଥାଭାଗରେ କଥାର ବିବିଧତା ଯେତେ ପରିମାଣରେ ଦେଖିବାକୁ ମିଳେ, ବର୍ଣ୍ଣନାରେ ତାହା ନାହିଁ । ବଳରାମ ଥିଲେ ପୁରାଣର କବି, ପରମ୍ପରାର କବି । ସେ କଥାରେ ନୂତନତା ଆଣିଥିଲେ, ବର୍ଣ୍ଣନାରେ ନୁହେଁ ।

କବି ବଳରାମ ପୁରାଣ, ଅନୁବାଦ, ବ୍ୟାଖ୍ୟା ଓ ପଦାବଳୀ ଲେଖି ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଥିଲେ । ପ୍ରତ୍ୟେକ କ୍ଷେତ୍ରରେ ସେ ଥିଲେ ଜଣେ ଯଶସ୍ୱୀ କବି । ତାଙ୍କ କବିତ୍ୱର ବୈଶିଷ୍ଟ୍ୟ ହେଲା, ସେ ଥିଲେ ଜଣେ ଲୋକ-କବି । ଲୋକ-ଜ୍ଞାନକୁ ସେ ଲୋକ-ଭାଷାରେ ପ୍ରକାଶ କରି ଲୋକମାନଙ୍କୁ ଉପହାର ଦେଇଥିଲେ । ଶାସ୍ତ୍ରଜ୍ଞାନକୁ ସେ ସରସ ଓ ସହଜ କରିଥିଲେ ଲୋକମାନଙ୍କ ପାଇଁ । 'ଜଗମୋହନ ରାମାୟଣ' ପରି ବିଶିଷ୍ଟ ପୁରାଣରୁ ଆରମ୍ଭ କରି 'ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା' ପର୍ଯ୍ୟନ୍ତ କ୍ଷୁଦ୍ର କବିତା ପର୍ଯ୍ୟନ୍ତ, ସବୁଠାରେ ବଳରାମଙ୍କ ଲୋକଭାବନା ହିଁ ମୁଖ୍ୟ ଥିଲା । ସେ ରାଜକୀୟ ତଥା ଶାସ୍ତ୍ରୀୟ ପରିବେଶ ମଧ୍ୟରେ ଜୀବନର କିଛିକାଳ ଅତିବାହିତ କରିଥିଲେ ହେଁ, ସେ ସବୁ ଥିଲା ତାଙ୍କ ପାଇଁ ଏକ ବନ୍ଧନ । ସେ ସବୁ ବନ୍ଧନକୁ ଛିନ୍ନ କରି, ସମାଜର କଟକଣାକୁ ଭ୍ରୁକ୍ଷେପ ନ କରି ଜଣେ ମୁକ୍ତ ମାନବ ଭାବେ ସେ ସୃଷ୍ଟି କରିଗଲେ ତାଙ୍କ କାବ୍ୟ ଓ କବିତାର ସୌଧ ।

ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ତାଙ୍କ ରାମାୟଣରେ ଦାଣ୍ଡୀବୃତ୍ତର ବ୍ୟବହାର କରିଥିଲେ । କଥା କହିବା ପାଇଁ ଏହାହିଁ ଥିଲା ବୋଧହୁଏ ସେକାଳର ଉପଯୁକ୍ତ ଛନ୍ଦ । କିନ୍ତୁ ନିରୀକ୍ଷଣ କଲେ ଜଣାଯିବ ଯେ ଉଭୟ କବିଙ୍କ ଦାଣ୍ଡିବୃତ୍ତ ସମାନ ପ୍ରକୃତି ବିଶିଷ୍ଟ ନ ଥିଲା । ସାରଳାଦାସଙ୍କ ଦାଣ୍ଡୀବୃତ୍ତରେ ଯେଉଁ ଆକୁଞ୍ଚନ ଓ ପ୍ରସାରଣ କ୍ଷମତା ଥିଲା, ତାହା ବଳରାମ ଦାସଙ୍କ କବିତାରେ ପରିଦୃଷ୍ଟ ହୁଏ ନାହିଁ । ଏହା ବହୁ ପରିମାଣରେ ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ନିକଟବର୍ତ୍ତୀ । ଏହାର ଆକୁଞ୍ଚନ ଓ ପ୍ରସାରଣର ସୀମା ୧୧ ରୁ ୧୫ ଅକ୍ଷର ମଧ୍ୟରେ ସୀମିତ । ଅଧିକାଂଶ ତ୍ରୟୋଦଶ-ଅକ୍ଷର-ବିଶିଷ୍ଟ । କେବଳ ଗୋଟିଏ 'ଯେ' ଯୋଗରେ ଏହା ଚତୁର୍ଦ୍ଦଶାକ୍ଷରୀ ଛନ୍ଦରେ ପରିଣତ ହୋଇଯାଏ । ବଳରାମ ଦାସଙ୍କ ପ୍ରଯୁକ୍ତ ଦାଣ୍ଡିବୃତ୍ତର ଏହି ଶୈଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ସେ ତାଙ୍କ ଛନ୍ଦକୁ ଅଧିକାଧିକ କମନୀୟ ରୂପରେ ଉପସ୍ଥାପିତ କରିବାକୁ ଚାହିଁଥିଲେ । ଏହାଥିଲା ବୋଧହୁଏ ସେ ଯୁଗର ପ୍ରଭାବ, ପରବର୍ତ୍ତୀ ସଙ୍ଗୀତ ଯୁଗର ପୂର୍ବାଭାସ । ବୈଷ୍ଣବ ଧର୍ମର ଲୋକପ୍ରିୟତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସଙ୍କ

କାନ୍ତକୋମଳ ପଦାବଳୀ ସମସ୍ତ ଭାରତୀୟ ସାହିତ୍ୟକୁ ପ୍ରଭାବିତ କଲା । ବଳରାମ ମଧ୍ୟ ବୈଷ୍ଣବ ଥିଲେ । ଜଗନ୍ନାଥଙ୍କୁ ରାମ ଓ କୃଷ୍ଣ ଭାବରେ ସେ ଆରାଧନା କରୁଥିଲେ । ଏହିସବୁ କାରଣ ହେତୁ ଅନୁସରଣ କରି ସେ ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣ କରିଥିଲେ ହେଁ ଶବ୍ଦ ଚୟନରେ ସେ ସାରଳାଦାସଙ୍କଠାରୁ ସ୍ୱତନ୍ତ୍ର ଥିଲେ । ବଳରାମ ଦାସଙ୍କ ଶବ୍ଦ ପ୍ରୟୋଗର ବୈଶିଷ୍ଟ୍ୟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ :

୧- ପରମ୍ପରାନୁଗତ ବୈଶିଷ୍ଟ୍ୟ

୨- ସ୍ୱକୀୟ ବୈଶିଷ୍ଟ୍ୟ

କଥା ଓ ବର୍ଣ୍ଣନାର ସୌଷ୍ଠବ ଶବ୍ଦ ପ୍ରୟୋଗ ଉପରେ ସଂପୂର୍ଣ୍ଣ ଭାବେ ନିର୍ଭର କରେ । ଯେଉଁ କବିର ଶବ୍ଦକୋଷ ଯେତେ ବିଶାଳ, ତାହାର ପ୍ରକାଶ କ୍ଷମତା ସେତିକି ସ୍ପଷ୍ଟ । ଭାବର ସ୍ପଷ୍ଟ ଅଭିବ୍ୟକ୍ତି ପାଇଁ କବି ବା ଲେଖକକୁ ବିଭିନ୍ନ ସ୍ରୋତରୁ ଶବ୍ଦ ଚୟନ କରିବାକୁ ହୋଇଥାଏ । ଏହି ଶବ୍ଦ ଚୟନ ପ୍ରବୃତ୍ତିରୁ କବିର ପାଣ୍ଡିତ୍ୟ ଯେପରି ପ୍ରକାଶ ପାଏ, ସେହିପରି ଶବ୍ଦ ପ୍ରୟୋଗ ପଦ୍ଧତିରୁ କବିର କୁଶଳତା ମଧ୍ୟ ଜାଣି ହୁଏ । ବଳରାମଙ୍କ ପୂର୍ବରୁ ଓଡ଼ିଆ ଭାଷାର ବିପୁଳ ବ୍ୟବହାର ହୁଏ ସାରଳାଦାସଙ୍କ ମହାଭାରତରେ । ସାରଳାଦାସ ପ୍ରତିଭାବାନ କବି । ତାଙ୍କ ମହାଭାରତରେ କଥା ଓ ଭାବାଭିବ୍ୟକ୍ତି ପାଇଁ ବିସ୍ତୃତ କ୍ଷେତ୍ର ମଧ୍ୟ ଥିଲା । ଶିଳାଲେଖ - ସର୍ବସ୍ୱ ଭାଷାକୁ ସେ ଦେଲେ ନୂଆ ରୂପ, ନୂଆ ଜୀବନ । ଚର୍ଯ୍ୟାପଦର ଅପଭ୍ରଂଶ ଭାଷା ବଦଳରେ ସେ ସଂସ୍କୃତଗର୍ଭିତ ଭାଷା ବ୍ୟବହାର କଲେ । କିନ୍ତୁ ସଂସ୍କୃତ ଭାଷାର ପ୍ରତ୍ୟେକ ଶବ୍ଦ ନୂଆ ପରିବେଶରେ ପ୍ରକାଶିତ ହୋଇ ନୂଆ ରୂପ ପରିଗ୍ରହ କଲା । ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣରେ ଏହାର ପ୍ରକୃତି ପରିବର୍ତ୍ତିତ ହୋଇ ଯେଉଁ ଭାଷାର ମୂଳଭିତ୍ତି ସ୍ଥାପିତ ହେଲା, ତାହାହିଁ ହେଉଛି ଆଧୁନିକ ଓଡ଼ିଆ ଭାଷା । ବଳରାମ ଦାସ ସେହି ପଥର ପଥିକ ହେଲେହେଁ ତାଙ୍କ ବେଳକୁ ଯୁଗୀୟ ରୁଚିରେ ନୂଆ ଦିଗ୍‌ବଳୟ ଉନ୍ମୋଚିତ ହୋଇଥିଲା । ଦେଶରେ ବୈଷ୍ଣବଧର୍ମ ଏକ ଲୋକପ୍ରିୟ ମତ ରୂପେ ପ୍ରତିଷ୍ଠିତ ହେଉଥିଲା । ମୁସଲମାନ ଶାସକଙ୍କ ପ୍ରଭାବରୁ ଦେଶରେ ଏକ ନୂଆ ସଭ୍ୟତାର ଆଲୋକ ପ୍ରବେଶ କରୁଥିଲା । ସାହିତ୍ୟର ଆଦର୍ଶ ରୂପେ କେବଳ ସଂସ୍କୃତ ସାହିତ୍ୟର ପୂର୍ବସୂରୀମାନେ ସ୍ୱୀକୃତ ନ ହୋଇ ସୁଫି ମତ ପ୍ରଭାବିତ ପ୍ରେମାଖ୍ୟାନମୂଳକ କାବ୍ୟସବୁ ଲୋକପ୍ରିୟ ହେଲେ । ଜଗନ୍ନାଥ କ୍ଷେତ୍ରର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା କବିମାନଙ୍କୁ ନୂଆ ଉତ୍ସାହ ଓ ଉଦ୍ଦୀପନା ଦେବାରେ କମ୍ ସାହାଯ୍ୟ କରିନଥିଲା । ଏହିସବୁ କାରଣରୁ ବଳରାମ ଦାସଙ୍କ ରଚନାରେ ବହୁ ନୂଆ କଳ୍ପନା ଓ ଯୋଜନା ପ୍ରବେଶ କଲା, ଯାହାକି ପୂର୍ବ ସାହିତ୍ୟରେ ନଥିଲା ।

ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀବେଳକୁ ସମସ୍ତ ଭାରତୀୟ ଭାଷାରେ ତତ୍ସମ ଶବ୍ଦରାଜି ପ୍ରତି ଆଦର ବୃଦ୍ଧି ପାଇଥିଲା । କବିମାନେ ଅପଭ୍ରଂଶ ଭାଷାର ଶବ୍ଦରାଶି

ଅପେକ୍ଷା ତତ୍ସମ ଶବ୍ଦ ସବୁର ପ୍ରୟୋଗ ପ୍ରତି ବିଶେଷ ସଚେତନ ଥିଲେ । ତେବେ ଈଶସ୍ତୁତି, ଅପ୍ରସ୍ତୁତ ଯୋଜନା ଓ ଦର୍ଶନର ବ୍ୟାଖ୍ୟାପରି କେତେକ ନିର୍ଦ୍ଦିଷ୍ଟ ଅଂଶରେ ସେମାନେ ତତ୍ସମ ଶବ୍ଦର ବ୍ୟବହାର କରୁଥିଲେ । ବଳରାମ ଦାସ ମଧ୍ୟ 'ଜଗମୋହନ ରାମାୟଣ'ରେ ଏହି ସାହିତ୍ୟିକ ପରମ୍ପରାକୁ ଅନୁସରଣ କରିଛନ୍ତି ।

ବଳରାମ ଦାସ ପ୍ରତ୍ୟେକ କାଣ୍ଡକୁ ଈଶସ୍ତୁତି ବା ବନ୍ଦନାରେ ଆରମ୍ଭ କରିଛନ୍ତି । ଏହିସବୁ ବନ୍ଦନାରେ ତତ୍ସମ ଶବ୍ଦରାଜିର ବହୁଳତା ପରିଦୃଷ୍ଟ ହୁଏ । ଉଦାହରଣ ରୂପେ ଆଦିକାଣ୍ଡର ଜଗନ୍ନାଥ ବନ୍ଦନାକୁ ଗ୍ରହଣ କରାଯାଇ ପରେ-

ବନ୍ଦଇ ଜଗନ୍ନାଥ କମଳାଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା
କି ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।

ସ୍ତୁତି ବା ବନ୍ଦନାପରି ଅପ୍ରସ୍ତୁତ ଯୋଜନାରେ ବହୁ ତତ୍ସମ ଶବ୍ଦର ବ୍ୟବହାର କରାଯାଇଛି । ରୂପ ଚିତ୍ରଣ କଲାବେଳେ କବି ପରମ୍ପରାରୁ ଯେଉଁସବୁ ଉପମାନର ସଂଗ୍ରହ କରିଛନ୍ତି, ସେ ସବୁର ସମାବେଶରେ ବର୍ଣ୍ଣନା ପ୍ରାୟ ସଂସ୍କୃତମୁଖୀ ହୋଇଯାଇଛି । ଯେପରି-

ନାଭିଗଭୀର କି ନଦୀର ଭଉଁରୀ
କଟିଭାଗ ଶୋଭା ନୁହଇ ପଟାନ୍ତରୀ ।
ମଦନ ଶୋଭା ସିଂହାସନ କି ସେ
ଜାନୁ ଉଲଟ କଦଳୀ ଜାଣି ଦିଶେ ।
ଚରଣ ଅଙ୍ଗୁଷ୍ଠି ଓଶେକ କଡ଼ି ଆଭା
ପାଦପଦ୍ମ ତଳି ଅଳତା ରଙ୍ଗପ୍ରଭା ।

'ଜଗମୋହନ ରାମାୟଣ'ର ନିର୍ଦ୍ଦିଷ୍ଟ କେତେକ ଅଂଶରେ ତଦ୍‌ସମ ଶବ୍ଦର ବହୁଳତା ଥିଲେ ହେଁ, ତଦ୍ଭବ ଶବ୍ଦରାଜି ପ୍ରତି କବିଙ୍କର ମୋହ ଅଧିକ ଥିଲା । ଏହି ସବୁ ଶବ୍ଦର ପ୍ରୟୋଗରେ ତାଙ୍କ ଭାଷା ଏକ ନୈସର୍ଗିକ ସୁଷମା ଦ୍ୱାରା ବିମଣ୍ଡିତ ହୋଇଥିଲା । ସେ ସଂସ୍କୃତ ଶବ୍ଦ ସବୁକୁ ଓଡ଼ିଆ ଛାଞ୍ଚରେ ଢାଳି ଦେଇ ଓଡ଼ିଆ ଭାଷାର ପରିବେଶରେ ପ୍ରକାଶ କଲେ । ତତ୍ସମ ଶବ୍ଦ ସବୁ ନିଜର ଆଡ଼ମ୍ବର ଲୋପ କରି ସହଜ, ସରଳ, ସୁନ୍ଦର ଓ କର୍ଣ୍ଣପ୍ରିୟ ରୂପରେ ଆତ୍ମପ୍ରକାଶ କରି, ଓଡ଼ିଆ ଚଳଣିର ସଂପୂର୍ଣ୍ଣ ଅନୁକୂଳ ହୋଇଗଲା । ଉଦାହରଣ ପାଇଁ ନିମ୍ନରେ କେତେକ ପଦ ଉଦ୍ଧାର କରାଯାଇଛି-

(୧) ଯେଥିର ମଧ୍ୟେ ତିନିହେଁ ମୋକ୍ଷପାନ - ମୁଖ୍ୟ

(୨) ଘରେ ଘରେ ବିଜୟେ କି ସାହେର କୁମାରୀ - ସାଗର
(୩) କୂପ ବାମ୍ପି ବହୁତ ଅଛଇ ପୋଖରୀ - ପୁଷ୍କରିଣୀ
(୪) ସୁବନ୍ୟରେ ପ୍ରତିମା ପିତୁଳି କମଗଢ଼ି - ସୁବର୍ଣ୍ଣ
(୫) ମେଢ଼ ମଣ୍ଡପ ଅଟ୍ଟାଳି ଜଗତି - ଅଟ୍ଟାଳିକା

ମୋକ୍ଷପାନ, ସାହେର, ପୋଖରୀ, ସୁବନ୍ୟ, ପରିଛାମୁ (ସମ୍ମୁଖ), ଆକ୍ରୋଛିଣ (ଆକର୍ଷି), ନିର୍ଭାଇ (ନିର୍ବାହ), ଆଛାନ (ଆଖ୍ୟାନ), ଖମ୍ବ (ସ୍ତମ୍ଭ), ମୁକୁତା (ମୁକ୍ତା) ହିଆ (ହୃଦୟ), ରାଉତ (ରାଜପୁତ୍ର), ପଡ଼ିହାରୀ (ପ୍ରତିହାରୀ), ଅପଛରୀ (ଅପସରୀ) ଜଉତିଷ (ଜ୍ୟୋତିଷ) ଇତ୍ୟାଦି ତଦ୍ଭବ ଶବ୍ଦ ସମାବେଶରେ 'ଜଗମୋହନ ରାମାୟଣ' ସମୃଦ୍ଧ ।

ତତ୍ସମ ଓ ତଦ୍ଭବ ଶବ୍ଦର ପ୍ରଚୁରତା ମଧ୍ୟରେ ବଳରାମ କେତେକ ଦେଶଜ ଶବ୍ଦର ବ୍ୟବହାର କରିଛନ୍ତି । ସଂଖ୍ୟାରେ କମ୍ ହେଲେବି ସେ ସବୁରୁ କବିଙ୍କର ବୈଶିଷ୍ଟ୍ୟ ଜାଣିହୁଏ । ତନ୍ମଧ୍ୟରୁ କେତେକ - ଡେଣୁକି, ଡେକୁ ଡେକୁ, ନାହାଇବେଲି, ଆଢ଼ୋ ଆଢ଼ୋ, ତଡ଼କି, ଝଡ଼ା ହୁଳହୁଳି, ଖୋରା, ଖୋରି, ମୁଣ୍ଡା, ନାକୁଆ, କତିକତା, ଭୁଡ଼ଙ୍ଗିଆ, ସଉଲୁଣି, ପରିମୁଣ୍ଡା, ଗୁଳୁଗୁଞ୍ଚା, ଅଚାରୁଆ, ଉଭୁରାଉଭୁରି ।

ସାରଳା ଦାସଙ୍କ ସଦୃଶ ବଳରାମଙ୍କ ରଚନାରେ କେତେକ ବିଦେଶୀ ଶବ୍ଦ ପରିଦୃଷ୍ଟ ହୋଇଥାଏ । ସେଥିମଧ୍ୟରୁ କେତେକ ଆରବୀ ଓ କେତେକ ପାର୍ସୀ । ସାଧାରଣତଃ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗକୁ 'ଜଗମୋହନ ରାମାୟଣ'ର ରଚନାକାଳ ରୂପେ ଗ୍ରହଣ କରାଯାଇଥାଏ । ସେତେବେଳକୁ ଓଡ଼ିଶାରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇ ନ ଥିଲେ ହେଁ ମୁସଲମାନ ନବାବଙ୍କ ବିଭବ ଓ ମୁସଲମାନ ସଂସ୍କୃତିର ବିଭିନ୍ନ ଉପାଦାନ ବିଭିନ୍ନ ସୂତ୍ରରେ ଦେଶରେ ପ୍ରବେଶ କରିପାରିଥିଲା । ମୁସଲମାନମାନେ ବହୁଭାବେ ଏ ଦେଶକୁ ଆସିଥିଲେ । କେହି ହୁଏତ ଆସିଥିଲେ ବେପାର ବାଣିଜ୍ୟ କରିବା ପାଇଁ, କେହି ହୁଏତ ଆସିଥିଲେ ଜୀବନ ନିର୍ବାହର ଅନ୍ୟ ପନ୍ଥା ଘେନି । କପିଳେନ୍ଦ୍ରଙ୍କ ସେନାବାହିନୀରେ ଖାଁ ଉପାଧିଧାରୀ କେତେକ ସୈନ୍ୟଙ୍କୁ ଦେଖିବାକୁ ମିଳିଥାଏ । ଏହିପରି ଭାବେ ସେମାନଙ୍କ ସମାଜରେ ପ୍ରଚଳିତ କେତେକ ଶବ୍ଦ ଓଡ଼ିଆ ସାମାଜିକ ଚଳଣିକୁ ପ୍ରଭାବିତ କରିଥିଲା । ଦେଶରେ ଆବର୍ଭୂତ ହୋଇଥିବା ଏହି ନୂଆ ଶକ୍ତି ପ୍ରତି ଜଣେ ସଚେତନ କବି ଭାବେ ବଳରାମ ମଧ୍ୟ ସଜାଗ ଥିଲେ । ସେଥିପାଇଁ ଦଶରଥଙ୍କ ପୁତ୍ରେଷ୍ଟି ଯାଗକୁ ଆସିଥିବା ବହୁ ରାଜାଙ୍କ ମଧ୍ୟରେ ସେ ଗଣନା କଲେ "ମୁଗଲ କୁଚରାୟ ।"

ବାବରଙ୍କ ମୋଗଲ ସାମ୍ରାଜ୍ୟ ୧୫୨୬ରେ ପ୍ରତିଷ୍ଠିତ ହୋଇଥିଲେ ହେଁ ମୋଗଲ ଜାତିର କାହାଣୀ ତାଙ୍କର ବହୁ ପୂର୍ବରୁ ଏ ଦେଶରେ ପ୍ରଚାରିତ ହୋଇସାରି ଥିଲା । ସେଥିପାଇଁ ଅସ୍ୱାଭାବିକ ହେଲେ ହେଁ ହିନ୍ଦୁ ରଜାଙ୍କ ମଧ୍ୟରେ ମୁଗଲଙ୍କୁ ଗଣିବାରେ ବଳରାମଙ୍କୁ ଅସୁବିଧା ହୋଇନାହିଁ । କେବଳ 'ମୁଗଲ' ଓ 'କୁଚ' ନୁହେଁ, ଦରହାସ ଅସଭାବ, ଗିଲିମି

(କୋମଳ), ତର୍କସ, କମାଣ ଓ ପଇଡି ପ୍ରଭୃତି ଶବ୍ଦ ଦେଖିବାକୁ ମିଳିଥାଏ । ଦରହାସ ଓ ପଇଡି ଶବ୍ଦ ବ୍ୟତୀତ ଅନ୍ୟାନ୍ୟ ସବୁ ଯୁଦ୍ଧ ସହିତ ସଂପୃକ୍ତ । 'ପଇଡି' ମସଲାଦିଆ ଡ଼ାଲି ।

ବଳରାମଙ୍କ ଜୀବନ୍ତ ଭାଷାର ଏକ ବୈଶିଷ୍ଟ୍ୟ ହେଉଛି, ତାଙ୍କ ପ୍ରଯୁକ୍ତ ଅନୁକରଣାତ୍ମକ ଶବ୍ଦମାଳା । ଆଦି କି ଅଯୋଧ୍ୟାରେ ନୁହେଁ, ଲଙ୍କାକାଣ୍ଡରେ ଏସବୁ ଶବ୍ଦର ହଟଗୋଳ ଶୁଣିବାକୁ ମିଳିଥାଏ । ବୀରମାନଙ୍କ ହୁଙ୍କାରରେ ରଣଭୂମି ଯେତେବେଳେ ମୁଖରିତ ହୋଇଉଠେ, ସେତେବେଳେ ବାଦ୍ୟର ସମବେତ ଧ୍ୱନି ଯୁଦ୍ଧର ବିଭିଷିକାକୁ ଆହୁରି ବୃଦ୍ଧି କରେ । କବି ରଣଭୂମିର ସେହି ଦୃଶ୍ୟକୁ ପାଠକ ସମ୍ମୁଖରେ ରଖିବାପାଇଁ ବ୍ୟବହାର କରନ୍ତି-ଦିମିଦିମି,ଧୁମୁଧୁମୁ,ଗୁମୁଗୁମୁ,କିଣିକିଣି,କପକପ,ଝୁଣୁଝୁଣୁ, ଘୂମୁଘୂମୁ,ଝଣଝଣ,ଝମଝମ,ଟହଟହ,ଚଡ଼ଚଡ଼,ଭଡ଼ଭଡ଼,ଘାଉଘାଉ,କଟକଟ ପ୍ରଭୃତି କେତେକ ଶବ୍ଦ ।

ଅନୁକରଣାତ୍ମକ ଶବ୍ଦ ପରି ବୀପ୍‌ସାତ୍ମକ ଶବ୍ଦ ପ୍ରୟୋଗରେ ଭାଷାର ସୌଷ୍ଠବ ବୃଦ୍ଧିପାଏ ତଥା ଭାଷାରେ ଗତିମୟତା ଆସେ । 'ରାମାୟଣ'ର ଆଦି, ଅଯୋଧ୍ୟା, ଆରଣ୍ୟକ ଓ ସୁନ୍ଦରାକାଣ୍ଡରେ ଏସବୁ ଶବ୍ଦ କେବଳ କେତେକ ସ୍ଥାନରେ ବ୍ୟବହୃତ ହୋଇଥିବାବେଳେ ଲଙ୍କାକାଣ୍ଡର ସମର ବର୍ଣ୍ଣନାରେ ଏହାର ବହୁଳତା ପରିଦୃଷ୍ଟ ହୁଏ । ବୋଧହୁଏ ରଣଭୂମିକୁ ଅଧିକ ଗତିଶୀଳ ଓ ବର୍ଣ୍ଣନାକୁ ବୀରରସ ବ୍ୟଞ୍ଜିତ କରିବା ପାଇଁ କବି ବଳରାମ ସଚେତନ ଭାବେ ଏହିସବୁ ଶବ୍ଦ ବ୍ୟବହାର କରିଛନ୍ତି । ଏସବୁ ଶବ୍ଦର ପ୍ରଭାବ ଆଦିକାଣ୍ଡରେ ନମ୍ର ଥିବାବେଳେ ଲଙ୍କାକାଣ୍ଡରେ ଉଗ୍ର ହୋଇଯାଇଛି । ଆସଆସ,ଧାଁଅଧାଁଅ,ଯାଅଯାଅ ପ୍ରଭୃତି ବୀପ୍‌ସାତ୍ମକ ଶବ୍ଦର ବାରମ୍ବାର ଉଚ୍ଚାରଣ ରଣଭୂମିର କୁହାଟ କରି ପାଠକକୁ ବିକ୍ଷୁବ୍ଧ କରିଦିଏ । ଆଦିକାଣ୍ଡରୁ କେତେକ ଉଦାହରଣ ପ୍ରଦତ୍ତ ହେଲା - ଛନଛନ, ତେକୁତେକୁ,ଆସିବୁଆସିବୁ,ଦେଖଦେଖ, ମନେମନେ, ଦମଦମ, ତରତର, ଉଠଉଠ, ଆସଆସ,ଗହଗହ,ଠାବେଠାବେ, ତେତେତେତେ, ଲାଜଲାଜ,ଘନଘନ, ଜୟେଜୟେ, ହେଳୁହେଳୁ, ପଙ୍କ୍ତିପଙ୍କ୍ତି, ହସହସ, ଧରଧର, ମାରମାର, ଚାଲଚାଲ, ଧୀରଧୀର, ସତ୍ୟସତ୍ୟ, ଆଣଆଣ, ଧନ୍ୟଧନ୍ୟ, ଯେବଣଯେବଣ ।

ଏହିପରି ଆଉ ଗୋଟିଏ ପ୍ରୟୋଗ ହେଉଛି ରାମାୟଣର ଯୁଗ୍ମ ଶବ୍ଦମାଳା । କ୍ରିୟାବାଚକ ବିଶେଷ୍ୟ ଓ ଅସମାପିକା କ୍ରିୟାସଂଯୋଜିତ ହୋଇ ଏସବୁର ସୃଷ୍ଟି । ବୀପ୍‌ସାତ୍ମକ ଶବ୍ଦପରି ଏସବୁ ମଧ୍ୟ ବର୍ଣ୍ଣନାକୁ ଗତିଶୀଳ କରାଏ । 'ଜଗମୋହନ ରାମାୟଣ'ରେ ବିଶେଷକରି ଲଙ୍କାକାଣ୍ଡରେ ଏପରି ଯୁଗ୍ମ ଶବ୍ଦର ବହୁଳତା ପରିଦୃଷ୍ଟ ହୁଏ ।

ଉଭୁରାଉଭୁରି, ଉଠାଉଠି, କୋହାକୋହି, କୋଡ଼ାକୋଡ଼ି, ଗଡ଼ାଗଡ଼ି, ଘଞ୍ଚାଘଞ୍ଚ, ଘଷାଘଷି, ଚାହାଁଚାହିଁ, ଛଡ଼ାଛଡ଼ି, ଜଣାଜଣି, ଟଙ୍କାଟଙ୍କି, ଠେଲାଠେଲି, ଧରାଧରି,

ପଣାପଣି, ପିଟାପିଟି, ପେଲାପେଲି, ପୁଛାପୁଛି, ବଣ୍ଟାବଣ୍ଟି, ଭେଟାଭେଟି, ମଡ଼ାମଡ଼ି, ମରାମରି, ମିଶାମିଶି, ଯନ୍ତାଯନ୍ତି, ହାବୋଡ଼ାହାବୋଡ଼ି ।

ବୀପ୍‌ସାରେ ପୁନରୁକ୍ତି ହୁଏ, ଏଥିରେ କେବଳ ଗୋଟିଏ ଶବ୍ଦ ଦୁଇଥର ବ୍ୟବହୃତ ହୋଇଥାଏ, ଅଥଚ ପୁନରୁକ୍ତିରେ ଗୋଟିଏ ଶବ୍ଦ ବହୁଥର ଆସେ । ଏହାକୁ ସାଧାରଣତଃ କାବ୍ୟର ଦୋଷରୂପେ ପରିଗଣନା କରାଯାଉଥିଲେ ହେଁ, କେତେକ ଆଳଙ୍କାରିକ ଏହାକୁ ଗୁଣ ରୂପେ ଗ୍ରହଣ କରିଛନ୍ତି । ହିନ୍ଦୀକବି ଭିକାରୀଦାସ ଏ ବିଷୟରେ ନିଜର ମନ୍ତବ୍ୟ ଦେଇ ଲେଖିଛନ୍ତି-

ଏକ ଶବ୍ଦ ବହୁବାର ଜହିଁ, ପରେ ରୁଚରଣ ଅର୍ଥ
ପୁନରୁକ୍ତୀ ପରକାଶ ଗୁନ, ବରନେଂ ବୁଦ୍ଧି ସମର୍ଥ ।

ବଳରାମ ରାମାୟଣର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ଅନେକ ସ୍ଥଳରେ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରିଛନ୍ତି । ଏହା କେତେବେଳେ ପଦର ଆଦ୍ୟରେ ଆସିଛି ଓ କେତେବେଳେ ମଧ୍ୟ ଭାଗରେ । ଆଦିକାଣ୍ଡରୁ ଏହି ପ୍ରକାର ପ୍ରୟୋଗର କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

'ସହସ୍ର'କୁ ଆଦ୍ୟ ଓ ମଧ୍ୟଭାଗରେ ରଖି-

ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି
ସହସ୍ରେ କର ସହସ୍ରେ ସୂର୍ଯ୍ୟ ଜ୍ୟୋତି ।
ସହସ୍ରେକ ଶିର ସହସ୍ରେ ଲୋଚନ
ସହସ୍ରେ କୋଟି ଯୁଗ କଳାକ ବିମୋଚନ ।
ସ୍ୱୟମ୍ଭୁ ମୁନି ସହସ୍ରେ ସୃଷ୍ଟି ଅଛେ ତ୍ରିଦଶ
ଦ୍ୱାଦଶ ଅଙ୍ଗୁଳି ଯେ ବେଦାନ୍ତ ପୁରୁଷ ।

'ଅପୁତ୍ରିକ'କୁ ଆଦ୍ୟରେ ରଖି-

ଅପୁତ୍ରିକ ମୁଖ ଚାହିଁ ନ ଯୋଗାଇ
ଅପୁତ୍ରିକ ଲୋକର ଅନ୍ନ ହିଁ ନଖାଇ ।
ଅପୁତ୍ରିକ ସଙ୍ଗେ ନୋହିବ ସଦଗୋଷ୍ଠୀ
ଅପୁତ୍ରିକ ବାପୁଡ଼ା ଅଟଇ ପରମ କଷ୍ଟୀ ।

ଏହିପରି 'ପୁତ୍ର', 'କାହାର', 'କେ', 'କେହୁ', 'କେବଣ', 'ଲକ୍ଷେକ', 'ଯେ', 'ପୁଣି', 'ଆମ୍ଭ ବା ଆମ୍ଭର', 'କାହିଁ', 'ଯାହାକୁ', 'ଯେ', 'ତାହା', 'କେ ବୋଲଇ' ପ୍ରଭୃତିକୁ ଆଦ୍ୟରେ ରଖି ବାରମ୍ବାର ବ୍ୟବହାର କରାଯାଇଛି ।

କୌଣସି ନିୟମ ନରଖି 'ସାନ'ର ବ୍ୟବହାର :

ସାନ ବୋଲିଣ କି ଅଭରସା କର ।
ଅଗସ୍ତିଟି ସାନ ଶୋଷିଲା ସିନ୍ଧୁ ସାତ
ପ୍ରହଲ୍ଲାଦ ସାନ ପ୍ରସନ୍ନ କଲା ପଦ୍ମନେତ୍ର ।
ବାମନ ଯେ ସାନ ବଳିକି ଚାପିଲା
ଧ୍ରୁବ ସାନପୁଅ ବିଷ୍ଣୁକୁ ଦୋଷ କଲା
ଭାଗୀରଥି ସାନ ଗଙ୍ଗାକୁ ବୁହାଇଲା ।
କିମ୍ପା ଏହାକୁ ହୋ କହ ତୁମ୍ଭେ ସାନ
ଧାତା ଜାଣିଲଇଂ ଯେ ଯହିଂକି ଭାରଜନ ।

କଥା କହିବା ପାଇଁ ପରିଗଣନାତ୍ମକ ଶୈଳୀ ଥିଲା କବି ବଳରାମଙ୍କର ଶ୍ରେଷ୍ଠ ଆୟୁଧ । କେବଳ କାନନ, ରାଜକୀୟ ବିଭବ, ନଗର ସ୍ତୁତି ଓ ଅପ୍ରସ୍ତୁତ ଯୋଜନା କଲାବେଳେ ନୁହେଁ, ସବୁ ପ୍ରକାର ବର୍ଣ୍ଣନାର ଏହା ଥିଲା ଏକ ସାଧାରଣ ପଦ୍ଧତି । ଜଣକୁ, ବା କେବଳ ଗୋଟିଏ ବସ୍ତୁର କଥା ନ କହି କବି ଏକାବେଳକେ ସମସ୍ତଙ୍କୁ ସଜେଇ କରି କହୁଥିଲେ । ଏହି ପ୍ରକାର ଶବ୍ଦ ଯୋଜନା ପାଠକକୁ ଘଟଣା ପ୍ରତି ବିଶେଷଭାବେ ଆକୃଷ୍ଟ କରୁଥିଲା ଏବଂ ପାଠକ ହୃଦୟରେ ଘଟଣାର ଏକ ସ୍ପଷ୍ଟ ରେଖା ଅଙ୍କିତ କରୁଥିଲା । ଉଦାହରଣ ପାଇଁ ନିମ୍ନରେ କେତେକ ପଂକ୍ତି ସଂଗୃହୀତ କରାଯାଇଛି:

(୧) ମଣିଷ ସମାଜର ସଦ୍‌ଗୁଣାବଳୀ-
ଧାର୍ମିକ କୁଶଳ ହୋଇବେ ଶାନ୍ତିଶୀଳ
ସୁଜନ ସୁବୁଦ୍ଧି ହୋଇ ଉଧରିବେ କୁଳ ।

(୨) ଅଳଙ୍କାରର ଗଣନା-
କଟି ପାଟ ଡୋର ଘାଘୁଡ଼ି ଘଣ୍ଟି ଗୁଛା
ବାହେଣ ବାହୁଟି ଗଳାରେ ସୁନା ସୂତା । ଆଦି,

(୩) ବାଦ୍ୟ-
ଢୋଲ ଦମା ଟମକ ବାଜଇ ବୀର ତୂର
ଶଙ୍ଖ ମହୁରୀ ଭେରୀ ଯନ୍ତ୍ର ସପତ ସ୍ୱର ।
କମ କାହାଳ ବିଜିଘୋଷ ଶବ୍ଦ
ତାଳ ତାଳି ଘଣ୍ଟ କଂସାଳ ଶବଦ ।
ବାଜନ୍ତି ମର୍ଦ୍ଦଳ ବାଜନ୍ତି ବାଉଁଶି
ନାଚନ୍ତି ନାଚୁଣୀ ଅପଛରୀ ମିଶି ।

ନୀତିବାକ୍ୟର ସଂଯୋଜନା ପୁରାଣ ରଚନାର ଏକ ବିଶିଷ୍ଟ ଶୈଳୀ । କଥା ମଝିରେ ନୀତିବାକ୍ୟ ପଢ଼ଣ ରଖିବା ଦ୍ୱାରା କଥାର ଗାମ୍ଭୀର୍ଯ୍ୟ ବୃଦ୍ଧି ପାଇଥାଏ । ସାଧାରଣତଃ

ଅନ୍ୟାକୁ ଉପଦେଶ ଦେବାବେଳେ ଏ ସବୁର ବ୍ୟବହାର ବଳରାମଙ୍କ ରଚନା ଶୈଳୀର ଏକ ସାଧାରଣ ରୀତି :

(୧) ବାଦ ବିବାଦ ଯେ ବଢ଼ାଇଲେ ବଢ଼ଇ
ନାଶ କଥାମାନ ଛଡ଼ାଇଲେ ଛାଡ଼ଇ ।

(୨) ରହି ଯୁଦ୍ଧ କଲେ ଶତ୍ରୁକୁ ହୋଯେ ଜିଣି ।

(୩) ବାବୁ ଦୁଷ୍ଟ ଜନକଇ ନାଶିଲେ ଧର୍ମପାଇ ।

(୪) ଯେତେବେଳେ ଯାହାକୁ ଅଛଇଯେଉଁ ଯୋଗ
କାଳ ପ୍ରାପତ ଜାଣି ବିଧାତା କରାଇ ଭୋଗ ।

(୫) ଧରି ମାଇଲେ ଚାତ ସିଧ ହିଂ ହାଦେ ମରି ।

(୬) ପରକୁ ବୁଧି ଦେଇ ତିଆରୁ ଅନେକ
ଏବେ ତୁ ଆପଣେ ଛାଡ଼ିଲୁ ବିବେକ ।

(୭) ମଦର୍ହି ଭଲ ହୋଇ କରାଇଲେ ଭୟେ ।

(୮) କର୍ମକୁ ଜିଣନ୍ତା ନାହିଁ ଯେ ତ୍ରିଦଶ ।

(୯) ନିଦ୍ରାଗଲା ପ୍ରାଣୀର କିସ ଅବା ବଳ ।

(୧୦) ଅମର ହୋଇଲା ଲୋକ ତାହାର ସୁଖେ ଥିବ
ସଂଗ୍ରାମ କଲେ କି ଅନ୍ୟାୟେ ପାର ଯିବ ।

(୧୧) ଯାଗଯଜ୍ଞ ଜପ ତପ ଦାନ ଧର୍ମ
ଯେତେ ଝିଙ୍ଗାସତେ ପାଇ ପାକକର୍ମ ।

(୧୨) ପୂର୍ବେ ଯାହା କରି ଏବେ ତାହା ଭୁଞ୍ଜି ।

ପରମ୍ପରାକୁ ଅନୁସରଣ କରି ବଳରାମ ବିଭିନ୍ନ ପ୍ରକାରର ଶବ୍ଦକୁ ବିଭିନ୍ନଭାବେ ନିଜ ଗ୍ରନ୍ଥରେ ବ୍ୟବହାର କରିଥିଲେ ହେଁ ଏସବୁ ପ୍ରୟୋଗରୁ ତାଙ୍କ ନିଜସ୍ୱ ଶୈଳୀ ଜାଣିହୁଏ ନାହିଁ । ତାଙ୍କ ସମୟର ଅନ୍ୟାନ୍ୟ ଓଡ଼ିଆ କବି ଏପରିକି ଉତ୍ତର ଭାରତର କବି ଜାୟସୀ, ସୁର ଓ ତୁଳସୀ ମଧ୍ୟ ଏହି ସବୁ ପ୍ରୟୋଗ ପଦ୍ଧତିକୁ ନିଜ ଗ୍ରନ୍ଥରେ ଗ୍ରହଣ କରିଛନ୍ତି । ଶବ୍ଦ ପ୍ରୟୋଗର ଏହି ପରମ୍ପରାନୁଗତ ଶୈଳୀ ବ୍ୟତୀତ କାବ୍ୟ ମଧ୍ୟରେ ପ୍ରତ୍ୟେକ କବିଙ୍କର ଏକ ସ୍ୱକୀୟ ପ୍ରକାଶ ଭଙ୍ଗୀ ଥାଏ ଓ ସେଇଥିରୁ କବିଙ୍କ ବ୍ୟକ୍ତିତ୍ୱକୁ ଚିହ୍ନିହୁଏ । ନିମ୍ନରେ ବଳରାମଙ୍କ ଭାଷା ପ୍ରୟୋଗ ମଧ୍ୟରୁ ତାଙ୍କର ସ୍ୱକୀୟତାକୁ ଜାଣିବା ପାଇଁ ପ୍ରଚେଷ୍ଟା କରାଯାଇଛି ।

ସାରଳା ଦାସଙ୍କ ମହାଭାରତର ଛନ୍ଦ ପରି ବଳରାମଙ୍କ ରାମାୟଣର ଛନ୍ଦ ଥିଲା ଦାଣ୍ଡୀ । ବଳରାମଙ୍କ ଦାଣ୍ଡୀବୃତ୍ତ ୧୧ରୁ ୧୫ ଅକ୍ଷର ମଧ୍ୟରେ ସୀମିତ । ପ୍ରତ୍ୟେକ ପାଦରେ ୩ଟିରୁ ୭ଟି ପର୍ଯ୍ୟନ୍ତ ଶବ୍ଦ । ପୁଣି ଏହିସବୁ ଶବ୍ଦକୁ କବି ଏପରି ଭାବେ

ସଜାଉଥିଲେ ଯେ ପ୍ରତ୍ୟେକ ପାଦକୁ ଭାବାଭିବ୍ୟକ୍ତି ଦୃଷ୍ଟିରୁ ଦୁଇଟି ସମାନ ଅଂଶରେ ବିଭକ୍ତ କରିଦେଲେ କିଛି ଅସୁବିଧା ହୁଏ ନାହିଁ । ପାଦର ମଝିରେ ବିରାମ ଦେଇ ପାଠକଲେ ପଦର ଭାବ ଆହୁରି ସ୍ପଷ୍ଟଭାବେ ଅଭିବ୍ୟକ୍ତ ହୁଏ । ଏହି ବିରାମ ପ୍ରକ୍ରିୟାକୁ ଆହୁରି ସ୍ପଷ୍ଟ କରିବା ପାଇଁ କବି ଅନୁପ୍ରାସର ସାହାଯ୍ୟ ନେଉଥିଲେ । ନିମ୍ନରେ ପ୍ରଦତ୍ତ କେତେକ ଉଦାହରଣରୁ ଏହା ଜାଣିହେବ ।

(କ) ବିଭାଣ୍ଡେକ ବାଳ / ଚିତ୍ତ ସମାକୁଳ ।
(ଖ) ନୁହଇ ପୁରୁଷ / ନୁହଇ ମୁହିଂ ଯତି ।
(ଗ) ବାହାରକୁ ନଦିଶଇ / ଭିତରକୁ ଉହାଡ଼ି ।
(ଘ) କେବଣ ବିଳାସୁଣୀ / ବିଞ୍ଚନ୍ତି ବିଞ୍ଚଣୀ ।
(ଙ) ଦୁଧ ଶାକର / ବିବିଧ ପରକାର ।
(ଚ) କର ଅନୁଗ୍ରହ / ନକର ନିରାଶ ।
(ଛ) ଟେଳା ମାଇଲେ କି / ଟଳଇ ପରବତ ।

'ଜଗମୋହନ ରାମାୟଣ'ର ଏହା ଏକ ବିଶିଷ୍ଟ ପ୍ରକାଶଭଙ୍ଗୀ ହେଲେ ହେଁ ବେଳେବେଳେ ଏଥିରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଅର୍ଥାତ୍ ଅନୁପ୍ରାସ ନ ଥାଇ ମଧ୍ୟ ଭାବାଂଶ ଦୃଷ୍ଟିରୁ ପାଦ ସବୁକୁ ଦୁଇଭାଗରେ ବିଭକ୍ତ କଲେ ଅସୁବିଧା ହୁଏ ନାହିଁ ।

(କ) ପାଣି ଆଣନ୍ତେଣ ତାକୁ / ଦେଖିଲାକ ବାଳୀ ।
(ଖ) ପାପ ଆକ୍ରୋଶିଲା / ମଦନ ମନେ ବ୍ୟାପୀ ।

ସାରଳା ମହାଭାରତର ଦାଣ୍ଡୀବୃତ୍ତକୁ ନିରୀକ୍ଷଣ କଲେ ବଳରାମଙ୍କ ବୈଶିଷ୍ଟ୍ୟ ଆହୁରି ସ୍ପଷ୍ଟ ହୋଇଯାଏ । 'ନିର୍ବାତ କପଟର ପୁଷ୍ପରଥ ପକାଇଲା ସର୍ବଚ୍ଛେଦି' ବା 'ବରଷନ୍ତି ମେଘେ ଯେ ମୂଷଳ ଧାରା ପରମାଣେ' ବା 'ତାହା ଦେଖି ମେଘା ସହସ୍ରେକ ବିନ୍ଧିଲା ବୀର ପାର୍ଥେ', ମହାଭାରତର ଏହିସବୁ ପଂକ୍ତିରେ ବଳରାମଙ୍କ ସଦୃଶ ବିଭାଜନ ନାହିଁ ଏବଂ ପଂକ୍ତିକୁ ବିଭାଜନ କରିଦେଲେ ମଧ୍ୟ ତାହାର ସମତା ନ ରହି ପାରୁଥିବାରୁ ଭାବାଭିବ୍ୟକ୍ତିରେ କୌଣସି ସୁବିଧା ହୁଏ ନାହିଁ । ବଳରାମଙ୍କ 'ରାମାୟଣ'ରେ ବେଳେବେଳେ ଏହି ନିୟମରେ ବ୍ୟତିକ୍ରମ ପରିଲକ୍ଷିତ ହେଉଥିଲେ ହେଁ ଏହା ତାଙ୍କ ରଚନାଶୈଳୀର ସାଧାରଣ ନିୟମ ନୁହେଁ । ଏହାକୁ ବ୍ୟତିକ୍ରମ ଭାବରେ ହିଁ ଗ୍ରହଣ କରାଯାଇପାରେ । ଯେପରି- 'ମର୍ତ୍ତ୍ୟ ଲୋକେ ଭ୍ରଥ ଖଣ୍ଡେ ପୂର୍ବଦିଗ ଶେଷେ' ଭାବାଭିବ୍ୟକ୍ତି ଦୃଷ୍ଟିରୁ ପ୍ରତ୍ୟେକ ପାଦକୁ ଦୁଇ ଭାଗରେ ବିଭକ୍ତ କଲାବେଳେ ବଳରାମ କେତେକ ନିୟମ ଅନୁସରଣ କରୁଥିଲେ । ଉଦାହରଣ ରୂପେ 'ଦୁଇ' ଓ 'ଚାରି' ଅକ୍ଷରବିଶିଷ୍ଟ ଶବ୍ଦ ସବୁକୁ ଗ୍ରହଣ କରାଯାଇପାରେ । ୨+୪-୨+୪

ମାର ରାକ୍ଷସୀ କି / ଶୁଣ ନୃପବର ।

୨+୪-୪+୨

(କ) ଶୁଣ ରଘୁନାଥ / ପଚାରିଲୁ ଯିସ

(ଖ) ଆଜ ଯୁବତୀଙ୍କି / ପଟାନ୍ତର କରି

(ଗ) ଶୁଣି ରଘୁନାଥ / ଋଷିଙ୍କର ବାଣୀ

୪+୨-୪+୨

ପୁତ୍ରକଇ ଚିନ୍ତା / କର ମହାଋଷି

୪+୨-୪+୨

ଆକାଶେଣ ଶିର / ଲାଗିଲାକ ଯାଇ

୪+୨-୨+୨+୨

(କ) ଅବିକ୍ଷଣେ ଦାତା / ପାପପୁଣ୍ୟ ଦାନୀ

(ଖ) ଧଇର୍ଯ୍ୟେଣ ମେରୁ / ଦୁଃଖୀଜନ ବନ୍ଧୁ

(ଗ) ଦେବଙ୍କର ତୁଲେ / ଯୁଗେ ଯୁଗେ ଥାଇ

ସେହିପରି 'ତିନି' ଓ 'ଚାରି' ଅକ୍ଷର ବିଶିଷ୍ଟ ଶବ୍ଦ ମଧ କେତେକ ନିୟମ ଦେଇ ଗତି କରିଛି ।

୩+୪-୩+୪

ଦେଖିଣ କୃତ କୃତ / ହୋଇଲେ ତ୍ରିପୁରାରୀ

ସେବକ ନିମିତ୍ତେଣ / ଧାମନ୍ତି ଚକ୍ରଧାରୀ ।

ଏହି କ୍ରମ କେତେବେଳେ ଚାରି ତିନି, ଚାରି ତିନି, ତିନି ଚାରିରେ ପରିବର୍ତ୍ତିତ ହୋଇଛି ।

ଏଥି ମଧ୍ୟରୁ ବଳରାମଙ୍କର ପ୍ରିୟ ଥିଲା- ତିନି ତିନି ତିନି ଚାରି-

ଦେବେଣ ଦୁର୍ଲଭ / ମାନବେ ଅଗୋଚର ।
ଦେଖିତ ସୁଲଭ / ନୟନେ ଅଗୋଚର ।
ନୟନେ କଜ୍ଜଳ / ଶିରେଣ ଫୁଲଗଭା ।
କର୍ଣ୍ଣରେ ତଡ଼କୀ / ମଥାରେ ମଥାମଣି ।

ଏହି ଦୁଇ ଅଂଶର କ୍ରମ ପରିବର୍ତ୍ତନ କରି ମଧ ସେ ବ୍ୟବହାର କରୁଥିଲେ ।

ଗଳାରେ ଚାପସରି ନାସାରେ ବସଣି ।

ଏହିସବୁ ନିୟମକୁ ଶୈଳୀ ମଧରେ ଅନୁସରଣ କଲାବେଳେ ସାଧାରଣତଃ ପାଦର ଆଦ୍ୟରେ ବ୍ୟବହୃତ ହୋଇଥିବା ଶବ୍ଦ ସମସ୍ତ ପାଦକୁ ପ୍ରଭାବିତ କରିଥାଏ । ଯେପରି 'ଦୁଇ' ଅକ୍ଷର ବିଶିଷ୍ଟ ଶବ୍ଦ ପାଦର ଆଦ୍ୟରେ ରହିଲେ ଏହି ଜାତୀୟ ଶବ୍ଦ ପାଦ ମଧରେ ବହୁଳ ଭାବେ ବ୍ୟବହୃତ ହୁଏ ।

**ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦ:**

ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ ।
ସୃଷ୍ଟି ସର୍ଜନା ଦୁଃଖ ସୁଖ ଦାନେ ।

ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦ ସହିତ ଚାରିଅକ୍ଷର ବିଶିଷ୍ଟ ଶବ୍ଦର ଉଚ୍ଚାରଣ ଦୃଷ୍ଟିରୁ ସାମଞ୍ଜସ୍ୟ ଥିବାରୁ ଆଦ୍ୟରେ ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦ ଥିଲେ ଚାରି ଅକ୍ଷର ବିଶିଷ୍ଟ ଶବ୍ଦପାଇଁ ଅସୁବିଧା ହୁଏ ନାହିଁ । ସେହିପରି ଚାରିଅକ୍ଷର ବିଶିଷ୍ଟ ଶବ୍ଦ ମଧ୍ୟ ସହଜରେ ବ୍ୟବହୃତ ହୋଇଥାଏ ।

**ତିନି ଅକ୍ଷର ବିଶିଷ୍ଟ ଶବ୍ଦ:**

ପାଦର ଆଦ୍ୟରେ ତିନି ଅକ୍ଷର ବିଶିଷ୍ଟ ଶବ୍ଦ ରହିଲେ କବି ପାଦ ମଧ୍ୟରେ ପ୍ରାୟ ଏହି ଜାତୀୟ ଶବ୍ଦର ବହୁଳ ବ୍ୟବହାର କରିଥାନ୍ତି । ଯେପରି-

ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରୀ ।
ନବୃଦ୍ଧି ବିଶ୍ରାମ ସେ କଲାକ ମହୀଧର ।
ଶୁଣିଣ ସନ୍ତୋଷ ଯେ ହୋଇଲା ମହୀଧର ।

ବଳରାମ ଦାଣ୍ଡୀବୃତ୍ତ ୧୧ରୁ ୧୫ ଅକ୍ଷର ମଧ୍ୟରେ ସଂକୁଚିତ ଓ ପ୍ରସାରିତ ହେଉଥିବାରୁ ଏହି ନିୟମ ବେଳେବେଳେ ଅନୁସୃତ ହେଉ ନ ଥିଲେ ହେଁ ପ୍ରତ୍ୟେକ ପାଦକୁ ଭାବାଭିବ୍ୟକ୍ତି ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରି ପାଦର ଅକ୍ଷର ସଂଖ୍ୟାର ଆବଶ୍ୟକତା ଅନୁଯାୟୀ ସେ ଶବ୍ଦ ସଂଯୋଜନା କରୁଥିଲେ । ସାରଳା 'ମହାଭାରତ' ପରି ସେ ତାଙ୍କର ପଂକ୍ତିସବୁକୁ ଦୀର୍ଘ ନ କରି ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସୀମିତ ରଖୁଥିଲେ । ଫଳରେ ତାଙ୍କ ଦାଣ୍ଡୀବୃତ୍ତରୁ କଥାରସ ଅପେକ୍ଷା ସଙ୍ଗୀତର ସ୍ୱର ବେଶୀ ଶୁଣିବାକୁ ମିଳିଥାଏ ।

ଶୈଳୀର ଏହି ବୈଶିଷ୍ଟ୍ୟ ମଧ୍ୟ ଦେଇ ଗତି କଲାବେଳେ କେତେକ ଶବ୍ଦ ବଳରାମଙ୍କର ଅତି ପ୍ରିୟ ହୋଇଯାଇଛି। ସେଥିମଧ୍ୟରୁ ଦୁଇଟି ଶବ୍ଦ ହେଲା 'ଦିବ୍ୟ' ଓ 'ଚାରୁ' । କବି ଭଗବାନଙ୍କ କଥା କହିବାବେଳେ 'ଦିବ୍ୟ' ଶବ୍ଦକୁ ଯେପରି ବାରମ୍ବାର ପ୍ରୟୋଗ କରିଛନ୍ତି, ସେହିପରି ସୌନ୍ଦର୍ଯ୍ୟର ବର୍ଣ୍ଣନା କଲାବେଳେ 'ଚାରୁ' ଶବ୍ଦର ବ୍ୟବହାର କରିଛନ୍ତି । 'ଚାରୁ' ଶବ୍ଦର ପ୍ରୟୋଗରୁ କବିଙ୍କ ବ୍ୟକ୍ତିଗତ ଜୀବନର ସ୍ପର୍ଶ ମିଳୁଥିଲେ ହେଁ, ଏହା ଥିଲା ତାଙ୍କର ଜୀବନର ଆଦର୍ଶ । ସୁନ୍ଦର ମଧ୍ୟରେ ମଙ୍ଗଳର ସନ୍ଧାନ କରିବା ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ।



# ବଳରାମଙ୍କ ଦାର୍ଶନିକ ଚିନ୍ତାଧାରା

ବଳରାମ କେବଳ କବି ନଥିଲେ, ସେ ଥିଲେ ଷୋଡ଼ଶ ଶତାବ୍ଦୀ ଓଡ଼ିଶାର ଜଣେ ବିଶିଷ୍ଟ ଭକ୍ତ ତଥା ଦାର୍ଶନିକ। ତାଙ୍କ ଦାର୍ଶନିକ ଚିନ୍ତାଧାରାକୁ ପ୍ରକାଶ କରିବା ପାଇଁ ସେ ସ୍ୱତନ୍ତ୍ର ଭାବେ 'ବ୍ରହ୍ମାଣ୍ଡ ଭୂଗୋଳ' ପରି ଗ୍ରନ୍ଥ ରଚନା କରିଥିଲେ ହେଁ, ଏଥିରୁ ତାଙ୍କ ଜୀବନର ସବୁ କଥା ମିଳେ ନାହିଁ। ଏହା କେବଳ 'ଦେହ ବିଧି ତତ୍ତ୍ୱ' ପାଇଁ ରଚିତ। ଏହା କବିଙ୍କ ସାଧନା ମାର୍ଗର ପ୍ରଥମ ଅଙ୍ଗ ହେଲେ ବି ପ୍ରଧାନ ଅଙ୍ଗ ନ ଥିଲା। କବି ସୋପାନ ପରେ ସୋପାନ ଅତିକ୍ରମ କରି ଶେଷକୁ ମୋକ୍ଷ ପ୍ରାପ୍ତିକୁ ମଧ୍ୟ ତୁଚ୍ଛ ଜ୍ଞାନ କରିଥିଲେ। କବି ଶେଷକୁ କହିଲେ- ମୁଁ ଇଚ୍ଛାକଲେ ବୈକୁଣ୍ଠକୁ ଯାଇ ପାରିବି, କିନ୍ତୁ ବୈକୁଣ୍ଠ ପ୍ରାପ୍ତି ବଡ଼ କଥା ନୁହେଁ। 'ଭାବ ସମୁଦ୍ର'ରେ ସେହି କଥାକୁ ସେ ଅନ୍ୟ ଭାବରେ ପ୍ରକାଶ କଲେ।

ଭଗବାନଙ୍କ ସେବକ ଭାବେ ରହିବାହିଁ ଥିଲା କବିଙ୍କ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ। ଜଗନ୍ନାଥ ଥିଲେ ତାଙ୍କର ଏକମାତ୍ର ପ୍ରଭୁ। ତାଙ୍କରି ସେବକ ଭାବେ ତାଙ୍କରିଠାରେ ସଂପୂର୍ଣ୍ଣ ଆତ୍ମସମର୍ପଣ କରି ସେ ତାଙ୍କ ଜୀବନକୁ ସାର୍ଥକ କରିଥିଲେ। 'ଦେହ ବିଧି ତତ୍ତ୍ୱ'କୁ ଆରମ୍ଭ କରି ଭଗବାନଙ୍କ ସହ ଏକାକାର ହୋଇ ଯିବା ପର୍ଯ୍ୟନ୍ତ କବିଙ୍କ ଜୀବନ ବହୁ ସ୍ତର ଦେଇ ଅତିକ୍ରମ କରିଥିଲା। କବି ଚାରିପୁରୁଷାର୍ଥ ଅର୍ଥାତ୍ ଧର୍ମ, ଅର୍ଥ, କାମ, ମୋକ୍ଷ ସହ ଜ୍ଞାନ ଓ ଭକ୍ତିକୁ ନିଜ ଜୀବନ ଦର୍ଶନରେ ମୁଖ୍ୟସ୍ଥାନ ପ୍ରଦାନ କରିଥିଲେ। ନିମ୍ନରେ ଏ ସବୁର ସଂକ୍ଷିପ୍ତ ଆଲୋଚନା ପ୍ରଦାନ କରାଯାଇଛି। **ଧର୍ମ :** ସତ୍ୟ ପୁରୁଷଙ୍କର ଧର୍ମ ପାଳନହିଁ ପ୍ରକୃତ କର୍ମ। 'ଧର୍ମ ସେ ତାହାଙ୍କର ଅଟଇ କାରେଣୀ'। ଧର୍ମ କହିଲେ ବଳରାମ ସତ୍ୟ, ଅହିଂସା, ପରୋପକାର, ଅଭିମାନ ତ୍ୟାଗ, ଅପ୍ରିୟ ସତ୍ୟ ବା ମର୍ମବାଣୀ ନ କହିବା, କୋମଳ ବା ଶୀତଳ ବଚନ କହିବା, ଅନ୍ୟ ମନରେ କଷ୍ଟ ନ ଦେବା, ଗୁରୁଜନଙ୍କୁ ମାନ୍ୟ କରିବା, ଅତିଥି ଓ ଦେବତାଙ୍କ ସେବା କରିବା, ଦେବରାଜାଙ୍କ ଠାରେ ଶରଣ ପଶିବାକୁ ବୁଝୁଥିଲେ। ଏହା ବ୍ୟତୀତ ଅନ୍ୟ ସବୁ ସଦ୍‌ଗୁଣକୁ ପାଳନ କରି ଆଦର୍ଶ ଜୀବନ ଯାପନ କଲେ ସ୍ୱର୍ଗ ବା ମୋକ୍ଷ ପ୍ରାପ୍ତି ହୁଏ। 'ଜଗମୋହନ ରାମାୟଣ'ରେ ଏହିସବୁ ସଦ୍‌ଗୁଣର ମହିମା ପ୍ରଚାର କରିବା ପାଇଁ କବି ବହୁ ଉପାଖ୍ୟାନକୁ ପରିବର୍ତ୍ତନ କରିଥିବା, ଗାଲ୍ୟବ ଓ ସତ୍ୟବ୍ରତ ଉପାଖ୍ୟାନରୁ ଉପଲବ୍‌ଧ ହୁଏ। 'ବ୍ରହ୍ମାଣ୍ଡ ଭୂଗୋଳ'ରେ କବି ସେହି କଥାକୁ ଅନ୍ୟ ଭାଷାରେ କହିଛନ୍ତି। ମଣିଷ ଶରୀରରେ ଚାରୋଟି ଇନ୍ଦ୍ରିୟ ମୁଖ୍ୟ। ସେ ସବୁ ହେଲା- ଚକ୍ଷୁ, କର୍ଣ୍ଣ, ମୁଖ ଓ ନାସା। ଏହି ଚାରୋଟି ଇନ୍ଦ୍ରିୟ ଦ୍ୱାରା

ମନୁଷ୍ୟ ବାହାର ଜଗତ ସହିତ ସଂପର୍କ ସ୍ଥାପନ କରେ । ଏହାରି ମାଧ୍ୟମରେ ସେ ଭଲ ବା ଖରାପ ହୋଇଥାଏ । ଭଲ ଓ ମନ୍ଦ ଉଭୟ ପାଇଁ ଏଥିରେ ସ୍ଥାନ ଥିବା ହେତୁ ଏହାହିଁ ହେଉଛି ଅଷ୍ଟନିଧି, ତଥା ମୁକ୍ତିର ଲକ୍ଷଣ । ଏ ସବୁ ମନୁଷ୍ୟର ସ୍ୱାଭାବିକ ବା ସହଜ ଗୁଣ । ଜନ୍ମରୁ ଏ ସବୁ ଆସିଥାଏ । ଜିହ୍ୱା ଭଗବାନଙ୍କ ନାମ ଜପ କରେ, ପୁଣି ଲାଳସା ଭୋଗ ଇଚ୍ଛା କରେ । ନାସା ବାସନା ଗ୍ରହଣ କରେ ପୁଣି ଦୁର୍ଗନ୍ଧ ଆଘ୍ରାଣ କରେ । ଚକ୍ଷୁ ମଧ୍ୟ ଭଲ ଜିନିଷ ପୁଣି ଖରାପକୁ ମଧ୍ୟ ଦେଖିଥାଏ । ସେହିପରି କର୍ଣ୍ଣ ଭଗବାନଙ୍କ ନାମ ଶ୍ରବଣ କରେ ପୁଣି ଖରାପ କଥା ବି ଶୁଣିଥାଏ । ଏ ସବୁ ଜ୍ଞାନ ଓ ଅଜ୍ଞାନ ଭେଦରେ ଦ୍ୱିବିଧ । ଅଜ୍ଞାନକୁ ତ୍ୟାଗ କରି ଜ୍ଞାନ ପଥ ଆଚରଣ କଲେ, ମଣିଷ ମୁକ୍ତି ପାଏ । ଏହାହିଁ ଧର୍ମ ପଥ । ଜ୍ଞାନ କହିଲେ ପୁଣି ଶାସ୍ତ୍ର ଜ୍ଞାନ ନୁହେଁ । "ଯେତେ ପ୍ରକାରେ ଶାସ୍ତ୍ରମାନ । ଯେ ଜ୍ଞାନ ନୋହେ ହୋ ଅର୍ଜ୍ଜୁନ ।" ଜ୍ଞାନ ହେଉଛି ଭଗବାନଙ୍କ ଜ୍ଞାନ ଅର୍ଥାତ୍ ଆତ୍ମପରତେ ଜ୍ଞାନ । ଏହାର ଅନ୍ୟ ନାମ ହେତୁ । ଅହେତୁ ହେଲା ଅଜ୍ଞାନ । ଏହି ଅହେତୁ ଜଳରେ ନିମଜ୍ଜିତ ହେଲେ ମଣିଷ ମାୟାବଶ ହୋଇ ପ୍ରକୃତ ଜ୍ଞାନକୁ ଭୁଲିଯାଏ । ଏହାକୁ ବୁଝିବାହିଁ ଧର୍ମ ପଥ ।

ଧର୍ମର କ୍ଷେତ୍ର ଅତି ବିସ୍ତୃତ । ଏହା କୌଣସି ବ୍ୟକ୍ତି ବା ଗୋଷ୍ଠୀ ମଧ୍ୟରେ ନିର୍ଦ୍ଦିଷ୍ଟ ନୁହେଁ । ସମସ୍ତ ମାନବ ସମାଜରେ ଧାର୍ମିକ ବ୍ୟବସ୍ଥା ସ୍ଥାପନ କରିବା ଏହାର ଲକ୍ଷ୍ୟ । ସାଧାରଣତଃ ଧର୍ମକୁ ଶ୍ରୌତ ଓ ସ୍ମାର୍ତ୍ତ ଭେଦରେ ବିଭାଗ କରାଯାଇଥାଏ । ଶ୍ରୌତ ଧର୍ମରେ ଥିବା କର୍ମ ଓ ସଂସ୍କାର, ବେଦ ଓ ବ୍ରାହ୍ମଣ ଗ୍ରନ୍ଥ ସହ ସଂପୃକ୍ତ । ସ୍ମାର୍ତ୍ତ ଧର୍ମର ସଂପର୍କ ଧର୍ମସୂତ୍ର ଓ ସ୍ମୃତି ସହ ଜଡ଼ିତ । ନିଜର ସଂସ୍କାରର ଉନ୍ନତି ବିନା ଅନ୍ୟର ହିତ ସାଧନ ସମ୍ଭବ ନୁହେଁ । ଏଥିପାଇଁ ଧର୍ମଶାସ୍ତ୍ରରେ ପ୍ରଥମେ ବ୍ୟକ୍ତିର ଆତ୍ମୋନ୍ନତି କଥା କୁହାଯାଇଛି । ଶତପଥ ବ୍ରାହ୍ମଣ'ରେ (୧, ୧, ୧, ୫)ରେ ସେଥିପାଇଁ ସତ୍ୟ କହିବା (ସ ଔ ସତ୍ୟମେବ ବଦେତ୍) ଉପରେ ଗୁରୁତ୍ୱ ଦିଆଯାଇଛି । ସତ୍ୟ କହିଲେ ଆତ୍ମ-ଗୁଣର ବିକାଶ ହୁଏ । ଏହା ବ୍ୟତୀତ ଅହିଂସା, ଦୟା, ଶାନ୍ତି, ଅସୂୟା, ଶୌଚ, ଅନାୟାସ ମଙ୍ଗଳ, ଅକାର୍ପଣ୍ୟ ଓ ଅସ୍ପୃହା ପ୍ରଭୃତି ଆଠ ଆତ୍ମ-ଗୁଣ ମନୁଷ୍ୟର ନୈତିକତା ଓ ସଦାଚାରକୁ ବୃଦ୍ଧିକରେ । ଯେଉଁ ବ୍ୟକ୍ତି ନିଜ ପାଇଁ ପ୍ରତିକୂଳ ସେ ଅନ୍ୟର ଉନ୍ନତି କରିବା ଅସମ୍ଭବ । (ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସାମଚରେତ୍) । ଭାରତୀୟ ସଂସ୍କୃତିର ମହାତ୍ ଆଦର୍ଶ ହେଲା ଅନ୍ୟ ପ୍ରତି ସଦ୍‌ଭାବନା । ବଳରାମ ପ୍ରାଚୀନ ପରମ୍ପରାକୁ ଅନୁସରଣ କରି ଏହି ଆଦର୍ଶକୁ ସମାଜରେ ପ୍ରଚାର କରିଥିଲେ ।

**ଅର୍ଥ:**

ଅର୍ଥ ଅନର୍ଥର ମୂଳ କାରଣ, ଏ ପ୍ରକାର ଉକ୍ତି ସାଧାରଣରେ ପ୍ରଚଳିତ ଥିଲେ ହେଁ, ଭାରତୀୟମାନେ ଚତୁର୍ବର୍ଗ ପ୍ରାପ୍ତିର ଅନ୍ୟତମ ବିଶିଷ୍ଟ ଉପାୟ ରୂପେ ଅର୍ଥକୁ ଗ୍ରହଣ

କରିଥିଲେ । ମୌର୍ଯ୍ୟ-ପୂର୍ବ ଭାରତବର୍ଷର ଜୈନ, ବୌଦ୍ଧ ତଥା ଆଜୀବମାନଙ୍କ ଧର୍ମଗ୍ରନ୍ଥରେ ଜୀବନର କ୍ଷଣ ଭଙ୍ଗୁରତା ଓ ବ୍ୟକ୍ତିଗତ ଆତ୍ମୋନ୍ନତି ଉପରେ ଗୁରୁତ୍ୱ ଦିଆଯାଉଥିଲା । ଫଳରେ ସମାଜରେ ଲୋକେ ଗୃହତ୍ୟାଗ କରି ସନ୍ୟାସୀ ହୋଇ ଘର, ପରିବାର ଓ ସମାଜ ପ୍ରତି ଉଦାସୀନ ରହୁଥିଲେ । ଏ ପ୍ରକାର ପ୍ରବୃତ୍ତିର ପ୍ରଚାର ଫଳରେ ସମାଜରେ ଦୁଇ ଦିଗରୁ ଅମଙ୍ଗଳ ହେଲା । ପ୍ରଥମରେ ପ୍ରେମ, ସ୍ନେହ ତଥା ଆତ୍ମୀୟତା ପ୍ରଭୃତି ଗୁଣରେ ଶିଥିଳତା ପ୍ରବେଶ କଲା, ଓ ଦ୍ୱିତୀୟରେ ଦେଶର ଲୋକସଂଖ୍ୟା କମିଗଲା । ଏହାକୁ ଦୃଷ୍ଟିରେ ରଖି କୌଟିଲ୍ୟ ତାଙ୍କର ମହାନ୍ ଗ୍ରନ୍ଥ 'ଅର୍ଥ ଶାସ୍ତ୍ର' ପ୍ରଣୟନ କଲେ । ଏଥିରେ ସମାଜକୁ ଚାରି ଭାଗରେ ବିଭକ୍ତ କରାଗଲା- (୧) କ୍ଷତ୍ର (ଯୋଦ୍ଧା) (୨) ବ୍ରହ୍ମନ୍ (ପୁରୋହିତ), (୩) ବିଶ୍ ଓ (୪) କର୍ମକାର । ଏହିପରି ବିଭାଗ ଦ୍ୱାରା, ରାଜ୍ୟ ଶାସନ ପାଇଁ ରାଜା, ପରାମର୍ଶ ଦେବା ପାଇଁ ଅମାତ୍ୟ, ନ୍ୟାୟାଧିଶ, ତଥା ଧାର୍ମିକ ନେତା (ଏମାନେ ସାଧାରଣତଃ 'ବ୍ରହ୍ମନ୍' ହିଁ ଥିଲେ) ଦେଶର ଆର୍ଥିକ ଉନ୍ନତି ପାଇଁ କୃଷକ (ବିଶ୍) ଓ ବ୍ୟାପାରୀ (କର୍ମକାର) ବର୍ଗର ସୃଷ୍ଟି ହେଲା । ସମାଜର ପ୍ରତ୍ୟେକ ବର୍ଗ ଓ ବ୍ୟକ୍ତିର ଜୀବନନିର୍ବାହ ପାଇଁ ରାଜାହିଁ ଉତ୍ତରଦାୟୀ ହେଉଥିଲେ ।

'ଜଗମୋହନ ରାମାୟଣ'ରେ 'ଅର୍ଥ-ଶାସ୍ତ୍ର'ର ନୀତି, ନିୟମକୁ କଠୋର ଭାବେ ପାଳନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଋଷ୍ୟଶୃଙ୍ଗ ଓ ବିଶ୍ୱାମିତ୍ରଙ୍କର ଦଶରଥଙ୍କୁ ପଚାରିଥିବା ପ୍ରଶ୍ନଗୁଡ଼ିକ ହିଁ ଏହାର ପ୍ରକୃଷ୍ଟ ଉଦାହରଣ । ବିଶ୍ୱାମିତ୍ରଙ୍କ ପ୍ରଶ୍ନଗୁଡ଼ିକ ବିଶେଷ କରି ଗଡ଼ରକ୍ଷାର ବିଭିନ୍ନ କୌଶଳ ଉପରେ ଆଧାରିତ ହେଲେ ହେଁ ଏଥିରେ ଶାସନର ଦୃଢ଼ତା ପ୍ରକାଶିତ । କିନ୍ତୁ ଋଷ୍ୟଶୃଙ୍ଗ ଅନ୍ୟ ତିନିବର୍ଗଙ୍କ କର୍ତ୍ତବ୍ୟ ସମ୍ପର୍କରେ ରାଜାଙ୍କୁ ସଚେତନ କରି ଦେଇଛନ୍ତି ।

'ଅମାତ୍ୟ ପୋଷୁନା ଅଛି ଯତ୍ନକରି', 'ପୁରାତନ-ଲୋକ ଘେନି କରୁନା ବିଚାର', 'ମନ୍ତ୍ରୀ ତେହାର ଅଟଇ ନା ସୁବୁଧି', 'ବ୍ରାହ୍ମଣ ପଢ଼ନ୍ତି ନା ବେଦଶାସ୍ତ୍ରମାନ', 'ସୁଜ୍ଞାନୀ ଦ୍ୱିଜମାନେ କରନ୍ତିନା ହୋମ', 'ମନ୍ତ୍ରେଣ ସିଦ୍ଧ କରନ୍ତି ନିଯ କାମ', 'ବେଦଶାସ୍ତ୍ର ପଣ୍ଡାଏ ହୁଅନ୍ତି ନା ଗୋଷ୍ଠୀ', ପ୍ରଭୃତି ପ୍ରଶ୍ନରେ ବ୍ରାହ୍ମଣ ସମାଜର ରାଷ୍ଟ୍ରପ୍ରତି ଦାୟିତ୍ୱ ଉପରେ ଗୁରୁତ୍ୱ ଦିଆଯାଇଛି ।

ସେହିପରି, 'କାଳଜାଣି ବୃଷ୍ଟି କରଇ କି ବଜ୍ରଧାରି', 'ଅଗାଧ ଜଳ ଅଛଇ ଟିକି ଦେଶ ଲାଗେ', 'ଚଷାଯେ ବଇଲେ ନ କରନ୍ତିନା ପ୍ରାସ', 'ବାଟ ବୃକ୍ଷମାନ ନ କରନ୍ତି ନା ନାଶ', 'କୃଷି ପାଗଜାଣି କରଇ ନା ବୃଷ୍ଟି', 'ଯେ ଯାହାର ଋତୁ କରନ୍ତି ନା ଦିଗପାଳ' ପ୍ରଭୃତି ପ୍ରଶ୍ନ ଦେଶର କୃଷି ସମ୍ପଦ ଉପରେ ଆଧାରିତ ।

ଦେଶର ସମୃଦ୍ଧି ନିର୍ଭର କରେ ବେପାର ଓ ବାଣିଜ୍ୟ ଉପରେ । ଋଷ୍ୟଶୃଙ୍ଗ ସେଥିପାଇଁ ପଚାରିଛନ୍ତି, 'ସାଧୁତେ ସଂଗ୍ରହଣ କରନ୍ତିକି ଧନ', 'ବଇଦେ ଉପଚାର

ଜାଣନ୍ତିଟିକି ବ୍ୟାଧି', 'ଔଷଧେଣ ରୋଗୀ ହୁଅନ୍ତି ନା ରକ୍ଷା', 'ମିଥ୍ୟା ନ କହନ୍ତି ନା ବଣିଜାର ଜନ', 'ନଟେ ଉଦର ପୋଷନ୍ତି ନା ନୃତ୍ୟ କରି', 'ଅଲୋଭୀ ସିଠ ନିର୍ଲୋଭୀ ବରଣଙ୍କ ସଂପର୍କରେ ବିଭିନ୍ନ ପ୍ରଶ୍ନ ।

ଋଷ୍ୟଶୃଙ୍ଗଙ୍କ ପ୍ରଶ୍ନ ମୁଖ୍ୟତଃ ରାଜାଙ୍କର ବିଭିନ୍ନ ଦାୟିତ୍ୱ ସମ୍ପର୍କରେ ହେଲେହେଁ, ସେ ସ୍ୱତନ୍ତ୍ରଭାବେ କେତେକ ରାଜକର୍ମଚାରୀଙ୍କର ଉଲ୍ଲେଖ କରିଛନ୍ତି । କାରଣ ଦେଶକୁ ରକ୍ଷା କରିବା ସେମାନଙ୍କରହିଁ ପ୍ରଧାନ କର୍ତ୍ତବ୍ୟ । ସେମାନେ ଅସାଧୁ ହେଲେ ଦେଶରେ ବିଭ୍ରାଟ ସୃଷ୍ଟି ହୁଏ । ରାଜାଙ୍କୁ ସେ ବିଷୟରେ ସଚେତନ କରିଦେବା ପାଇଁ ଋଷ୍ୟଶୃଙ୍ଗ ପଚାରିଛନ୍ତି,

'ପରଦେଶ ବାରତା ପାଉକିନା ସନ୍ଧି'
'ଦେଶରେ ଦଣ୍ଡପାଟ ନ କରନ୍ତି ନା ଅନୀତି'
'ସୁଜନେ ଟସକର ସଙ୍ଗେ ନୁହନ୍ତି ନା ଭାବ'
'ସେବକ ପେଷିଲେ ନୋହନ୍ତି ନା ବିମୁଖ'
'ସଂଗ୍ରାମେ କ୍ଷତ୍ରୀଙ୍କର ହରଷଟିକି ମୁଖ'
'ଦୋସାଧୁ ରଖନ୍ତି ନା ଗୃହବାସ ବିତ୍ତ'
'ଚଞ୍ଚଳ ଅଟନ୍ତି ନା ସାହାଣର ଘୋଡ଼ା'
'ହସ୍ତୀ ମାରଇଟିକି ଗୋଡ଼ାଇଣ ବେଢ଼ା'
'ସାରଥୀ ସୂତ୍ରେଣ ବାହାଇନା ରଥ'
'ପାଦାନ୍ତି ପାଦେଣ ଅଟନ୍ତି ନା ସାମରଥ'
'ତେଣ୍ଟିକି ବିନ୍ଧିଲେଣ ଫୁଟଇକି'
'ବିକଟାଳ ହୋଇଣ ବାଜଇଟିକି ନିଶାଣ'

ଦେଶର ସର୍ବାଙ୍ଗୀନ ଉନ୍ନତି ମୁଖ୍ୟତଃ ଅର୍ଥ-ବ୍ୟବସ୍ଥା ଉପରେ ନିର୍ଭର କରେ । ଲୋକେ ଶାନ୍ତିରେ ରହିଲେ ଧର୍ମପରାୟଣ ହୋଇଥାନ୍ତି । ତେଣୁ ଧର୍ମ ଓ ଅର୍ଥ ପରସ୍ପରର ପରିପୂରକ । ସେଥିପାଇଁ ଋଷ୍ୟଶୃଙ୍ଗ ପରିବାର ଓ ସମାଜର ନୀତିନିୟମକୁ ନିଜ ପ୍ରଶ୍ନର ଅନ୍ତର୍ଭୁକ୍ତ କରିଛନ୍ତି । ସେଥିମଧ୍ୟରୁ କେତେକ ପ୍ରଶ୍ନ ନିମ୍ନରେ ଉଦ୍ଧାର କରାଗଲା-

'ପୁତ୍ରେ କରିନ୍ତିଟିକି ମାତାପିତାଙ୍କର ସେବା
ସବୁଙ୍କରି ହୃଦେ ବସଇଟିକି ଦୟାଦେବା'
'ଅତେଶ୍ୱର କଥା ବୁଝୁଟିକି ନିତି'
'ପତିଙ୍କି ଭଗତି ହୁଅନ୍ତି ନା ଯୁବତୀ
ବିଶ୍ୱାସଘାତକା ସଙ୍ଗେ ନୁହନ୍ତି ନା ପୀରତି'
'କୁଳୀଣ ଲୋକମାନେ ମାନନ୍ତି ନା ମାନ୍ୟ'

'ବନ୍ଧୁଜ୍ଞ ଆଚ୍ଛାଦି ଅଛନ୍ତି ନା ଗୁରସ୍ତ'
'ପୁତ୍ରଥାନ୍ତେ ପିତାଏ ନୋହନ୍ତି ନା କଷ୍ଟି'
'ଲଜ୍ଜାବନ୍ତ ହୋଇଣ ଅଛନ୍ତିନା କୁଳବଧୂ'
'ଶିଷ୍ୟେ ପାଳନ୍ତି ନା ଗୁରୁବଚନ ଦୀକ୍ଷା ।'

ମନୁଷ୍ୟ ସମାଜର ଦୟା ବା କରୁଣା କେବଳ ସମାଜ, ପରିବାର ଓ ସଂପର୍କୀୟ ମଧ୍ୟରେ ସୀମାବଦ୍ଧ ନ ଥିଲା, ସାଧାରଣ ଜୀବଜଗତ ଓ ଦେଶର ତରୁଲତା ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ସେଥିପାଇଁ ଋଷ୍ୟଶୃଙ୍ଗ କହିଛନ୍ତି,

'ଅପନ୍ତରା ବାଟେ ପାଣିପଣା ଦାନ
ପ୍ରାସାଦ ଅଟାଳି ଅଛନ୍ତି ନା ବୃକ୍ଷମାନ'
'କାଟ ବୃକ୍ଷମାନ ନ କରନ୍ତି ନା ନାଶ ।'
'ସୁରଭି ଦୁଧ ଦୁହାନ୍ତି ନା ଗାଈ
ବିଷ୍ଠା ନ ଖାନ୍ତି ନା ଚରିବାର ନପାଇ'
'ଭଗ୍ନ ନୋହଇ ନା ପକ୍ଷୀଙ୍କର ଆଳ ।'

ଋଷ୍ୟଶୃଙ୍ଗଙ୍କ ପ୍ରଶ୍ନ ସବୁରେ ରାଷ୍ଟ୍ରର ସମୂହ ମଙ୍ଗଳ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏ ସବୁ ଅର୍ଥ ଉପରେ ଆଧାରିତ । ସାମାଜିକ ସୁବ୍ୟବସ୍ଥା ନିର୍ଭର କରେ ଦେଶର ଅର୍ଥ-ବ୍ୟବସ୍ଥା ଉପରେ । କୌଟିଲ୍ୟ ସେଥିପାଇଁ ବର୍ଣ୍ଣ-ବ୍ୟବସ୍ଥା ଉପରେ ଗୁରୁତ୍ୱ ଦେଇଥିଲେ । ତାଙ୍କ ମତରେ ବର୍ଣ୍ଣ-ବ୍ୟବସ୍ଥା ବ୍ୟକ୍ତିକୁ ସାମୂହିକ ହିତ ପାଇଁ ପ୍ରେରିତ କରେ; ଅଥଚ ଆଶ୍ରମ-ବ୍ୟବସ୍ଥା ଦ୍ୱାରା କେବଳ ବ୍ୟକ୍ତିର ବ୍ୟକ୍ତିଗତ ଉନ୍ନତି ସମ୍ଭବପର । ସବୁପ୍ରକାର ଜାତିକୁ ନେଇ ରାଷ୍ଟ୍ର । ଏଥିରେ ଶାସକଙ୍କ ପରି ବ୍ୟକ୍ତିକୁ ଆନନ୍ଦ ଦାନ କରୁଥିବା ବେଶ୍ୟା ଓ ନଟଙ୍କର ମଧ୍ୟ ଉପାଦେୟତା ରହିଛି । ଋଷ୍ୟଶୃଙ୍ଗ ସେଥିପାଇଁ ପଚାରିଲେ ନଟ ଓ ବେଶ୍ୟାଙ୍କ କଥା ।

ବଳରାମ ଏହିପରି ଋଷ୍ୟଶୃଙ୍ଗ, ବିଶ୍ୱାମିତ୍ର, ବିଭାଣ୍ଡକଙ୍କ ପ୍ରଶ୍ନ ଓ ଭରତଙ୍କ ଶପଥ ମଧ୍ୟରେ ଦେଶର ଅର୍ଥ-ବ୍ୟବସ୍ଥା ଉପରେ ଗୁରୁତ୍ୱ ଦେଇ ମୁକ୍ତି ପାଇଁ ଅର୍ଥର ଆବଶ୍ୟକତା ସମ୍ପର୍କରେ ପୁଣି ତାଙ୍କ ପାଠକମାନଙ୍କୁ ସଚେତନ କରିଛନ୍ତି । ଅର୍ଥ ପ୍ରତି ଅତ୍ୟଧିକ ମମତା ଅନର୍ଥର କାରଣ । ଦାରିଦ୍ର୍ୟ ମନୁଷ୍ୟର ବୁଦ୍ଧି ଲୋପ କରିଦିଏ । ଦାରିଦ୍ର୍ୟ ଗ୍ରାସ କଲେ ସନ୍ନ୍ୟାସ ସମ୍ଭବ ନୁହେଁ । ଗୃହ ପରିତ୍ୟାଗ କଲେ ବି ଦାରିଦ୍ର୍ୟରୁ ମୁକ୍ତି ମିଳେ ନାହିଁ । କିନ୍ତୁ ଅର୍ଥଲୋଭ ତା'ଠାରୁ ସ୍ୱତନ୍ତ୍ର । ଏଥିରେ ମଣିଷ ମଣିଷକୁ ଚିହ୍ନେ ନାହିଁ । ମଣିଷର ସୁଖ ଦୁଃଖ ବୁଝିପାରେ ନାହିଁ । ଗୟାତୀର୍ଥର ବ୍ରାହ୍ମଣଙ୍କୁ ଉଦାହରଣ ରୂପେ ଗ୍ରହଣକରି ବଳରାମ ଧନଲୋଭର କୁପରିଣାମ ସମ୍ପର୍କରେ ସମାଜକୁ ସଚେତନ କରି ଦେଇଛନ୍ତି ।

**କାମ:** ଭାରତୀୟ ସାଂସ୍କୃତିକ ପରମ୍ପରା ଅନୁଯାୟୀ ମନୁଷ୍ୟ ଜୀବନର ସଫଳତା କେବଳ

ଧର୍ମ ବା ଅର୍ଥ ନୁହେଁ, କାମ ଉପରେ ମଧ୍ୟ ନିର୍ଭରଶୀଳ । ଭୌତିକ ଜୀବନର ସଂବର୍ଦ୍ଧନ ଅର୍ଥ ଉପରେ ଆଧାରିତ । ସାମାଜିକ ଜୀବନକୁ ଶୃଙ୍ଖଳିତ କରେ ଧର୍ମ, କିନ୍ତୁ କାମ ମନକୁ ତୃପ୍ତ କରେ । 'କାମସୂତ୍ର' ଅନୁଯାୟୀ ଧର୍ମର ବୁଦ୍ଧି ସହ, ଅର୍ଥ ଶରୀର ସହ ଏବଂ କାମ ମନ ସହ ଏବଂ ମୋକ୍ଷ ଆତ୍ମା ସହ ସଂପୃକ୍ତ । ଅର୍ଥ, ଧର୍ମ ଓ କାମ ଦ୍ୱାରା ମନୁଷ୍ୟର ଜୀବନ ରତି, ମାନ, ଜ୍ଞାନ, ନ୍ୟାୟ ଆଦି ସମସ୍ତ କାମନା ସହ ସମାବିଷ୍ଟ ହୁଏ । ଅର୍ଥାତ୍ ଜୀବନର ଅଭିଳାଷ ପୂରଣ ହୁଏ ଅର୍ଥରେ, ସ୍ତ୍ରୀ, ପୁତ୍ରଙ୍କର କାମରେ; ଯଶ, ଜ୍ଞାନ ଓ ନ୍ୟାୟର ଧର୍ମରେ । ଏ ସବୁ ଇହଲୋକକୁ ଚରିତାର୍ଥ କରୁଥିବା ବେଳେ ମୋକ୍ଷ ପରଲୋକ ପାଇଁ ଉଦ୍ଦିଷ୍ଟ । କାମ ତୃପ୍ତି ଜୀବନ ପାଇଁ ଅତ୍ୟନ୍ତ ଆବଶ୍ୟକ । ଏହା ବିନା ସୃଷ୍ଟି ସମ୍ଭବ ନୁହେଁ । ସେଥିପାଇଁ ଏହା ଏକ ବିଶିଷ୍ଟ ପୁରୁଷାର୍ଥ ।

ପୁରୁଷ ଓ ସ୍ତ୍ରୀଙ୍କର ପରସ୍ପର ପ୍ରତି ଆକର୍ଷଣ କାମର ମୁଖ୍ୟ ସାଧନ । ଏଥିରୁ ଦାମ୍ପତ୍ୟ ଜୀବନର ସୃଷ୍ଟି । ପ୍ରାଚୀନ ଭାରତୀୟମାନେ କାମକୁ ସ୍ୱତନ୍ତ୍ରଭାବେ ଆଦୌ ବିଚାର କରୁ ନ ଥିଲେ । 'କାମସୂତ୍ର' ପ୍ରଣେତା ବାତ୍ସାୟନ 'କାମସୂତ୍ର'ର ପ୍ରଥମ ଛନ୍ଦରେ ହିଁ ଧର୍ମ, ଅର୍ଥ ଓ କାମକୁ ନମସ୍କାର କରିଛନ୍ତି । 'ଧର୍ମାର୍ଥ କାମେଭ୍ୟୋ ନମଃ' । ବାତ୍ସ୍ୟାୟନଙ୍କ ଅନୁଯାୟୀ କାମର ଲକ୍ଷଣ ହେଲା, ଶ୍ରୋତ୍ର ତ୍ୱକଚକ୍ଷୁର୍ଜିହ୍ୱା ଘ୍ରାଣା ନାମାତ୍ମସଂଯୁକ୍ତେନ ମନସାଧିଷ୍ଠିତାନାଂ ତସ୍ୱେଷୁ ତସ୍ୱେଷୁ ବିଷୟେଷ୍ୱାନୁ କୁଲ୍ୟତଃ ପ୍ରବୃତ୍ତି କାମଃ । (କାମସୂତ୍ରମ୍ ୧ । ୨ । ୧୧) । ଅର୍ଥାତ୍ କାନ, ତ୍ୱକ୍, ଆଖି, ଜିହ୍ୱା, ନାକ - ଏହି ପାଞ୍ଚ ଇନ୍ଦ୍ରିୟର ଇଚ୍ଛାନୁଯାୟୀ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ପ୍ରତି ପ୍ରବୃତ୍ତି ହିଁ କାମ । ଏହାର ବ୍ୟବହାରିକ ବ୍ୟାଖ୍ୟା କରି କୁହାଯାଇଛି, ଚୁମ୍ବନ, ଆଲିଙ୍ଗନ ଆଦି ପ୍ରାସଙ୍ଗିକ ସୁଖ ସହ କପୋଳ, ସ୍ତନ, ନିତମ୍ବ, ଆଦି ବିଶେଷ ଅଙ୍ଗର ସ୍ପର୍ଶ କରିବା ଦ୍ୱାରା ଯେଉଁ ଆନନ୍ଦ ମିଳେ ତାହାହିଁ କାମ । ତେବେ ବି 'କାମସୂତ୍ର'କାର ଧର୍ମ, ଅର୍ଥ ଓ କାମ ଏ ତିନିଙ୍କି ବିଚାର କରି କୁହନ୍ତି ଯେ କାମରୁ ଶ୍ରେଷ୍ଠ ହେଲା ଅର୍ଥ ଓ ଅର୍ଥରୁ ଶ୍ରେଷ୍ଠ ଧର୍ମ । (୧।୨।୧୪) କେବଳ ଶରୀରର ତୃପ୍ତି ପାଇଁ କାମକୁ ଭାରତୀୟମାନେ କେବେହେଲେ ଗ୍ରହଣ କରି ନ ଥିଲେ । ଜ୍ଞାନ-ବିବେକ-ବିଚାର ଦ୍ୱାରା ଧର୍ମ-ସମ୍ମତ କାମକୁ ସେମାନେ ଶ୍ରେଷ୍ଠସ୍ଥାନ ଦେଇଥିଲେ । ଗୀତାରେ କୁହାଯାଇଛି - "ଧର୍ମବିରୁଦ୍ଧତା ଭୂତେଷୁ କାମୋଽସ୍ମି ଭରତର୍ଷଭ" ।

ବଳରାମ ମଧ୍ୟ କାମକୁ ଧର୍ମର ଏକ ବିଶିଷ୍ଟ ଅଙ୍ଗ ଭାବେ ଗ୍ରହଣ କରିଥିବା ତାଙ୍କ ଗ୍ରନ୍ଥରାଜିରୁ ଜଣାଯାଏ । 'ଜଗମୋହନ ରାମାୟଣ'ରେ ଶ୍ରୀରାମ ଓ ସୀତାଙ୍କର ଆଦର୍ଶ ପ୍ରେମକୁ ଚିତ୍ରଣ କରାଯାଇଛି । ବିବାହ ପରେ ସୀତା ଯେପରି ଶ୍ରୀରାମଙ୍କ ତୃପ୍ତି ପାଇଁ ସତତ ଚେଷ୍ଟା କରିଛନ୍ତି, ଶ୍ରୀରାମ ମଧ୍ୟ ସେହିପରି ସୀତାଙ୍କର ପ୍ରତ୍ୟେକ କାମନାକୁ ପୂରଣ କରିଛନ୍ତି । ସଖୀମାନେ ସୀତାଙ୍କୁ ଶ୍ରୀରାମଙ୍କ ପାଖରେ ଛାଡ଼ିବା ବେଳେ

କହିଥିଲେ,-

ତୁ ଗୋ ଜାନକୀ ଗୋ ଆମ୍ଭର ବୋଲ କର
ଶ୍ରୀରାମ ତୋହୋର ଗୋ ଅଟନ୍ତି ଯେ ବର।
ତୁ ଆଜ ରଜନୀ ମନାଇଁ ମୁଁ ତାହାନ୍ତ
ଯେ କଥା ଦେବୀ ତୋତେ ଅଟଇ ଗୋ ହିତ।
ସେ ଯେବେ ମନେ ନ ଧରଇ ଗୋ ଆନ
ତେହ୍ନେ ସେବା କରି ହରିବୁ ଗୋ ମନ।

ପ୍ରଥମ ମିଳନ ବେଳେ ସ୍ୱାମୀକୁ ସନ୍ତୋଷ କରି ପାରିଲେ ବୈବାହିକ ଜୀବନ ସୁଖମୟ ହୁଏ। ସେହିପରି ପ୍ରଥମ ରାତ୍ରିରେ ବିଷାଦ ସୃଷ୍ଟି ହେଲେ ଜୀବନସାରା ଦୁଃଖ ମିଳେ। ଏହା ଓଡ଼ିଶାର ଏକ ସାଧାରଣ ବିଶ୍ୱାସ। ବଳରାମ ଦାସ ମଧ୍ୟ ଏଥିରେ ବିଶ୍ୱାସ କରି ଲେଖିଛନ୍ତି -

ପ୍ରଥମ କାଳେ ଯେବେ ସ୍ୱାମୀଙ୍କି ସେବିପାରି
ଦେହଥିବା ଯାଏ ସୁଖ ଭୋଗ କରି।
ପ୍ରଥମେ ସ୍ୱାମୀଙ୍କି ଯେବେ ଉପୁଜାଇ ରୋଷ
ସର୍ବଦା ସେ ନାରୀ ଗୋ ହୁଅଇ ବିରସ।

ଏହା କେବଳ ପ୍ରଥମ ରାତ୍ରୀ କଥା ନୁହେଁ, ବିବାହ ପରେ ସ୍ତ୍ରୀ ଗୋଟାସୁଦ୍ଧା ସ୍ୱାମୀର ହୋଇଯାଏ। ତେଣୁ ସ୍ୱାମୀର ଇଚ୍ଛା ପୂରଣ କରିବା ହିଁ ସ୍ତ୍ରୀର ପ୍ରଧାନ କର୍ତ୍ତବ୍ୟ।

ସେ ତୋହୋର ସ୍ୱାମୀ ତୁ ତାହାଙ୍କରି ନାରୀ
ଯେକ ଦେହ ଯେହା କେ ବେଗାନ କରି ପାରି।

"ଯେତେବେଳଠାରୁ ଦ୍ୱିଜବର ଦୁହିଙ୍କର ହାତକୁ କୁଶ ରଜ୍ଜୁରେ ବାନ୍ଧି ଦେଲେ, ସେହି ସମୟରୁ ଶ୍ରୀରାମ ହେଲେ ତୋ ପ୍ରାଣର ଈଶ୍ୱର, ତୁ ହେଲୁ ତାଙ୍କର ଦାସୀ। ତୋର ପ୍ରତ୍ୟେକ ଅଙ୍ଗକୁ ତାଙ୍କରି ସେବାରେ ନିୟୋଜିତ କରିବାରେ ହିଁ ତୋର ପ୍ରକୃତ ପୁରୁଷାର୍ଥ।"

ଦାମ୍ପତ୍ୟ ପ୍ରଣୟର ଏହି ଆଦର୍ଶକୁ ନେଇ ବଳରାମ 'ରାମାୟଣ' ରଚନା କରିଥିଲେ। ତାଙ୍କ ମତରେ ନାରୀ ବା ପୁରୁଷ ଏହି ଆଦର୍ଶକୁ ଅନୁସରଣ କରି ସମାଜରେ ଜୀବନଯାପନ କଲେ, ଇହଲୋକରେ ତାଙ୍କ ଜୀବନ ଯେ କେବଳ ସାର୍ଥକ ହୁଏ ତାହା ନୁହେଁ, ପରଲୋକରେ ମଧ୍ୟ ସେ ସ୍ୱର୍ଗପ୍ରାପ୍ତି ହୁଏ। ସେଥିପାଇଁ ସୀତାଙ୍କ ମାତାମାନେ ସୀତାଙ୍କୁ ଉପଦେଶ ଦେଇ କହିଛନ୍ତି -

ପତି ଭକ୍ତି କଲେ ଇହଲୋକେ ଯଶ ପାଇ
ଅନ୍ତେ ସ୍ୱର୍ଗ ଭୁବନେ ବସଇ ହାଦେ ଯାଇ।

ଦାମ୍ପତ୍ୟ ପ୍ରଣୟର ଆରମ୍ଭ ହୁଏ ସଂଯୋଗ-ଶୃଙ୍ଗାରରୁ । 'ସାହିତ୍ୟ-ଦର୍ପଣ' (୩।୨୧୦।୨୧୧)ରେ କୁହାଯାଇଛି ଯେତେବେଳେ ନାୟକ-ନାୟିକା ପାରସ୍ପରିକ ପ୍ରେମର ବଶୀଭୂତ ହୋଇ ଦର୍ଶନ, ମିଳନ, ସ୍ପର୍ଶ ଓ ଆଳାପରେ ଲୀନ ହୁଅନ୍ତି, ବିଦ୍ୱାନମାନେ ସେହି ଅବସ୍ଥାକୁ ସଂଯୋଗ ଓ ଏହାର ବର୍ଣ୍ଣନାକୁ ସଂଯୋଗ ଶୃଙ୍ଗାର କହିଥାନ୍ତି । ବଳରାମ, ସୀତା ଓ ଶ୍ରୀରାମଙ୍କ ମିଳନ ପ୍ରସଙ୍ଗରେ ସଂଯୋଗ-ଶୃଙ୍ଗାରକୁ ଅତି ରମଣୀୟ ଭାବେ ଉପସ୍ଥାପନା କରିଛନ୍ତି । ସଂଯମତା ଓ ଶ୍ଳୀଳତା ମଧ୍ୟରେ ସଂଯୋଗ-ଶୃଙ୍ଗାର ବର୍ଣ୍ଣନା କରିବାରେ ବଳରାମ ଯେ ସିଦ୍ଧହସ୍ତ ଥିଲେ, ଏହା ରାମ ଓ ସୀତାଙ୍କ ମିଳନକାଳୀନ ଦୃଶ୍ୟରୁ ଉପଲବ୍ଧ ହୁଏ । ସେମାନଙ୍କ କେଳିର ସବିଶେଷ ବର୍ଣ୍ଣନା ନ ଦେଇ ବଳରାମ ଲେଖିଛନ୍ତି-

ଯହୁଁ ବେନିଜନେ ୟେକ ମନ ହୋନ୍ତି
ବିବିଧ ବିନୋଦେ କରନ୍ତି ପୀରତି ।

ସଂଯୋଗ-ଶୃଙ୍ଗାର କେବଳ ନାୟକ ଓ ନାୟିକାର ମିଳନକୁ ବୁଝାଏ ନାହିଁ, ଏହା ବିଭିନ୍ନ ବିଭାଗରେ ବିଭକ୍ତ । ଆଳଙ୍କାରିକମାନେ ଏହାକୁ ପୂର୍ବରାଗ, ମାନ, ପ୍ରଣୟମାନ, ଈର୍ଷାମାନ, ମାନ-ଭଙ୍ଗ, ସୌନ୍ଦର୍ଯ୍ୟ-ଚେତନା ଭାବେ ବିଭାଜନ କରିଥାନ୍ତି । ଶ୍ରୀରାମ ଓ ସୀତାଙ୍କ ପ୍ରଣୟରେ ମାନ ପାଇଁ କୌଣସି ଅବକାଶ ନ ଥିଲା । ସେଥିପାଇଁ 'ଜଗମୋହନ ରାମାୟଣ'ରେ ମାନର କୌଣସି ବର୍ଣ୍ଣନା ଦେଖିବାକୁ ମିଳେନାହିଁ । ଏହାର ସଂଯୋଗ-ଶୃଙ୍ଗାର କେବଳ ପୂର୍ବରାଗ ଓ ସୌନ୍ଦର୍ଯ୍ୟ-ଚେତନା ମଧ୍ୟରେ ସୀମିତ ।

ବଳରାମ ସଂଯୋଗ-ଶୃଙ୍ଗାର ପରି ବିୟୋଗ-ଶୃଙ୍ଗାର ଚିତ୍ରଣରେ ମଧ୍ୟ ଅତ୍ୟନ୍ତ ନିପୁଣ ଥିଲେ । ବିରହାବସ୍ଥାରେ ଶୃଙ୍ଗାର-ରସ ପରିପାକ ହୁଏ । ସଂଯୋଗ କାଳରେ ଶରୀରର ପ୍ରମୁଖତା ଥାଏ କିନ୍ତୁ ବିରହରେ ଇନ୍ଦ୍ରିୟଜନ୍ୟ ସୁଖ ସ୍ଥାନରେ ପ୍ରିୟଦର୍ଶନର କାମନା ବିଶେଷ ଭାବେ ଜାଗ୍ରତ ହୋଇ ଉଠେ । ପ୍ରିୟର କୁଶଳ-ସମାଚାର ବା ସନ୍ଦେଶ ଜାଣିବା ପାଇଁ ମନରେ ବ୍ୟାକୁଳତା ବୃଦ୍ଧିପାଏ । ସେତେବେଳେ ନାୟିକାର ସୌନ୍ଦର୍ଯ୍ୟ ମନକୁ ବାରମ୍ବାର ଆନ୍ଦୋଳିତ କରେ । ବିୟୋଗ-ଜନ୍ୟ ବ୍ୟାକୁଳତା ଓ ଦୈନ୍ୟର ଚିତ୍ରଣ କରିବା ପାଇଁ କବି ବଳରାମ ଆରଣ୍ୟକ କାଣ୍ଡରୁ ସୁନ୍ଦରାକାଣ୍ଡ ପର୍ଯ୍ୟନ୍ତ ବିଷୟବସ୍ତୁକୁ ଗ୍ରହଣ କରିଛନ୍ତି । ସୀତାଙ୍କ ସନ୍ଦେଶ ପାଇବା ପାଇଁ ଶ୍ରୀରାମ କେବଳ ମନୁଷ୍ୟମାନଙ୍କ ଠାରେ ଆକୁଳ ପ୍ରାର୍ଥନା କରିନାହାନ୍ତି, ସେ ବକ, ଚକ୍ରବାକ, କୁକ୍କୁଟ ପ୍ରଭୃତି ପକ୍ଷୀ ଏପରିକି ବନ ଓ ପର୍ବତକୁ ମଧ୍ୟ ଆକୁଳ ନିବେଦନ କରିଛନ୍ତି । ସୀତାଙ୍କ ବିରହରେ ସେ ବାରମ୍ବାର ଅଚେତ ହୋଇ ଯାଉଥିବା ଓ ପାଗଳଙ୍କ ପରି ପ୍ରଳାପ କରୁଥିବା ପ୍ରାୟ ଦେଖିବାକୁ ମିଳିଥାଏ । ସେହିପରି ସୀତା ମଧ୍ୟ ଶ୍ରୀରାମଙ୍କ ବିରହରେ ଜୀର୍ଣ୍ଣ, ଶୀର୍ଣ୍ଣ ହୋଇ ମଳିନ ବେଶରେ ଜୀବନଯାପନ କରୁଥିଲେ ।

ଶ୍ରୀରାମ ଓ ସୀତାଙ୍କ ସଂଯୋଗ-ଶୃଙ୍ଗାର ବ୍ୟତୀତ 'ଜଗମୋହନ ରାମାୟଣ'ରେ ଅନ୍ୟ ଏକ ପ୍ରକାରର ସଂଯୋଗ-ଶୃଙ୍ଗାରର ଚିତ୍ର ମିଳେ । ଏହି ବର୍ଣ୍ଣନା ପ୍ରଣୟର ଆଦର୍ଶ ଦ୍ୱାରା ଅନୁପ୍ରାଣିତ ନୁହେଁ । ଏଥିରେ ବିଭାଣ୍ଡକଙ୍କ ଭଣ୍ଡତା, ଋଷ୍ୟଶୃଙ୍ଗଙ୍କ ଅଜ୍ଞାନତା, ବିଶ୍ୱାମିତ୍ରଙ୍କ କାମୁକତା, ଗଙ୍ଗାକୂଳରେ ବାସ କରୁଥିବା ତପସ୍ୱୀଙ୍କର ବିମୂଢ଼ତା ଓ ରାବଣର ଅହଙ୍କାରିତା ପ୍ରକାଶିତ ।

ବିଭାଣ୍ଡକ ସ୍ନାନରତା ଉର୍ବଶୀର ରୂପରେ ମୁଗ୍ଧ ହୋଇ ମନେ ମନେ ସଂଯୋଗ-ଶୃଙ୍ଗାରର ଚିତ୍ର ଅଙ୍କନ କରି ସେ ନିଜ ସାଧନା ମାର୍ଗରୁ ବିଚ୍ୟୁତ ହୋଇଥିଲେ । ଋଷ୍ୟଶୃଙ୍ଗ ମଧ୍ୟ ନିଜର ଅଜ୍ଞାନତା ଯୋଗୁଁ ବହୁ ନାରୀ ସହ ସମ୍ଭୋଗ ଦୋଷରେ ଭାଗୀ ହେଲେ । ବିଶ୍ୱାମିତ୍ର ତପସ୍ୟା ଦ୍ୱାରା ବ୍ରହ୍ମର୍ଷି ପଦ ପାଇଁ ଲାଳାୟିତ ହେଉଥିବା ଅବସ୍ଥାରେ ମେନକା ଓ ରମ୍ଭାଙ୍କ ରୂପରେ ଆସକ୍ତ ହୋଇ ତପସ୍ୟା ଭଙ୍ଗ କରିଥିଲେ । ଗଙ୍ଗା କୂଳରେ ବାସ କରୁଥିବା ତପସ୍ୱୀ ଗଙ୍ଗାର ପବିତ୍ରତାକୁ ଭୁଲି, ନିଜ ତପସ୍ୟାକୁ ତ୍ୟାଗକରି ଶୁଣ୍ଢୀ ବଧୂର ପ୍ରଣୟ ପ୍ରାର୍ଥୀ ହେଲେ ଓ ଶେଷରେ ସୁରାଭାଣ୍ଡ ମଧ୍ୟରେ ଜୀବନ ତ୍ୟାଗ କଲେ । ରାବଣ ରମ୍ଭା ଓ ବେଦବତୀ ଉପରେ ବଳାତ୍କାର କରି ଶାପଭାଜନ ହୋଇଥିଲେ । ଏ ସବୁ ଚିତ୍ରରେ ପବିତ୍ର ପ୍ରଣୟ ନାହିଁ । ସମାଜର ପ୍ରତିଷ୍ଠିତ ବ୍ୟକ୍ତିମାନେ ନିଜ ପ୍ରତିଷ୍ଠାର ସୁବିଧା ନେଇ କିପରି ବିଭିନ୍ନ ଅପକର୍ମରେ ଲିପ୍ତ ରହୁଥିଲେ, ସେ ସବୁକୁ ଦେଖାଇବା ପାଇଁ ଏହିସବୁ ପ୍ରସଙ୍ଗର ଅବତାରଣା କରାଯାଇଛି । ସାଧାରଣ ଲୋକେ ଏପରି ଅପକର୍ମ କରିବା ସ୍ୱାଭାବିକ କିନ୍ତୁ ପ୍ରଜାପାଳକ ରାଜା, ତପସ୍ୟାରତ ମୁନି, ଋଷି ଓ ବେଦବିଦ୍ୟା ପ୍ରବୀଣ ବ୍ରାହ୍ମଣଙ୍କ ପାଇଁ ଏସବୁ ଅକ୍ଷମଣୀୟ ଅପରାଧ । ବଳରାମ ସତ୍ୟବ୍ରତ ଉପାଖ୍ୟାନରେ ବ୍ରାହ୍ମଣ କନ୍ୟାକୁ ପ୍ରେମକରି ବିବାହ କରିଥିବା ସତ୍ୟବ୍ରତକୁ ସତ୍ୟ ରକ୍ଷା କରିଥିବା ହେତୁ ସମାଜରେ ଦଣ୍ଡନୀୟ ଦୋଷରୁ ମୁକ୍ତକରି ଦେଇଥିବା ବେଳେ, ବ୍ରାହ୍ମଣ ଯୁବକ ଷଣୀକର ନିଜ ବିବାହିତା ପତ୍ନୀକୁ ବନ୍ଧାପନା ପୂର୍ବରୁ ବଳାତ୍କାର କରିବାକୁ ଇଚ୍ଛା କରିଥିବାରୁ ରାଜାଙ୍କ ଦ୍ୱାରା ଦଣ୍ଡିତ ହୋଇଛନ୍ତି ।

ପ୍ରଣୟ ସମ୍ପର୍କରେ ବଳରାମଙ୍କ ଦୃଷ୍ଟିକୋଣ ଅତ୍ୟନ୍ତ ସ୍ପଷ୍ଟ ଥିଲା । ସେ ସମାଜରେ କାମୁକତାକୁ ପ୍ରଶ୍ରୟ ଦେବାପାଇଁ ଚାହିଁ ନ ଥିଲେ । ଚକ୍ରବାକର ଉକ୍ତିରେ ଏହା ପ୍ରକାଶିତ । ସେଥିରେ ସେ କାମାଶକ୍ତ ହୋଇ ପଶୁପକ୍ଷୀଙ୍କ ରତିକ୍ରୀଡ଼ା ଦେଖିବାକୁ ମଧ୍ୟ ଏକ ଅପରାଧ ଭାବେ ଗଣନା କରିଛନ୍ତି । ବଳରାମ 'ଜଗମୋହନ ରାମାୟଣ'ରେ 'କାମ'କୁ ମନୁଷ୍ୟ ସମାଜର ଏକ ଶ୍ରେଷ୍ଠ ଭାବନା ଭାବେ ଚିତ୍ରଣ କରିଛନ୍ତି । ପ୍ରେମର ଅପୂର୍ବ ମାଦକତା, ଅଦ୍ଭୁତ ବ୍ୟାକୁଳତା ଓ ପ୍ରିୟ-ବିୟୋଗରେ ମିଳନର ଉତ୍କଟ ଅଭିଳାଷ ପ୍ରଭୃତି ପ୍ରବୃତ୍ତିକୁ ଚିତ୍ରଣ କରିବା ସଙ୍ଗେ ସଙ୍ଗେ ପ୍ରାଣୋତ୍ସର୍ଗ ଓ ସଂପୂର୍ଣ୍ଣ ସମର୍ପଣ ଭାବକୁ ଅତ୍ୟଧିକ ମହତ୍ୱ ଦେଇଛନ୍ତି । କ୍ଷଣିକ ସୁଖ ଅପେକ୍ଷା ଚିରନ୍ତନ ଆନନ୍ଦ ହୋଇଛି ତାଙ୍କ ପ୍ରଣୟର

ଆଦର୍ଶ ।

**ମୋକ୍ଷ :** ଭକ୍ତ ଓ ସାଧକମାନେ ସାଧାରଣତଃ 'ମୋକ୍ଷ' ଉପରେ ବିଚାର କରୁଥିଲେ ହେଁ, ଏହା ଇହଲୋକରେ ନୁହେଁ, ପରଲୋକରେ ମିଳିଥାଏ । ବଳରାମ ଏଥିପାଇଁ ସ୍ୱର୍ଗପ୍ରାପ୍ତି, ବୈକୁଣ୍ଠ ପ୍ରାପ୍ତି, ମୁକ୍ତି, ନିର୍ବାଣ ପ୍ରଭୃତି ଶବ୍ଦର ବ୍ୟବହାର କରିଛନ୍ତି । ସାଧକମାନେ ଏ ସବୁ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ଥିବା କହୁଥିଲେ ହେଁ, ସାଧାରଣ ଲୋକେ ଏ ସବୁକୁ ମୋକ୍ଷର ପର୍ଯ୍ୟାୟବାଚୀ ଶବ୍ଦ ଭାବେ ଗ୍ରହଣ କରିଥାନ୍ତି । ବଳରାମ ମଧ୍ୟ ଏଥିରେ କୌଣସି ପାର୍ଥକ୍ୟ ଦେଖି ନାହାନ୍ତି ଏବଂ ସବୁ ଭଲକାମର ଅନ୍ତିମ ଲକ୍ଷ୍ୟ ଭାବେ 'ସ୍ୱର୍ଗ ପ୍ରାପ୍ତି'କୁ ଆଦର୍ଶ ରୂପେ ଗ୍ରହଣ କରିଥିଲେ ହେଁ, ନିଜେ ବୈକୁଣ୍ଠପ୍ରାପ୍ତିକୁ ତୁଚ୍ଛ ଜ୍ଞାନ କରୁଥିଲେ । ଇଚ୍ଛା କରିଲେ ମୁଁ ବୈକୁଣ୍ଠକୁ ଯିବି, ଅର୍ଥାତ୍ ସେ ଚାହିଁଛନ୍ତି ଜଗନ୍ନାଥଙ୍କ ସେବା । ସେ ତାଙ୍କରିଠାରେ ଶରଣ ପଶିବାକୁ ଜୀବନର ମହାନ୍ କର୍ତ୍ତବ୍ୟ ରୂପେ ବିଚାର କରିଛନ୍ତି । ଭଗବାନଙ୍କଠାରେ ଆତ୍ମସମର୍ପଣ ହିଁ ଥିଲା ତାଙ୍କ ଜୀବନର ଚରମ ଲକ୍ଷ୍ୟ ।

ବଳରାମ 'ମୋକ୍ଷ' କହିଲେ ଜୀବନ୍ମୁକ୍ତ ଅବସ୍ଥାକୁ ହିଁ ଗ୍ରହଣ କରିଥିଲେ । ଦେହ ଥାଇ ବିଦେହ ହେବା ଥିଲା ତାଙ୍କ ଜୀବନର ଆଦର୍ଶ । 'ବ୍ରହ୍ମାଣ୍ଡ ଭୂଗୋଳ'ର ବିଦେହ ରାଜନ ଉପାଖ୍ୟାନରେ ସେ ଏହି ଭାବନାକୁ ସ୍ପଷ୍ଟ କରିଛନ୍ତି । ତାଙ୍କ ମତରେ ଏ ଦେହ ସବୁଦିନେ ରହେ ନାହିଁ । ଏହାକୁ ଅମର କରିବାକୁ ହେଲେ ମନକୁ ସଂଯତ କରିବାକୁ ହୋଇଥାଏ । ଏହା ଯୋଗଦ୍ୱାରାହିଁ ସମ୍ଭବ । 'ଯୋଗେଣ ଜିଣିବୁ ଦେହକୁ' । ଏହି ଯୋଗ ବଳରେ ବିଦେହ ରାଜା ଭଗବାନଙ୍କୁ ଯେତେବେଳେ ଦର୍ଶନ କଲେ, ସେତେବେଳେ ତାଙ୍କ ଜୀବନର ସବୁ ସଂଶୟ ଛିନ୍ନ ହୋଇ ଯାଇଥିଲା । ସେତେବେଳେ ଭଗବାନ ପ୍ରସନ୍ନ ହୋଇ ତାକୁ 'ବିଦେହ' ନାମ ଦେଲେ ।

ଯେଣୁ ଯେ ଦେହକୁ ତେଜିଲା ।
ମୋ ପାଦେ ଦର୍ଶନ ସେ କଲା ।

'ବ୍ରହ୍ମାଣ୍ଡ ଭୂଗୋଳ'ର ବର୍ଣ୍ଣନା ଅତି ସଂକ୍ଷିପ୍ତ । ତେବେ ବି ଦେହ କହିଲେ ସେ ବୁଝିଛନ୍ତି, ପ୍ରପଞ୍ଚ, ସଂଶୟ ଓ ମୋହଗ୍ରସ୍ତ ଦେହ । ଦେହରୁ ଏ ସବୁ ଦୂର ହେଲେ ଏହା 'ବିଦେହ'ରେ ପରିଣତ ହୁଏ । ଏଥିରେ ବିଦେହାବସ୍ଥା ପାଇଁ ଯୋଗ ପ୍ରକ୍ରିୟା ଓ ହରିସ୍ମରଣ ଉଭୟକୁ ଗ୍ରହଣ କରାଯାଇଛି । ବୋଧହୁଏ ଶରୀରକୁ ସଂଯତ କରିବା ପାଇଁ ଯୋଗକୁ ଏବଂ ମନର ସ୍ଥିରତା ପାଇଁ ହରିସ୍ମରଣକୁ ସେ ଗ୍ରହଣ କରିଛନ୍ତି ।

ସାଧକ ବିଦେହାବସ୍ଥା ଲାଭ କଲେ ଯେଉଁ ମୁକ୍ତି ପାଏ, ତାକୁ ବିଦେହ ମୁକ୍ତି କୁହାଯାଏ । ଏହି ବିଦେହ ଅବସ୍ଥା ହେଉଛି, ଦେହ ଥାଇ ଦେହ ନ ଥିବାର ଜ୍ଞାନ । 'ବ୍ରହ୍ମ ସୁଧାନିଧି'ର ଧର୍ମଧ୍ୱଜ ରାଜା ଥିଲେ ଏହାର ଆଦର୍ଶ । ''ସେ ରାଜା ଅତ୍ୟନ୍ତ ବୈଷ୍ଣବ

ଅଟଇ । ବାସୁଦେବରେ ତହିଁ ମନ ବୁଦ୍ଧି ଦେଇ, ବାହ୍ୟ ଜ୍ଞାନ ପାଶୋରି ଥାଇ । ଜଡ଼ ଗୋଟିଏ ପ୍ରାୟ ହୋଇଥାଇ । ସ୍ତ୍ରୀମାନେ ଧରି ସକଳ କର୍ମ କରାନ୍ତି । ଦେଖୁଥିଲେ ହେଁ ନ ଦେଖାଇ । ଶୁଣୁଥିଲେ ହେଁ ନଶୁଣଇ । ଶୀତ ଉଷ୍ଣ ନ ଜାଣଇ । ଅମନାତ୍ୟମାନେ ରାଜ୍ୟ ଚିନ୍ତା କରୁଥାନ୍ତି । ତିକ୍ତ, ଅମ୍ଳ, କଟୁ, କଷା, ମଧୁର, ଲବଣାଦି ସ୍ୱାଦୁମାନନ୍ତ ନ ଜାଣଇ । ସେ ମହାତ୍ମା ବାସୁଦେବରେ ତହିଁ ମନ ବୁଦ୍ଧି ଦେଇ ଦେହ ଜ୍ଞାନ ଛାଡ଼ି ରାଜା ହୋଇଥାଇ’’ । ବଳରାମ ଦାସ ମଧ୍ୟ ଏହି ବ୍ୟବସ୍ଥାର ବର୍ଣ୍ଣନା କରି କହିଛନ୍ତି ।

ବିଦେହାବସ୍ଥା ଜୀବନର ଅନ୍ତିମ ଲକ୍ଷ୍ୟ ହେଲେବି ଏହାର ଆରମ୍ଭ ହୁଏ ସଂସାର ସମ୍ପର୍କିତ ପ୍ରକୃତ ଜ୍ଞାନରୁ । ବହୁ ସନ୍ଥ ସାଧକଙ୍କ ପରି ବଳରାମ ମଧ୍ୟ କହୁଥିଲେ ଏ ସଂସାର ନଶ୍ୱର । ତାଙ୍କ ମତରେ ଏ ସଂସାର ଦର୍ପଣର ଛାୟା ସଦୃଶ ଅନିତ୍ୟ । ମାୟାଗ୍ରସ୍ତ ପ୍ରାଣୀ ପୁତ୍ର, କନ୍ୟା ଓ ସ୍ତ୍ରୀକୁ ‘ମୋର’ ‘ମୋର’ କହି ପାଗଳ ହେଉଥିଲେ ହେଁ, ପ୍ରକୃତରେ କେହି କାହାର ନୁହଁନ୍ତି । ରାତ୍ରିର ସ୍ୱପ୍ନ ପରି ଏ ଜୀବନ ସବୁବେଳେ କ୍ଷୟମୁଖରେ ଗତି କରୁଥାଏ । ଅଯୋଧ୍ୟା କାଣ୍ଡରେ ବଶିଷ୍ଠ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ସଂସାରର ନଶ୍ୱରତା ସଂପର୍କରେ ଶ୍ରୀରାମଙ୍କୁ ସଚେତନ କରିଛନ୍ତି । କିଷ୍କିନ୍ଧ୍ୟା କାଣ୍ଡରେ ଶ୍ରୀରାମଙ୍କ ବ୍ୟାକୁଳତା ଦୂର କରିବା ପାଇଁ ବହୁ ଋଷିଙ୍କ ମୁହଁରୁ ବଶିଷ୍ଠଙ୍କ ଉକ୍ତିର ପ୍ରତିଧ୍ୱନି ଶୁଣାଯାଇଛି । ବଶିଷ୍ଠ କହିଛନ୍ତି,

> ସଂସାର ମାୟା ଯେ ଦର୍ପଣର ଛାୟା
> ଯେତେକ ଦେଖୁଥାଇ ସବୁ ତାର ମାୟା ।
> ଧନ ଯଉବନ ପୁତ୍ର ଦାରା ଆବର
> ଏ ପୁଣ କେହୁ ଯେ ନୋହନ୍ତି କାହାର ।
> ବିଧାତାର ଉପାୟେ ନ ଜାଣନ୍ତି କେହି
> ମୋହୋର ବୋଲିଣ ବୋଲଇ ଏ ଦେହୀ ।
> ମାୟା ସଂସାର ଯେ ଅଟଇ ଅନିତି
> ଯାହା ସେ ଉପାୟେ କଲା ପ୍ରଜାପତି ।

ଏ ସଂସାରରେ ସମସ୍ତେ ମରିବେ । ଏକଥା ଜାଣି ମଧ୍ୟ ମନୁଷ୍ୟ ସମସ୍ତଙ୍କ ଠାରେ ମୋହ ଲଗାଇ ପାଗଳ ହୁଏ । ମୃତ୍ୟୁ ମୁଣ୍ଡ ପାଖରେ ବସିରହିଛି । ‘ମନୁଷ୍ୟ ମୁଣ୍ଡେ ମୃତ୍ୟୁ ବସେ’ । ଏକଥା ଜାଣି ମଧ୍ୟ ମନୁଷ୍ୟ ନିଶ୍ଚିନ୍ତ ହୋଇ ଶୋଇରହେ । ମନୁଷ୍ୟ ଜନ୍ମ ଅତି ଦୁର୍ଲଭ । ଏହା ମହାନ୍ ଭାଗ୍ୟରୁ ମିଳିଥାଏ । ତେଣୁ ମନୁଷ୍ୟକୁ ଏହାର ସଦ୍‌ଉପଯୋଗ କରିବା ଆବଶ୍ୟକ । ଏହାର ଏକମାତ୍ର ଉପାୟ ହେଲା, ଭଗବାନଙ୍କ ନାମ ଜପ, ଭଗବାନଙ୍କଠାରେ ଶରଣ, ଭଗବାନଙ୍କ ପଦସେବା । କ୍ଷୁଧାର୍ଥୀ ବାଛୁରୀ ଯେପରି ମା ପାଖକୁ ଧାବିତ ହୁଏ, ପତିବ୍ରତା ନାରୀ ଯେପରି ପତିକୁ ଧ୍ୟାନ କରେ, ଅଜାତ ଖଗପକ୍ଷୀ

ଯେପରି ମାତାକୁ ଅନୁକ୍ଷଣ ଲୋଡ଼ିଥାଏ, ସେହିପରି ଭକ୍ତ ଭଗବାନମୁଖୀ ହେବା ଆବଶ୍ୟକ। କାରଣ ଏ ସଂସାରର ମାୟାମୋହ ରୂପୀ ଅନ୍ଧକାରକୁ ଦୂର କରିବା ପାଇଁ ସେହି ଏକମାତ୍ର ଜ୍ଞାନପ୍ରଦୀପ। ସେ ଏହି ଘଟରେ ଆତ୍ମା ରୂପରେ ବିଦ୍ୟମାନ। ଭସ୍ମ ଭିତରେ ଅଗ୍ନିପରି, ଜଳ ଭିତରେ ଦେହର ପଦ, ଦର୍ପଣରେ ମୁଖର ପ୍ରତିବିମ୍ବ ପରି ସେ ରୂପ ଶରୀରସ୍ଥ ତ୍ରିକୂଟରେ ବିଦ୍ୟମାନ। ଧ୍ୟାନଚକ୍ଷୁରେ ତାକୁ ଦେଖି ସଂସାରର ମାୟାରୁ ମୁକ୍ତ ହେବା ଆବଶ୍ୟକ।

ବଳରାମ ତାଙ୍କ ସାଧନା ମାର୍ଗକୁ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ବିଭିନ୍ନ ଭାବେ ଆଲୋଚନା କରିଥିଲେ ହେଁ, ଜଗନ୍ନାଥଙ୍କୁ ନିଜର ଏକମାତ୍ର ଦେବତା, ତାଙ୍କର ନାମ ଗାନ, ରୂପ ଦର୍ଶନ ଓ ପାଦସେବାକୁ ଜୀବନର ଶ୍ରେଷ୍ଠ ଆଦର୍ଶ ରୂପେ ଗ୍ରହଣ କରିଥିଲେ। ସେହି ଜଗନ୍ନାଥଙ୍କ ସେବା ହିଁ ଥିଲା ତାଙ୍କର ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି ଓ ବୈକୁଣ୍ଠପ୍ରାପ୍ତିଠାରୁ ଶ୍ରେଷ୍ଠ କାମନା।



# ଜଗମୋହନ ରାମାୟଣ

ବଳରାମ ଦାସଙ୍କ ରଚିତ 'ଜଗମୋହନ ରାମାୟଣ' ଓଡ଼ିଆ ସାହିତ୍ୟର ପ୍ରଥମ ସମ୍ପୂର୍ଣ୍ଣ ରାମାୟଣ । ଏହା ପୂର୍ବରୁ ସାରଳା ଦାସ ଖଣ୍ଡେ ରାମାୟଣ, ବୋଧହୁଏ 'ବିଚିତ୍ର ରମାୟଣ' ରଚନା କରିଥିବା ଅନୁମାନ କରାଯାଉଛି । ତେବେ ତାଙ୍କ 'ମହାଭାରତ'ରେ ସେ ରାମକଥା ସମ୍ବନ୍ଧୀୟ ବହୁ ମୂଲ୍ୟବାନ୍ ସଙ୍କେତ ପ୍ରଦାନ କରିଛନ୍ତି । ବଳରାମ ଦାସ ସେ ସବୁକୁ ଅଧ୍ୟୟନ କରିଥିବାର କୌଣସି ପ୍ରମାଣ ନାହିଁ । ତାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ 'ଜଗମୋହନ ରାମାୟଣ' ପାଇଁ ବିଶେଷ ଉପାଦାନ ନ ଥିଲେ ହେଁ, ସଂସ୍କୃତ ସାହିତ୍ୟର ସମୃଦ୍ଧ ରାମକଥା ତାଙ୍କୁ ଯେ ପ୍ରେରଣା ଦେଇଥିବ, ଏହା ନିଶ୍ଚିତ । ନିଜ ଗ୍ରନ୍ଥ ମଧ୍ୟରେ ସେ ଦୁଇଟି ଗ୍ରନ୍ଥର ସୂଚନା ଦେଇଛନ୍ତି । ପ୍ରଥମଟି ହେଉଛି ସାମବେଦ ଓ ଦ୍ୱିତୀୟଟି ବାଲ୍ମୀକି ରାମାୟଣ ।

ସାମବେଦ ନୁହେଁ, ବେଦରୁ ରାମାୟଣର ଉତ୍ପତ୍ତି ହୋଇଥିବା ଏ ଦେଶର ଏକ ପ୍ରାଚୀନ ପ୍ରତିଷ୍ଠିତ ପରମ୍ପରା । ମନୁଙ୍କ ମତରେ ବିଶ୍ୱର ସମସ୍ତ ପଦାର୍ଥର ସୃଷ୍ଟି ବେଦରୁ । "ବେଦେ ରାମାୟଣେ ଚୈବ" । ମହାଭାରତକାରଙ୍କ ଅନୁଯାୟୀ ଇତିହାସ ଓ ପୁରାଣ ବେଦରୁ ଆସିଛି । ଭାଗବତକାର ମଧ୍ୟ କହନ୍ତି ଯେ ପୁରାଣ ଓ ଇତିହାସ ପାଠକଲେ ବେଦ-ଜ୍ଞାନ ପରିବର୍ଦ୍ଧିତ ହୁଏ । ରାମାୟଣ ମଧ୍ୟ ବିଷ୍ଣୁ ଓ ବେଦକୁ ଅଭିନ୍ନ ରୂପେ ଗ୍ରହଣ କରେ । ଏହା ମତରେ ବିଷ୍ଣୁ ଶ୍ରୀରାମ ରୂପରେ ଅବତାର ଗ୍ରହଣ କଲାବେଳେ ବେଦ ମଧ୍ୟ ଅବତୀର୍ଣ୍ଣ ହୋଇଥିଲା 'ମନ୍ତ୍ର-ରାମାୟଣ'ର ଲେଖକ ନୀଳକଣ୍ଠ ଚତୁର୍ଦ୍ଧର ମଧ୍ୟ ଏହି ମତର ପକ୍ଷପାତୀ । ସେ ବେଦକୁ ରାମକଥାର ମୂଳ ଉତ୍ସ ରୂପେ ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି ।

ଏହିସବୁ ମତକୁ ଅନୁସରଣ କରି ବଳରାମ ଦାସ ମଧ୍ୟ ରାମୟଣକୁ ବେଦସମ୍ଭୂତ ଗ୍ରନ୍ଥରୂପେ ସ୍ୱୀକାର କରିଛନ୍ତି । ବେଦ ସ୍ଥାନରେ ସାମବେଦର ଉଲ୍ଲେଖ ସାମବେଦର ଶ୍ରେଷ୍ଠତ୍ୱ ଘୋଷଣା କରେ । ଗୀତାରେ ଅଛି, 'ବେଦାନାଂ ସାମବେଦୋଽସ୍ମି' । ତେଣୁ ବଳରାମ ଦାସ ବେଦ ନ କହି ସାମବେଦ କହିଛନ୍ତି । ଆଦିକାଣ୍ଡରେ ଲେଖାଅଛି-

ଶ୍ରୀରାମ ଚରିତ୍ର ଯେ ସାମବେଦୁଁ ବାଣୀ
ବାଇମୀକ ମୁନି ଯାହା ସେ ବଖାଣି ।

ସୀତାଙ୍କର ଉତ୍ପତ୍ତି ମଧ୍ୟ ବେଦରୁ ।

ସାମବେଦରୁ ସେ ହୋଇଲା ସମ୍ଭୂତା
ମେଦନୀ ଯେ ଦେବୀ ଅଟଇ ତା'ର ମାତା ।

ଆଦିକାଣ୍ଡର ଶେଷରେ କବି କହିଛନ୍ତି,

ଯେ ସେ ଆଦ୍ୟକାଣ୍ଡ ସାମବେଦୁଂ ଜାତ
ଯାହା ସେ ବ୍ରହ୍ମା କଲାକ ସମ୍ମତ ।

ବଳରାମ ଦାସଙ୍କ ପ୍ରତିଷ୍ଠିତ ପରମ୍ପରାକୁ ଅନୁସରଣ କରି ପରବର୍ତ୍ତୀ ଯୁଗରେ 'ରାମରସାମୃତ'ର ରଚୟିତା କାହ୍ନୁ ଦାସ, 'ଟୀକା ରାମାୟଣ'ର ଲେଖକ ମହେଶ୍ୱର ଦାସ, 'ବିଲଙ୍କା ରାମାୟଣ'ର କବି ସିଦ୍ଧେଶ୍ୱର ଦାସ ଓ 'ବିଚିତ୍ର ରାମାୟଣ'କାର ଭୂୟାଁ ମାଧବ ଦାସ (ଉତ୍କଳ ବିଶ୍ୱବିଦ୍ୟାଳୟ, ପାଣ୍ଡୁଲିପି, ପୃ. ୧୩୩) ରାମାୟଣକୁ 'ସାମବେଦୁଁ ଜାତ' କରିଛନ୍ତି ।

ବେଦରେ ରାମାୟଣବର୍ଣ୍ଣିତ କେତେକ ବିଶିଷ୍ଟ ଚରିତ୍ର, ଦେଶ ଓ ନଦୀର ନାମ ତଥା ସମଭାବାପନ୍ନ ଆଖ୍ୟାୟିକା ଦେଖି ୱେବର, ମାକ୍‌ଡୋନାଲ ଓ ଆକୋବି ପ୍ରମୁଖ ପାଶ୍ଚାତ୍ୟ ବିଦ୍ୱାନମାନେ ମଧ ବେଦକୁ ରାମାୟଣର ମୂଳରୂପେ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ବେଦରୁ ସେମାନେ ଶ୍ରୀରାମ (ଋ ବେ. ୧୦ମ ମଣ୍ଡଳ, ୧୧୩-୧୧୪, ଅଥର୍ବ, ନବମ ମଣ୍ଡଳ, ୩୧-୧; ସାମବେଦ, ପଞ୍ଚଦଶ ମଣ୍ଡଳ, ୨, ୩; ଶୁକ୍ଳ, ଯଜୁଃ ୨୯-୫୯), ସୀତା (ଋକ୍ ବେଦ, ୧୦ମ, ୮୫, ତୃତୀୟ; ୮-୯), ଦଶରଥ ଋକ୍‌ବେଦ, ୧ମ ମଣ୍ଡଳ, ୧୨୬.୪,୨,୧,୧୧, ଓ ଜନକ ତୈତ୍ତିରୀୟ ବ୍ରାହ୍ମଣ (ତୃତୀୟ ମଣ୍ଡଳ - ୧୦-୯) ପ୍ରଭୃତି ଚରିତ୍ର, ଗଙ୍ଗା ଯମୁନା ପ୍ରଭୃତି ନଦୀ, ଅଯୋଧ୍ୟା ଓ ତ୍ରିବେଣୀ ସଙ୍ଗମ ସଦୃଶ ସ୍ଥାନର ସନ୍ଧାନ କରିଛନ୍ତି । ଏପରିକି ରାମଙ୍କ ପୂର୍ବପୁରୁଷମାନଙ୍କ ମଧ୍ୟରୁ ଇକ୍ଷ୍ୱାକୁ, ସୁଦ୍ୟୁମ୍ନ, ସୁଦାଶ ଓ ଯବନାଶ୍ୱ, ସାଗର ଓ ତାଙ୍କ ପୁତ୍ରମାନଙ୍କର ନାମ ମଧ ସେମାନେ ଖୋଜିଛନ୍ତି । ସେମାନଙ୍କ ମତରେ ସୀତାଙ୍କ ଜନ୍ମକହାଣୀର ମୂଳ ଉତ୍ସ ବୈଦିକ ସାହିତ୍ୟରେ ଦେଖିବାକୁ ମିଳେ । ଇନ୍ଦ୍ର ଓ ବୃତ୍ରାସୁରର ସଂଗ୍ରାମ, ଓ ସରମା ଉପାଖ୍ୟାନକୁ ଯଥାକ୍ରମେ ରାମ ଓ ରାବଣର ଯୁଦ୍ଧ ଓ ହନୁମାନଙ୍କ ସୀତା ଅନ୍ୱେଷଣ ସହିତ ତୁଳନା କରାଯାଇଛି ।

ଏ ସବୁ ନାମ ଓ ଉପାଖ୍ୟାନର ତୁଳନାସମ୍ବନ୍ଧେ ରାମାୟଣର ପୂର୍ଣ୍ଣରୂପ ସେ ବେଦରେ ନାହିଁ ଏ କଥା ନିଶ୍ଚିତ । ତେବେ ଏ କଥା ଅନୁମାନ କରାଯାଇ ପାରେ ଯେ ରାମକଥାର ଆଦି ରଚୟିତା ବାଲ୍ମୀକି ସେ ସମୟରେ ଲୋକରେ ପ୍ରସିଦ୍ଧ ହୋଇଥିବା ଓ ବେଦରେ ସ୍ଥାନ ପାଇଥିବା ବ୍ୟକ୍ତିମାନଙ୍କର ଇତିବୃତ୍ତକୁ କାବ୍ୟରୂପରେ ପ୍ରଥମଥର ପାଇଁ ଉପସ୍ଥାପିତ କରିଥିବେ ।

**ବାଲ୍ମୀକି ରାମାୟଣ ଓ ଜଗମୋହନ ରାମାୟଣ :**

ବଳରାମ ଦାସ ନିଜ ମହାନ୍ ଗ୍ରନ୍ଥରେ ରାମକଥାର ଆଦିବକ୍ତା ବାଲ୍ମୀକିଙ୍କୁ ଅତି ଶ୍ରଦ୍ଧାପୂର୍ଣ୍ଣ ହୃଦୟରେ ବାରମ୍ବାର ସ୍ମରଣ କରିଛନ୍ତି । ତାଙ୍କ ଶ୍ରଦ୍ଧାଞ୍ଜଳିରୁ ବାଲ୍ମୀକିଙ୍କ ପ୍ରତି

ତାଙ୍କ ହୃଦୟର ଭାବ ଅତି ସ୍ପଷ୍ଟଭାବେ ପ୍ରକାଶ ପାଇଥାଏ । ମହାକବି ବାଲ୍ମିକିଙ୍କର ମହିମା ଗାନ କରି କବି ଲେଖିଛନ୍ତି -

ବନ୍ଦଇ ବାଲ୍ମିକ ମୁନିର ଚରଣ
ଯାହାର ମୁଖରୁ ରାମାୟେଣ ହୋଇଲା ଉଚ୍ଚାରଣ ।
ସଂସାର ତିମିରିକି ତୁହି ସେ ପ୍ରଦୀପ
ବ୍ରହ୍ମାକୁ ସମାନ ତୁ ଅଟୁ ଅନୁରୂପ ।
ତୋହୋରେ ମେଳେଛାଦି ମୁକତ ହୋଇଲେ
ତିନି ତଇଲୋକ ତୋହୋରେ ପାରଗଲେ ।
ତୁ ଯେବେ ନ କହନ୍ତୁ ରାମାୟେଣ କାହାଣୀ
ସଂସାର ବୁଡ଼ାନ୍ତାନି ମାହାଲକ ପାଣି ।
ତୁ ସେ ମହାରଷି ସଂସାର ମତ ଜାଣୁ । ଶ୍ରୀରାମ ଚରିତ ମୁଖରେ ବଖାଣୁ ।
ଧନ୍ୟ ବଦନ ତୋର ମହିମା ଅପାର ।
ତୋହୋର ହୃଦରେ ଶ୍ରୀହରି ଆସନ
ଭୋ ମୁନିବର ମୋତେ ହୋଇବାକ ପ୍ରସନ୍ନ ।

ବାଲ୍ମୀକିଙ୍କ ରାମାୟଣର ଅବଲମ୍ବନରେ ପରବର୍ତ୍ତୀ ସୁଜ୍ଞ ବିଦ୍ୱଜ୍ଜନମାନେ ବହୁ ପୁରାଣ, ପୁସ୍ତକ ଓ ନାଟକ ପ୍ରଣୟନ କଲେ । ସେ ସବୁକୁ ଶ୍ରବଣ କରି କବି ବଳରାମ ସଂସାରର ହିତସାଧନ ପାଇଁ ଓଡ଼ିଆ ଭାଷାରେ ସାତକାଣ୍ଡ ରାମାୟଣ ରଚନା କରିଛନ୍ତି । ଏ ଯୁଗରେ ତାଙ୍କ ରଚିତ ଗ୍ରନ୍ଥକୁ ଅନେକ ନାଁ ଦେଇଥିଲେ ହେଁ ସେ ନିଜେ ଏ ଗ୍ରନ୍ଥକୁ 'ଜଗମୋହନ' କହିଛନ୍ତି । 'ଜଗମୋହନ' ଜଗନ୍ନାଥର ପର୍ଯ୍ୟାୟବାଚୀ ଶବ୍ଦ ନୁହେଁ । ନୀଳାଚଳବାସୀ ଜଗନ୍ନାଥ ତାଙ୍କର ଆରାଧ୍ୟ ଦେବତା ଓ ସେ ତାଙ୍କର ଆଜ୍ଞାରେ ତାଙ୍କରି ପ୍ରେରଣାରେ ଏତେ ବଡ଼ ଗ୍ରନ୍ଥ ରଚନା କରିବାକୁ ସାହାସ କରିଥିଲେ ହେଁ ଏହି ଗ୍ରନ୍ଥ ରଚନାମୂଳରେ ଜଗତର ହିତସାଧନ କରିବା ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା । ଆଦିକାଣ୍ଡରେ ପ୍ରଦତ୍ତ ଜଗମୋହନ ଶବ୍ଦର ବ୍ୟାଖ୍ୟାରୁ ତାଙ୍କ ମନକଥା ସ୍ପଷ୍ଟ ଭାବେ ଜାଣି ହୁଏ । ଜଗତକୁ ମୋହି ପାରୁଥିବା ଶ୍ରୀରାମଙ୍କ ପରି ରାମକଥା ମଧ୍ୟ ଜଗତକୁ ମୁଗ୍ଧ କରିବାପାଇଁ ସମର୍ଥ । ସେଥିପାଇଁ ଏ ଗ୍ରନ୍ଥର ନାମ 'ଜଗମୋହନ ରାମାୟଣ' । କବି କହିଛନ୍ତି -

ଯାହାକୁ ସକଳ ଜନ ମୋହି ହୋନ୍ତି ।
ଜଗତମୋହୋନ ସେ ତାହାକୁ ବୋଲନ୍ତି ।
ଯେ ଜଗତମୋହୋନ ତାହାକୁ ଦେଖିଲେ ସେ ବଶ୍ୟ ହୋଇ ।
ଯାହାକୁ ବଶ୍ୟ ହୋଇ ତାହାକୁ ଲଭଇ ।

ଷୋଡ଼ଶ ଶତାବ୍ଦୀ ଅର୍ଥାତ୍ 'ଜଗମୋହନ ରାମାୟଣ' ରଚିତ ହେଲାବେଳକୁ ବାଲ୍ମୀକି ରାମାୟଣର ତିନୋଟିଯାକ ପାଠ ଏ ଦେଶରେ ପ୍ରଚାରିତ ହୋଇସାରିଥିଲା । ସେ ତିନୋଟି ପାଠ ହେଉଛି - ଦାକ୍ଷିଣାତ୍ୟ ପାଠ, ପୂର୍ବଦେଶୀୟ ବଙ୍ଗୀୟ ପାଠ ଓ ପଶ୍ଚିମୋତ୍ତରୀୟ ପାଠ । ଏ ତିନୋଟି ପାଠ ମଧ୍ୟରୁ ବଳରାମ ଦାସ କେଉଁ ପାଠ ଶ୍ରବଣ କରି ତାଙ୍କ ଗ୍ରନ୍ଥରେ ଅନୁସରଣ କରିଥିଲେ ତାହା ସେ କହି ନ ଥିଲେ ହେଁ ତାଙ୍କ ଗ୍ରନ୍ଥର ଆଲୋଚନାରୁ ଏ ବିଷୟରେ ସବିଶେଷ ସଙ୍କେତ ମିଳିଥାଏ ।

ବାଲ୍ମିକୀ ରାମାୟଣର ବିଭିନ୍ନ ପାଠର ବିଭିନ୍ନତାକୁ ବିଶ୍ଳେଷଣ କରି ରାମକଥାର ଅନ୍ୟତମ ପ୍ରସିଦ୍ଧ ବିଦ୍ୱାନ ଡକ୍ଟର କାମିଲ ବୁଲ୍‌କେ, ଏଥିମଧ୍ୟରୁ ୧୬୪ଟି ଘଟଣାର ହିସାବ ଦେଇଛନ୍ତି । ସେ ସବୁକୁ ମୂଳ ପ୍ରମାଣ ରୂପେ ଗ୍ରହଣ କରି 'ଜଗମୋହନ ରାମାୟଣ'ରେ ସେସବୁର ଉପସ୍ଥିତି ଓ ଅନୁପସ୍ଥିତିକୁ ଗଣନା କରି ଏ ସମ୍ବନ୍ଧରେ ଏକ ମତ ଦିଆଯାଇ ପାରିବ ବୋଲି ଆଶା; ଆଲୋଚନାର ସୁବିଧା ପାଇଁ ଏ ସବୁ ବିଭିନ୍ନତାକୁ ପାଞ୍ଚୋଟି ବିଭାଗରେ ବାଣ୍ଟି ଦିଆଯାଇଛି ।

(୧) ଯେଉଁସବୁ ଘଟଣା ବାଲ୍ମୀକି ରାମାୟଣର ତିନୋଟି ପାଠକୁ ସମ୍ପୂର୍ଣ୍ଣଭାବେ ସ୍ୱତନ୍ତ୍ର କରିଦିଏ ଅଥଚ ଜଗମୋହନ ରାମାୟଣରେ ଗୃହୀତ ।

(୨) ତିନୋଟି ପାଠର ଯେଉଁସବୁ ବିଭିନ୍ନତାକୁ ବଳରାମଦାସ ସମ୍ପୂର୍ଣ୍ଣଭାବେ ପରିତ୍ୟାଗ କରିଛନ୍ତି ।

(୩) ଯେଉଁସବୁ ବିଷୟବସ୍ତୁ ଭିନ୍ନ ଭିନ୍ନ ରୂପରେ ତିନୋଟିଯାକ ପାଠରେ ମିଳେ, ଓ ଯାହାକୁ ବଳରାମ ଦାସ ନିଜ ରାମାୟଣରେ ଗ୍ରହଣ କରିନାହାନ୍ତି ।

(୪) ଯେଉଁସବୁ ଘଟଣା ଗୋଟିଏ ପାଠରୁ ଆଉ ଗୋଟିଏ ପାଠରେ ବଦଳିଛି ଓ ବଳରାମ ଦାସ ଯାହାକୁ ଆହୁରି ବଦଳେଇ ଗ୍ରହଣ କରିଛନ୍ତି ।

(୫) ଯେଉଁସବୁ ଘଟଣା ବାଲ୍ମୀକି ରାମାୟଣର ବିଭିନ୍ନ ପାଠରେ ବିଭିନ୍ନ ରୂପରେ ବିଦ୍ୟମାନ ଥିଲେହେଁ ଆଲୋଚନା ପାଇଁ କୌଣସି ସାହାଯ୍ୟ କରେ ନାହିଁ ।

ଏହି ସବୁ ବିଭାଗ ମଧ୍ୟରୁ ପ୍ରଥମ ବ୍ୟତୀତ ଅନ୍ୟଗୁଡ଼ିକ ଗୌଣ । ଦ୍ୱିତୀୟ ବିଭାଗରେ ଥିବା ଘଟଣାସବୁ କେବଳ ପରୋକ୍ଷ ପ୍ରମାଣ । ସେ ସବୁ ଉପରେ ନିର୍ଭରକରି କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚିବା ସହଜ ନୁହେଁ । ତେଣୁ ଏ ଆଲୋଚନାରେ କେବଳ ପ୍ରଥମ ବିଭାଗକୁ ପ୍ରମାଣ ରୂପେ ଗ୍ରହଣ କରାଯାଇଛି ।

'ଜଗମୋହନ ରାମାୟଣ'ରେ ଦାକ୍ଷିଣାତ୍ୟ ପାଠରୁ ନିମ୍ନୋକ୍ତ ଘଟଣାସବୁର ଉଲ୍ଲେଖ ମିଳେ ।

**ଆଦିକାଣ୍ଡ :**

(୧) ପୁତ୍ରମାନଙ୍କ ଜନ୍ମକାଳର ଗ୍ରହ ସ୍ଥିତି ।
(୨) ଲକ୍ଷ୍ମଣଙ୍କର ଅଗ୍ରଜଭାବରେ ଭରତଙ୍କର ଉଲ୍ଲେଖ ।
(୩) ସମୁଦ୍ର ମନ୍ଥନ ଉପାଖ୍ୟାନରେ ନାଗ ପରିବର୍ତ୍ତେ ଶିବଙ୍କର ବିଷପାନ ।

**ଅଯୋଧ୍ୟା କାଣ୍ଡ :**

(୪) ଯମୁନାକୁ ଅତିକ୍ରମ କରିବା ପାଇଁ ଭେଳା ନିର୍ମାଣ ।
(୫) ରାମଙ୍କଠାରୁ ଭରତଙ୍କର ପାଦୁକା ଗ୍ରହଣ ।
(୬) ଦଶରଥଙ୍କ ପରିବର୍ତ୍ତେ କୈକେୟୀଙ୍କର ରାମଙ୍କୁ ଡାକି ଆଣିବା ପାଇଁ ସୁମନ୍ତଙ୍କୁ ପ୍ରେରଣ ।

**କିଷ୍କିନ୍ଧା କାଣ୍ଡ :**

(୭) ବାଳୀବଧ ପରେ ରାମକୃତ ତାରା ସାନ୍ତ୍ୱନା ।
(୮) କ୍ରୋଧୀ ଲକ୍ଷ୍ମଣଙ୍କୁ ଶାନ୍ତ କରିବା ପାଇଁ ସୁଗ୍ରୀବକର୍ତ୍ତୃକ ତାରା ପ୍ରେରଣ ।

**ସୁନ୍ଦରା କାଣ୍ଡ :**

(୯) ହନୁମାନ ଓ ଲଙ୍କେଶ୍ୱରୀ ବିବାଦ ।
(୧୦) ହନୁମାନଙ୍କୁ ସୀତାଙ୍କର ରାବଣଭାବେ ଗ୍ରହଣ ।
(୧୧) ହନୁମାନଙ୍କର ଯଥାକ୍ରମେ ମୈନାକ, ସୁରସା ଓ ସିଂହୀକାଙ୍କ ସହ ସାକ୍ଷାତ ।

**ଲଙ୍କାକାଣ୍ଡ :**

(୧୨) ରାବଣର ଦ୍ୱିତୀୟବାର ଦୂତ ପ୍ରେରଣ ।

**ଉତ୍ତରକାଣ୍ଡ :**

(୧୩) ଚନ୍ଦ୍ରହାସ ତରବାରିର ଉଲ୍ଲେଖ ।

ଏଥିରୁ ଜଣାପଡୁଛି ଯେ ଦାକ୍ଷିଣାତ୍ୟ ପାଠ ସହ 'ଜଗମୋହନ ରାମାୟଣ'ର ମୋଟେ ତେରୋଟି ଘଟଣାରେ ସାମ୍ୟ ଅଛି । ପୂର୍ବଦେଶୀୟ ଓ ପଶ୍ଚିମମୋତ୍ତରୀୟ ପାଠର ସ୍ୱତନ୍ତ୍ର କଥାସହ ଜଗମୋହନ ରାମାୟଣର ତୁଳନା କଲେ ନିମ୍ନୋକ୍ତ ସାମ୍ୟ ସବୁ ଦେଖିବାକୁ ମିଳେ ।

**ଆଦିକାଣ୍ଡ :**

(୧) ଲୋମପାଦକୃତ ଦଶରଥ-କନ୍ୟା ଶାନ୍ତାଙ୍କର ପାଳନ ।
(୨) ସମୁଦ୍ର ମନ୍ଥନରୁ ବିଷର ଉତ୍ପତ୍ତି ।
(୩) ଇନ୍ଦ୍ରକୃତ ଦିତି ଗର୍ଭସ୍ଥିତ ଭ୍ରୂଣର ଅଣଚାଶ ଭାଗ ।

(୪) ଅମ୍ବରୀଶଙ୍କ ଯଜ୍ଞ କାଳରେ କେବଳ ଇନ୍ଦ୍ରଙ୍କ ମନ୍ତ୍ର ଜପ ।

**ଅଯୋଧ୍ୟାକାଣ୍ଡ :**

(୫) କୈକେୟୀଙ୍କୁ ବ୍ରାହ୍ମଣର ଅଭିଶାପ

(୬) ନଳରାଜା ବିଦ୍ୟାଦ୍ୱାରା କୈକେୟୀଙ୍କର ଉଦ୍ଦେଶ୍ୟରେ ଦଶରଥଙ୍କ କ୍ରୋଧ ବାଣୀ ।

(୭) ଗୈରିକ ବସ୍ତ୍ର ପରିଧାନ କାଳରେ କୈକେୟୀଙ୍କ ଉଦ୍ଦେଶ୍ୟରେ ଦଶରଥଙ୍କ କ୍ରୋଧବାଣୀ ।

(୮) ଗୁହସହ ସାକ୍ଷାତ୍‌ପରେ ପଦ୍ମବନ ପାଖରେ ତିନି ନିର୍ବାସିତଙ୍କର ରାତ୍ରି ଯାପନ ।

(୯) ଲକ୍ଷ୍ମଣଙ୍କ କୃତ ଦୁଇଟି କୁଟୀର ନିର୍ମାଣ । (ଗୋଟିଏ ନିଜ ପାଇଁ ଓ ଅନ୍ୟଟି ରାମ ଓ ସୀତାଙ୍କ ପାଇଁ)

(୧୦) ଅନ୍ଧମୁନିଙ୍କୁ ବ୍ରାହ୍ମଣରୂପେ ଗ୍ରହଣ ।

(୧୧) ବିଷ୍ଣୁଙ୍କର ବରାହ ଅବତାର ।

(୧୨) ଶିରଧ୍ୱଜଙ୍କଦ୍ୱାରା ରାମଙ୍କପାଇଁ ହଳେ କୃଷ୍ଣପାଦୁକା ପ୍ରେରଣ ।

**ଆରଣ୍ୟକ କାଣ୍ଡ :**

(୧୩) ସୂର୍ପଣଖାର ମୋହିନୀରୂପ

**କିଷ୍କିନ୍ଧାକାଣ୍ଡ :**

(୧୪) ସୁପାର୍ଶ୍ୱର ଆଗମନ ।

(୧୫) ଶ୍ରୀରାମଙ୍କ ମହିମା ଓ ଚରିତ ବର୍ଣ୍ଣନାରୁ ସମ୍ପାତିର ନୂତନ ପକ୍ଷଜାତ ।

(୧୬) ରାମଙ୍କୁ ତାରାଙ୍କର ଅଭିଶାପ ।

(୧୭) ହନୁମାନଙ୍କ ଅଶୋକ ବାଟିକା ଭଗ୍ନ ସମ୍ବାଦ ତୋଟାଳମାନଙ୍କ ପରିବର୍ତ୍ତେ ରାକ୍ଷସମାନଙ୍କଦ୍ୱାରା ରାବଣ ରାଜସଭାରେ ବର୍ଣ୍ଣନା ।

**ଲଙ୍କାକାଣ୍ଡ :**

(୧୮) ଯୁଦ୍ଧ ମନ୍ତ୍ରଣାର ପ୍ରଥମ ସଭାରେ ରାବଣ ବିଭୀଷଣଙ୍କୁ ପାଦ ପ୍ରହାର । (ମଧ୍ୟକାଳୀନ ବିରଚିର ଉଲ୍ଲେଖ ଦାକ୍ଷିଣାତ୍ୟ ପାଠରେ ଅଛି)

(୧୯) ଔଷଧ ଅନୁସନ୍ଧାନ କାଳରେ ହନୁମାନ ଓ କାଳନେମିର ଯୁଦ୍ଧ ବର୍ଣ୍ଣନା ।

(୨୦) ହନୁମାନଦ୍ୱାରା ତିନୋଟି ଗନ୍ଧର୍ବ ବଧ ।

(୨୧) ଔଷଧ ଆଣି ଫେରିବା ସମୟରେ ଭରତ ସହ ସାକ୍ଷାତ ।

କେବଳ ସଂଖ୍ୟାଦୃଷ୍ଟିରୁ ନୁହେଁ ଘଟଣାର ଗୁରୁତ୍ୱ ଦୃଷ୍ଟିରୁ 'ଜଗମୋହନ ରାମାୟଣ' ଉତ୍ତରଭାରତୀୟ ପାଠ ସହ ବିଶେଷ ଭାବେ ସଂପୃକ୍ତ । ଦାକ୍ଷିଣାତ୍ୟ ପାଠ ସହ ଏବା

ସମ୍ପର୍କ ସମ୍ବନ୍ଧରେ ଏ କଥା କୁହାଯାଇ ପାରେ ଯେ ଏ ସବୁ ଦାକ୍ଷିଣାତ୍ୟ ପାଠରୁ ସିଧା ସଳଖଭାବେ 'ଜଗମୋହନ ରାମାୟଣ'କୁ ଆସିନାହାନ୍ତି । କାରଣ 'ଅଧ୍ୟାତ୍ମ ରାମାୟଣ'ରେ ଏ ସବୁ ଘଟଣାର ଉଲ୍ଲେଖ ମଧ୍ୟ ମିଳେ । 'ଅଧ୍ୟାତ୍ମ ରାମାୟଣ' 'ଜଗମୋହନ ରାମାୟଣ' ପୂର୍ବ ଲେଖା ଓ ସେ ସମୟରେ ଏହା ଅତ୍ୟଧିକ ଲୋକପ୍ରିୟତା ଅର୍ଜନ କରି ପାରିଥିଲା । ବଳରାମ ଦାସ 'ଅଧ୍ୟାତ୍ମ ରାମାୟଣ' ଦ୍ୱାରା ପ୍ରଭାବିତ ହେବାର ବହୁ ଦୃଷ୍ଟାନ୍ତ ମିଳୁଥିବାରୁ ସେ ଯେ ଏ ସବୁ ଘଟଣାକୁ ଅଧ୍ୟାତ୍ମ ରାମାୟଣରୁ ଗ୍ରହଣ କରି ନ ଥିବେ ଏ କଥା କହି ହେବ ନାହିଁ ।

ଉତ୍ତର-ଭାରତୀୟ ପାଠଦ୍ୱାରା ପ୍ରଭାବିତ ହୋଇଥିବାର ଅନ୍ୟ ଗୋଟିଏ ବିଶିଷ୍ଟ କାରଣ ହେଉଛି, ଘଟଣାବଳୀର ସମାବେଶ । 'ଜଗମୋହନ ରାମାୟଣ'ର ସୁନ୍ଦରାକାଣ୍ଡରେ ସେତୁବନ୍ଧ ନିର୍ମାଣ ପର୍ଯ୍ୟନ୍ତ ଘଟଣା ସନ୍ନିବେଶିତ, ଦାକ୍ଷିଣାତ୍ୟ ପାଠରେ ସୀତାଙ୍କ ସମ୍ବାଦ ପାଇବା ପରେ ସୁନ୍ଦରାକାଣ୍ଡ ସମାପ୍ତ ହୋଇଛି । ଅର୍ଥାତ୍ ଯୁଦ୍ଧକାଣ୍ଡର ୨୨ ସର୍ଗର କଥାବସ୍ତୁ ବଳରାମ ଦାସ ସୁନ୍ଦରାକାଣ୍ଡରେ ରଖିଛନ୍ତି, ଏ ପ୍ରକାର ବିଭାଗ କରିବା ପାଇଁ ସେ ପୂର୍ବଦେଶୀୟ ପାଠକୁ ଅନୁସରଣ କରି ଥିବାରୁ କବି ଏହି ପାଠକୁ ଆଦର୍ଶରୂପେ ଗ୍ରହଣ କରିଥିବା ଅନୁମିତ ହୁଏ ।

ବାଲ୍ମୀକି ରାମାୟଣକୁ ବଳରାମ ଦାସ ନିଜ ଗ୍ରନ୍ଥର ଆଦର୍ଶ ରୂପେ ଗ୍ରହଣ କରିଥିଲେ ହେଁ ସେ ଏହାର ଅନୁବାଦ କରିନାହାନ୍ତି । କଥା ସବୁକୁ ଶୁଣି ପୂର୍ବ ଭାରତୀୟ ପାଠର ଘଟଣାକ୍ରମକୁ ଅନୁସରଣ କରି ସେ 'ଜଗମୋହନ ରାମାୟଣ' ରଚନାର ପରିକଳ୍ପନା କରିଛନ୍ତି । ଘଟଣା ସବୁକୁ ବର୍ଣ୍ଣନା କଲାବେଳେ ତାଙ୍କ ଚାରିପାଖରେ ଲୋକ ମୁଖରେ ପ୍ରଚଳିତ ରାମକଥାର ବିଭିନ୍ନ ରୂପାନ୍ତର ତଥା ତାଙ୍କର ପାଣ୍ଡିତ୍ୟ ତାଙ୍କୁ ସାହାଯ୍ୟ କରିଛି, ତେଣୁ 'ଜଗମୋହନ ରାମାୟଣ' ଏକ ସ୍ୱତନ୍ତ୍ର ରଚନା । 'ଜଗମୋହନ ରାମାୟଣ'ର ପ୍ରତ୍ୟେକ ପଦ୍ଧତି, ପ୍ରତ୍ୟେକ ପ୍ରସଙ୍ଗ ବଳରାମଙ୍କ ସୃଜନାତ୍ମକ ପ୍ରତିଭାର ପରିଚାୟକ । ତୁଳନାର ଆବଶ୍ୟକତା ନଥିଲେ ବି ଉଦାହରଣ ପାଇଁ ଦୁଇଟି ପ୍ରସଙ୍ଗର ଉଲ୍ଲେଖ କରାଯାଇଛି । ପ୍ରଥମ ପ୍ରସଙ୍ଗ ହେଉଛି ମିଥିଳା ନାରୀମାନଙ୍କର ବିଭ୍ରମ ବର୍ଣ୍ଣନା । ଏ ପ୍ରସଙ୍ଗ ବାଲ୍ମୀକି ରାମାୟଣରେ ନାହିଁ । ତେଣୁ ବଳରାମ ଦାସ 'ଉଦାତ୍ତ ରାଘବ' ବା 'ଭାଗବତ ପୁରାଣ' ପ୍ରଭୃତି ଗ୍ରନ୍ଥରୁ ଏହାକୁ ଗ୍ରହଣ କରିଥିବା ଅନୁମାନ କରାଯାଇ ପାରେ, କିନ୍ତୁ ଯେଉଁ କବି ବାଲ୍ମୀକିଙ୍କୁ ଆଦର୍ଶ ଭାବେ ଗ୍ରହଣ କରି ବାଲ୍ମୀକି ରାମାୟଣର ଅନୁବାଦ କରି ନାହାନ୍ତି, ବାଲ୍ମୀକି ରାମାୟଣରୁ କଥାମାତ୍ର ଗ୍ରହଣ କରି ନିଜ ପଥରେ ନିଜ ସମାଜକୁ ସହଯାତ୍ରୀ କରି ଚାଲିଛନ୍ତି, ସେ (ସର୍ଗ ୩) 'ଉଦାତ୍ତରାଘବ' ବା 'ଭାଗବତ ପୁରାଣ'କୁ ଅନୁସରଣ କରିବେ କାହିଁକି ? ଖୁବ୍ ବେଶୀରେ ସେ ଏ ପ୍ରକାର ବର୍ଣ୍ଣନାରୀତିକୁ ଗ୍ରହଣ କରିପାରି ନାହାନ୍ତି । ବର୍ଣ୍ଣନାର ବସ୍ତୁ ତାଙ୍କର ନିଜସ୍ୱ । ଏହିପରି ବାଲ୍ମୀକି

ରାମାୟଣରେ ନଥିବା ବହୁ ଘଟଣା 'ଜଗମୋହନ ରାମାୟଣ'ରେ ସନ୍ନିବେଶିତ ହୋଇ ଏହାକୁ ସ୍ୱତନ୍ତ୍ର ଗ୍ରନ୍ଥର ମହତ୍ୱ ପ୍ରଦାନ କରେ । ବାଲ୍ମୀକିଙ୍କ ଠାରୁ ବଳରାମଙ୍କର ସ୍ୱାତନ୍ତ୍ର୍ୟ ଦେଖାଇବା ପାଇଁ ଅନ୍ୟ ଗୋଟିଏ ଦୃଷ୍ଟାନ୍ତ ନିଆଯାଉ । ଏ ପ୍ରସଙ୍ଗକୁ ବାଲ୍ମୀକି ରାମାୟଣରୁ ଗ୍ରହଣ କରି ବଳରାମ ବର୍ଣ୍ଣନା କରି ଅଛନ୍ତି, ଯେପରିକି ଧନୁଭଙ୍ଗ ପ୍ରସଙ୍ଗ । ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ବିଷୟବସ୍ତୁ ନିମ୍ନଲିଖିତ ଭାବେ ବିଭାଗ କରାଯାଇପାରେ -

(୧) ବିଶ୍ୱାମିତ୍ରଙ୍କର ଶ୍ରୀରାମଙ୍କୁ ଧନୁ ଦେଖାଇବାପାଇଁ ଜନକଙ୍କୁ ଅନୁରୋଧ ।

(୨) ଜନକଙ୍କ ଆଜ୍ଞାରେ ପାଞ୍ଚହଜାର ବ୍ୟକ୍ତି, ଆଠଚକ୍ରଯୁକ୍ତ ମଞ୍ଜୁଷାକୁ ପଛରୁ ଠେଲି ଠେଲି ସଭା ସ୍ଥାନକୁ ଆଣିବା ।

(୩) ଜନକଙ୍କର ଧନୁମହିମା-କଥନ, ଜନକଙ୍କ ପୂର୍ବଜ ତଥା ଧନୁଭଙ୍ଗରେ ଅସଫଳ ନରପତିଙ୍କ ଏହାକୁ ସମ୍ମାନ ପ୍ରଦର୍ଶନ, ସମସ୍ତ ଦେବତା, ଅସୁର ରାକ୍ଷସ, ଗନ୍ଧର୍ବ, ପରାକ୍ରମଶାଳୀ ଯକ୍ଷ, କିନ୍ନର, ମହାନାଗ, ପ୍ରଭୃତିଙ୍କର ଧନୁଭଙ୍ଗରେ ଅକ୍ଷମତା ।

(୪) ରାଜକୁମାରଙ୍କୁ ଅନୁରୋଧ କରିବା ପାଇଁ ଜନକଙ୍କର ବିଶ୍ୱାମିତ୍ରଙ୍କୁ ଅନୁରୋଧ ।

(୫) ବିଶ୍ୱାମିତ୍ରଙ୍କ ଅନୁରୋଧକ୍ରମେ ଶ୍ରୀରାମଙ୍କ ଧନୁଭଙ୍ଗ ।

(୬) ଧନୁଭଙ୍ଗର ଭୀଷଣ ଶବ୍ଦ ଶୁଣି ଜନକ, ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣ ବ୍ୟତୀତ ସଭାସ୍ଥିତ ରାଜାମାନଙ୍କର ମୂର୍ଚ୍ଛିତ ଅବସ୍ଥା ।

(୭) ଜନକଙ୍କ ଆନନ୍ଦପ୍ରକାଶ ଓ ଅଯୋଧ୍ୟାକୁ ମନ୍ତ୍ରୀପ୍ରେରଣର ପ୍ରସ୍ତାବ ।

'ଜଗମୋହନ ରାମାୟଣ'ରେ ଥିବା ଧନୁଭଙ୍ଗ ପ୍ରସଙ୍ଗକୁ ନିମ୍ନଲିଖିତ ଭାବେ ବିଭାଗ କରାଯାଇପାରେ ।

(୧) ଜନକଙ୍କୁ ବିଶ୍ୱାମିତ୍ରଙ୍କର ଧନୁ ଦେଖାଇବା ଅନୁରୋଧ ।

(୨) ଜନକଙ୍କର ଶ୍ରୀରାମଙ୍କ ପରାକ୍ରମରେ ଅବିଶ୍ୱାସ ଓ ଧନୁମହିମା ବର୍ଣ୍ଣନା- (ଏହା ବିଷ୍ଣୁତେଜରୁ ଜାତ, କେବଳ ଶିବ ଏ ଧନୁ ଧାରଣରେ ସମର୍ଥ । ଏ ଧନୁଦ୍ୱାରା ସେ ଦକ୍ଷ ଯଜ୍ଞରେ ଦେବତାମାନଙ୍କୁ ଖଣ୍ଡବିଖଣ୍ଡ କରିଥିଲେ । ଜନକଙ୍କ ପୂର୍ବଜଦ୍ୱାରା ଏହାର ପୂଜା ଇତ୍ୟାଦି) ।

(୩) ଧନୁର ମହିମା ଅନେକ । ସେ ଧନ, ସମ୍ପଦ, ସୁଖଶାନ୍ତି, ଗତି ମୁକ୍ତି ଦାନ କରେ ।

(୪) ସୀତାଙ୍କ ସଦୃଶ ବରପାଇଁ ଜନକଙ୍କର ଧନୁ ସମ୍ମୁଖରେ ପ୍ରାର୍ଥନା ।

(୫) ବାଣାସୁର, ରାବଣ ଓ ଇନ୍ଦ୍ରଙ୍କର ଧନୁ ସମ୍ମୁଖରେ ପ୍ରାର୍ଥନା ।

(୬) ବିଶ୍ୱାମିତ୍ରଙ୍କର ଜନକଙ୍କୁ ଦ୍ୱିତୀୟଥର ଅନୁରୋଧ ।

(୭) ନଗରମଣ୍ଡନ ।

(୮) ଧନୁଭଙ୍ଗ ଦେଖିବା ପାଇଁ ରାଜା, ଋଷି, ବ୍ରାହ୍ମଣ, ନଗରର ନରନାରୀ, ଅପ୍‌ସରୀ, ବ୍ରହ୍ମାସମେତ ଦେବାଧିଦେବଗଣ, ଗନ୍ଧର୍ବ, କିନ୍ନରୀ ଓ ବିଦ୍ୟାଧରଙ୍କର ଆଗମନ ।

(୯) କନକମଣ୍ଡପ ଉପରେ ଗଜଦନ୍ତଖୁରାଯୁକ୍ତ ସୁବର୍ଣ୍ଣ ପଲଙ୍କ, ତା'ଉପରେ ସୀତାଙ୍କର ଉପସ୍ଥିତି, ସୀତାଙ୍କର ରୂପ ତଥା ଐଶ୍ୱର୍ଯ୍ୟର ବିସ୍ତୃତ ବର୍ଣ୍ଣନା ।

(୧୦) ବିଶ୍ୱାମିତ୍ରଙ୍କ ସହ ରାମ ଓ ଲକ୍ଷ୍ମଣଙ୍କର ସଭାମଣ୍ଡପରେ ପ୍ରବେଶ ।

(୧୧) ଜନକଙ୍କ ପ୍ରବେଶ ଓ ସତ୍ୟ ଘୋଷଣା, ସୀତାଜନ୍ମ ପ୍ରସଙ୍ଗ ବର୍ଣ୍ଣନା ।

(୧୨) ଜନକଙ୍କର ପ୍ରଥମଥର ପାଇଁ ଧନୁଯାଗ କଥା ବର୍ଣ୍ଣନା, ପର୍ଶୁରାମଙ୍କର ଧନୁପୂଜା ପ୍ରସଙ୍ଗ ।

(୧୩) ଧନୁ ଆଣିବା ପାଇଁ ସତ୍ୟାନନ୍ଦଙ୍କ ଅନୁରୋଧ, ମହାଲକ୍ଷଣବନ୍ତ ପୁରୁଷମାନଙ୍କ ଦ୍ୱାରା ଧନୁର ଆନୟନ, ଗଣିକାମାନଙ୍କର ବିଞ୍ଚଣା ଓ ଚାମରସେବା, କୁସୁମ ବୃଷ୍ଟି ଓ ହୁଳହୁଳି ଧ୍ୱନିଭିତରେ ଧନୁର ସଭାମଣ୍ଡପରେ ପ୍ରବେଶ ।

(୧୪) ଧନୁ ଦେଖି ସୀତାଙ୍କର ସଖୀମାନଙ୍କ ଆଗରେ ମନ ବ୍ୟଥା ପ୍ରକାଶ ଓ ସଖୀମାନଙ୍କର ସୀତାଙ୍କୁ ସାନ୍ତ୍ୱନା ଦେବା ଛଳରେ ସମୁଦ୍ରମନ୍ଥନ କଥା, ଇନ୍ଦ୍ରଙ୍କ ଦ୍ୱାରା ପବନର ଅଣଚାଶ ଖଣ୍ଡ ହେବା, ଚନ୍ଦ୍ର ବିବାହ ପ୍ରସଙ୍ଗ, ଶିବ ବିବାହ ପ୍ରଭୃତି ଘଟଣାର ବର୍ଣ୍ଣନା ।

(୧୫) ସଖୀ ମନମାୟାର ଭବିଷ୍ୟବାଣୀ ଓ ଅଦ୍ଭୁତ ଯୁକ୍ତିର ଅବତାରଣା ।

(୧୬) ମାଳବ ରାଜା ସୋମକେଶୀର ଧନୁ ଦର୍ଶନରେ ଭୟଭୀତ ଅବସ୍ଥା ।

(୧୭) ଜନକଙ୍କର ନିରାଶା ଓ ବିଶ୍ୱାମିତ୍ରଙ୍କର ସାନ୍ତ୍ୱନା ଦାନ ।

(୧୮) ବିଶ୍ୱାମିତ୍ରଙ୍କର ଶ୍ରୀରାମଙ୍କୁ ଅନୁରୋଧ ।

(୧୯) ଶ୍ରୀରାମ ନୃସିଂହ ସ୍ମରଣ କରି ବିଶ୍ୱାମିତ୍ରଙ୍କ ପାଦକୁ ଇଙ୍ଗିତ ଭାବପ୍ରକାଶ କରି ଲକ୍ଷ୍ମଣ ସହ ଧନୁ ନିକଟକୁ ଗମନ ।

(୨୦) ସଭାସ୍ଥିତ ରାଜାଙ୍କର ପ୍ରଥମେ ଅବିଶ୍ୱାସ, ପରେ ଅଗସ୍ତି, ପ୍ରହ୍ଲାଦ, ବାମନ, ଧ୍ରୁବ, ଭାଗିରଥୀ ବୃତ୍ତାନ୍ତ ସ୍ମରଣ କରି ରାମଙ୍କର ବୀରତ୍ୱରେ ବିଶ୍ୱାସ ସ୍ଥାପନ ।

(୨୧) ରାମଙ୍କ ରୂପ ବର୍ଣ୍ଣନା, ରାଜାମାନଙ୍କର ବିଭିନ୍ନ ପ୍ରକାର ଚିନ୍ତା ।

(୨୨) ଶ୍ରୀରାମଙ୍କୁ ଦେଖି ସୀତାଙ୍କର ଆକର୍ଷଣ ।

(୨୩) ସୀତାଙ୍କର ବିଘ୍ନରାଜ ଓ ବିଧାତା ସ୍ତୁତି ।

(୨୪) ସୀତାଙ୍କ ଆଗରେ ବିଭିନ୍ନ ଶୁଭ ଶକୁନର ପ୍ରକାଶ ।
(୨୫) ମଞ୍ଜୁଷା ମଧ୍ୟରୁ ଧନୁ ବାହାର କରିବା ପାଇଁ ଜନକଙ୍କ ଅନୁମତିର ପ୍ରତୀକ୍ଷା ।
(୨୬) ଜନକ ଓ ବିଶ୍ୱାମିତ୍ରଙ୍କର ଆଲୋଚନା, ଜନକଙ୍କର ଭୀତତ୍ରସ୍ତ ଅବସ୍ଥାର ବର୍ଣ୍ଣନା ।
(୨୭) ରାଜାମାନଙ୍କର ଅନୁମତି ପାଇ ଜନକଙ୍କର ସମ୍ମତି ପ୍ରଦାନ ।
(୨୮) ମଞ୍ଜୁଷା ଭିତରୁ ଧନୁ ବାହାର କରି ଶ୍ରୀରାମଙ୍କର ଧନୁ ଧାରଣ ।
(୨୯) 'ଧଇଲାରେ ଧନୁ'ଗୋଳ ।
(୩୦) ହେଠମାଥ ହୋଇ ଧନୁ ନ ଧରିବାକୁ ଲକ୍ଷ୍ମଣଙ୍କର ରାମଙ୍କୁ ପରାମର୍ଶ ।
(୩୧) ଲକ୍ଷ୍ମଣଙ୍କର ପୃଥିବୀ ଓ ଦିଗପାଳମାନଙ୍କୁ ସାବଧାନ ହୋଇ ରହିବା ପାଇଁ ସତର୍କବାଣୀ ।
(୩୨) ପୃଥିବୀର ପ୍ରାର୍ଥନା ଶୁଣି ଶ୍ରୀରାମଙ୍କର ଧନୁଦଣ୍ଡକୁ ବୃଦ୍ଧାଙ୍ଗୁଷ୍ଠିର ନଖ ଉପରେ ସ୍ଥାପନ ।
(୩୩) ଧନୁ ଆମଞ୍ଚନ କାଳରେ ଜନକଙ୍କର ଭ୍ରାନ୍ତି ଦୂର ଏବଂ ଶ୍ରୀରାମଙ୍କୁ ବାସୁଦେବ ରୂପେ ଗ୍ରହଣ ।
(୩୪) ଧନୁର ଶ୍ରୀରାମଙ୍କୁ ଅନୁରୋଧ ଏବଂ ଶ୍ରୀରାମଙ୍କ ଧନୁକୁ ଉତ୍ତର ।
(୩୫) ଧନୁ ଆମଞ୍ଚନ ଦେଖି ସୀତାଙ୍କର ରାମଗତ-ପ୍ରାଣ ।
(୩୬) ଧନୁଭଙ୍ଗ ଶବ୍ଦରେ ପୃଥିବୀର କମ୍ପନ, ଉଲ୍କାପାତ, ଆଦିତ୍ୟର ଭୟ, ସପତସାଗର ଲହରୀର ସ୍ଥିରଭାବ ଧାରଣ, ସମୀରର ଧୀର ପ୍ରବାହ, ପର୍ଶୁରାମର ଗର୍ବ ଖଣ୍ଡନ, କପିଳାସ କନ୍ଦରରେ ଗଉରୀଙ୍କର ମାନଭଞ୍ଜନ ପ୍ରଭୃତି ଘଟଣାର ସବିଶେଷ ବର୍ଣ୍ଣନା ।
(୩୭) ସତ୍ୟପୂର୍ଣ୍ଣ ହେବା ଦେଖି ବିଶ୍ୱାମିତ୍ରଙ୍କର ପରବର୍ତ୍ତୀ କାର୍ଯ୍ୟପାଇଁ ଜନକଙ୍କୁ ଅନୁରୋଧ ।
(୩୮) ଜନକଙ୍କର ନଗ୍ରରେ ଉତ୍ସବ କରାଇବା ପାଇଁ ସତ୍ୟାନନ୍ଦଙ୍କୁ ଆଦେଶ ପ୍ରଦାନ ।
(୩୯) ଜନକଙ୍କର ସୀତାଙ୍କୁ ସଭାସ୍ଥଳକୁ ଆନୟନ ।
(୪୦) ସୀତାଙ୍କର ନବରତ୍ନମାଳା ପ୍ରଦାନ ।
(୪୧) ଚାରିଚକ୍ଷୁ ଭେଟ ।
(୪୨) ରାବଣର ଆଗମନ, ରାବଣ ଓ ବ୍ରହ୍ମାଙ୍କର କଥୋପକଥନ ।
(୪୩) ଶ୍ରୀରାମଙ୍କ ବିବାହ ସଂପନ୍ନ ପାଇଁ ବିଶ୍ୱାମିତ୍ରଙ୍କର ଜନକଙ୍କୁ ଅନୁରୋଧ ।

(୪୪) ଜନକଙ୍କର ଶ୍ରୀରାମଙ୍କୁ ବିବାହ ପାଇଁ ଅନୁରୋଧ ।

(୪୫) ଦଶରଥଙ୍କ ଅନୁପସ୍ଥିତିରେ ବିବାହ ପାଇଁ ଶ୍ରୀରାମଙ୍କର ଅସମ୍ମତି ।

(୪୬) ଶ୍ରୀରାମଙ୍କ ଲେଖସହ ସତ୍ୟାନନ୍ଦଙ୍କର ଅଯୋଧ୍ୟା ଯାତ୍ରା ।

ଧନୁଭଙ୍ଗ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ବଳରାମ କେବଳ ଯେ ନୂତନ ନୂତନ ପ୍ରସଙ୍ଗର ସନ୍ନିବେଶ କରିଛନ୍ତି ତାହା ନୁହେଁ, ପ୍ରତ୍ୟେକ ବର୍ଣ୍ଣନା ନୂତନତାର ରଙ୍ଗରେ ରଞ୍ଜିତ । ବାଲ୍ମୀକିଙ୍କ ରାମାୟଣରେ ସୀତାଙ୍କର କୌଣସି ଭୂମିକା ନାହିଁ । ଧନୁଭଙ୍ଗ ଦୃଶ୍ୟ ସେ ଦେଖୁ ନାହାନ୍ତି; ଅଥଚ 'ଜଗମୋହନ ରାମାୟଣ'ରେ ତାଙ୍କ ପାଇଁ ସ୍ୱତନ୍ତ୍ର ମଣ୍ଡପ, ମଣ୍ଡପ ଉପରେ ସୁନାର ପଲଙ୍କ । ସଖୀମାନେ ଚାମର ଢାଳୁଛନ୍ତି । ତାହା ଉପରୁ ଧନୁଭଙ୍ଗ ଦୃଶ୍ୟ ଦେଖି ସେ ଆନନ୍ଦିତ ହେଉଛନ୍ତି । ସଖୀମାନଙ୍କ ସହ ଆଲୋଚନା କରୁଛନ୍ତି । ବାପାଙ୍କୁ ଦେଖି ସଖୀମାନଙ୍କ ପଛରେ ଲୁଚି ଯାଉଛନ୍ତି । ବରଣମାଳା ଦେଲାବେଳେ ଚାରିଚକ୍ଷୁର ମିଳନ ହେଉଛି । ବରଣମାଳା ଦେଇ ଅନ୍ତଃପୁରକୁ ଗଲାବେଳେ ମାତାମାନଙ୍କର କଲ୍ୟାଣ ଶୁଣି ସେ ତଳକୁ ମୁହଁ ପୋତି ହସୁଛନ୍ତି । ଶାଶୁମାନେ କଳା କବାଟି ଭିତର ଦେଇ ରାମଙ୍କୁ ଦେଖି ଧନ୍ୟ ଧନ୍ୟ କରୁଛନ୍ତି । ଏହିପରି କେତେ ପରିଚିତ ଦୃଶ୍ୟ ଦେଇ ଧନୁଭଗ୍ନ ବୃତ୍ତାନ୍ତର ବର୍ଣ୍ଣନାରେ ବଳରାମ ଦାସ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଉଦାହରଣକୁ ଆହୁରି ସୀମିତ କରିଦେଲେ ବାଲ୍ମୀକି ଓ ବଳରାମଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଆହୁରି ସ୍ପଷ୍ଟ ହୋଇଯିବ । ଧନୁଭଗ୍ନର କଥା ଦେଖାଯାଉ ।

ବାଲ୍ମୀକିଙ୍କ ଅନୁଯାୟୀ ଶ୍ରୀରାମ ବିଶ୍ୱାମିତ୍ରଙ୍କ ଆଜ୍ଞା ଅନୁସାରେ ଧନୁକୁ ମଝିରୁ ଧରି ଲୀଳାପୂର୍ବକ ଉଠାଇଲେ ଓ ଅନାୟାସରେ ଏଥିରେ ପ୍ରତ୍ୟଞ୍ଚା ସଂଯୋଜିତ କଲେ । ତା'ପରେ ସେ ଧନୁକୁ କାନପର୍ଯ୍ୟନ୍ତ ଟାଣିଆଣିବା ଦ୍ୱାରା ତାହା ମଝିରୁ ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ବଳରାମଙ୍କ ବର୍ଣ୍ଣନା ଏହାଠାରୁ କେବଳ ବିସ୍ତୃତ ନୁହେଁ, ସ୍ୱତନ୍ତ୍ର ମଧ୍ୟ । ଶ୍ରୀରାମଙ୍କ ବୀରତ୍ୱ, ଯଶ, ପୌରୁଷ ଦେଖାଇବା ପାଇଁ ଏହା ହେଉଛି ଉପଯୁକ୍ତ କ୍ଷେତ୍ର । ସେଥିପାଇଁ କବି ଅତି ସତର୍କତାର ସହିତ ଏହି ପ୍ରସଙ୍ଗର ବର୍ଣ୍ଣନା କରିଛନ୍ତି । ନିମ୍ନରେ କବିଙ୍କ ବର୍ଣ୍ଣନାରୁ କେତୋଟି ପଦ ଉଦ୍ଧାର କରାଯାଇଛି-

ମଞ୍ଜୁଷା ଭିତରେ ଯେ ଶ୍ରୀରାମଚନ୍ଦ୍ର ପଶି । ବାମଭୁଜେ ଧନୁ ଧଇଲେ ଆକ୍ରୋଶି ॥
ବାହାରକରି ଧନୁ ଘେନି ଅଇଲେ ରଘୁନାଥ । ଦେଖନ୍ତି ସର୍ବଜନେ କୋଦଣ୍ଡ ଅଛି ହସ୍ତ ॥

ଆନନ୍ଦେ ଉଷତ ହୁଅନ୍ତି ସର୍ବନାରୀ । ଧଇଲାରେ ଧନୁ ସମସ୍ତେ ଗୋଳକରି ॥
ଦେଖି ବିଶ୍ୱାମଇତ୍ର ପୁଲକଇ ଶରୀର । ସାଧୁସାଧୁ ଶବଦ ଶୁଭଇ ତିନିପୁର ॥

× × × ×

ଏସବୁ ଅନୁରୋଧ ପରେ ଦର୍ଶକଙ୍କ ଦୃଷ୍ଟି ପୁଣିଥରେ କୋଦଣ୍ଡଧାରୀ ରାମଙ୍କୁ ଦେଖିବାକୁ ପାଇଛି ।

କୋଦଣ୍ଡ ଧରିଣ ଯେ ଅଛନ୍ତି ଦାଶରଥି । ଗୁଣ ଦେବାକଇ ଯେ ବିଚାରନ୍ତି ରାମମତି ॥

ପୃଥିବୀର ଅନୁରୋଧରେ ଶ୍ରୀରାମ ଧନୁକୁ ପୃଥିବୀ ପୃଷ୍ଠରେ ନ ରଖି ବୃଦ୍ଧାଙ୍ଗୁଷ୍ଠିର ନଖ ଉପରେ ରଖିଛନ୍ତି ।

ବୃଦ୍ଧାଙ୍ଗୁଷ୍ଠିର ନଖର ଉପରେ । ତହିଁ ଧନୁହୂଳ ବସାଇଲେ ରଘୁ ବାରେ ॥
ଶରାସନ ମଉଳି ବାମକରେ ଧରି । ଗୁଣ ଦେବାକଇ ଯେ ଆଣନ୍ତି ଓଟାରି ॥
ମଡ଼ମଡ଼ ହୋଇ ଯେ ଶୁଭିଲା ଶବଦ । ଥରଥର ହୋଇ ଯେ କମ୍ପଇ ନବଖଣ୍ଡ ॥
ଗୁଣ ପାସି ରାମ ଦକ୍ଷିଣ କରେ ଧରି । ଧନୁହୂଳ ଉପରେ ନେଇକରି ଭରି ॥
ଯହୁଁ ସେ ସାୟେକ ଯେ ଓରାଇ ଦେଲେ ଗୁଣ । ଶିର ଲମ୍ବାଇଲେ ସକଳ ରାଜାଗଣ ॥

× × × ×

ବାର ବରଷର ତନୟେ ଯେହାକଲେ । ସବୁରି ମୁଖରେ ଯେ କାଳି ଲଗାଇଲେ ।
ଗୁଣଦେଇ ଯହୁଁ ଯେ ଧଇଲେ ସଜକରି । ସଭାଜନମାନ ଆନନ୍ଦ ସବୁକରି ॥
ଧନୁଧରି ରାମ ପୁଣ ଟଙ୍କାରନ୍ତି । ଦେଖି ଜନକଙ୍କର ଫିଟିଲା ମନଭ୍ରାନ୍ତି ॥

× × × ×

ଯେଥୁଣ ଶ୍ରୀରାମ ଯେ ଶାୟେକ କରେ ଧରି । ଦକ୍ଷିଣ କରେ ଧନୁ ଆଣିଲେ ଉଚ୍ଚୁଡ଼ି ॥

ଧନୁ ଶ୍ରୀରାମଙ୍କର ସମ୍ପୂର୍ଣ୍ଣ ଆୟତ୍ତ ହୋଇଯିବା ପରେ ନିଜର ପୁରୁଷାର୍ଥ ରକ୍ଷା କରିବା ପାଇଁ ଶ୍ରୀରାମଙ୍କୁ ନିବେଦନ କରିଛି । ଅନ୍ୟ ସମୟ ହୋଇଥିଲେ ହୁଏତ ଶ୍ରୀରାମ କାକୁସ୍ଥ ବଚନ ଶୁଣି ଦୟା ପ୍ରକାଶ କରିଥାନ୍ତେ; କିନ୍ତୁ ବର୍ତ୍ତମାନ ପରୀକ୍ଷାର ବେଳ । ଧନୁକୁ ଆକର୍ଷଣ ନ କଲେ ରାଜାମାନଙ୍କ ପାଖରେ ନିନ୍ଦିତ ହେବେ । ଦକ୍ଷଯଜ୍ଞରେ ଦେବତା ଦଳନ ସମୟରେ ଧନୁର ଯେଉଁ ପୌରୁଷ ପ୍ରକାଶ ପାଇଥିଲା ଆଜି ତାହା ଅତୀତ ହୋଇ ଯାଇଛି । ଦେହଦେଇ ପରକାର୍ଯ୍ୟ କରିବାକୁ ଶ୍ରୀରାମ ତାକୁ ଅନୁରୋଧ କରିଛନ୍ତି ।

ଯେସନେକ ବଚନେ ତବନ୍ଦ ଶରାସନ । ଗୁଣଧରି ରାମ ଉଚ୍ଚୁଡ଼ନ୍ତି ପୁଣ ॥
ଦକ୍ଷିଣ କର୍ଣ୍ଣଯାଏ ଓଟାରିଣ ଆଣି । ଲାଠି ପରାୟେକ ହୋଇଲା ଯେ ପୁଣି ॥

ଧନୁଭଗ୍ନ କାଳରେ ଶ୍ରୀରାମଙ୍କ ବିକ୍ରମରୂପ ସୀତାଙ୍କୁ ମୋହିତ କରିଛି । ଧନୁଗୁଣ ଆମଞ୍ଚନ କରିବା ସଙ୍ଗେ ସଙ୍ଗେ ସେ ସୀତାଙ୍କର ମନକୁ ଆକର୍ଷଣ କରି ନେଇଛନ୍ତି । ଧନୁଭଗ୍ନର

ଶେଷ ପର୍ଯ୍ୟାୟର ବର୍ଣ୍ଣନା କରି କବି କହୁଛନ୍ତି -

ପୁଣ ପୁଣ ଧନୁ ଆଣନ୍ତି ଉବୁଡ଼ି । ମଡ଼ ମଡ଼ ରାମଙ୍କୁ ଶୁଭିଲା ଚାପଧରି ॥
ଆତ ଛାତ କରି ଉବୁଡ଼ିଲେ ଯହୁଁ । ନିସତ ଚିତ୍ତ ଧନୁ ହୋଇଲାକ ତହୁଁ ॥
ଅତିହିଁ ଆମଣ୍ଡନ୍ତେ ନିର୍ବଳ ଶରାସନ । ମଡ଼ ମଡ଼ ଶବଦ ଯେ ଶୁଭିଲା ଘନ ଘନ ॥
ମଧରୁ ଭାଜିଲା ଯେ ବେନିଖଣ୍ଡ ହୋଇ । ପୃଥ୍ୱୀ କମ୍ପିଲା ଯେ ଉଲ୍କାପାତ ହୋଇ ॥

ଧନୁଭଗ୍ନ ପ୍ରସଙ୍ଗ ତୁଳନାତ୍ମକ ଅଧ୍ୟୟନ କଲେ ବଳରାମଙ୍କୁ ଚିହ୍ନିବାରେ ସୁବିଧା ହୁଏ । ବାଲ୍ମୀକି ରାମାୟଣରେ ଧନୁଭଗ୍ନର ତିନୋଟି ଅବସ୍ଥା ବର୍ଣ୍ଣିତ - ଧନୁଉତ୍ତୋଳନ, ଗୁଣଆରୋପଣ, ଓ ଧନୁଭଗ୍ନ । ବଳରାମ ଧନୁଉତ୍ତୋଳନ ପରେ ବୃଦ୍ଧାଙ୍ଗୁଷ୍ଠର ନଖ ଉପରେ ଧନୁ ସ୍ଥାପନ କରି ଆଉ ଗୋଟିଏ ପର୍ଯ୍ୟାୟର ସୃଷ୍ଟି କରିଅଛନ୍ତି । ବାଲ୍ମୀକି ରାମାୟଣରେ ଏସବୁ ଘଟଣା ଏକାଦିକ୍ରମେ ଘଟିଯାଇଛି । ବଳରାମ ଏସବୁ ଅବସ୍ଥା ମଧ୍ୟରେ ପାଠକମାନଙ୍କ ମନରେ ଉତ୍କଣ୍ଠା ସୃଷ୍ଟି କରିବା ପାଇଁ ଧାନଭଗ୍ନ କାଳରେ ହେଉଥିବା ବିଭିନ୍ନ ପ୍ରତିକ୍ରିୟାର ଚିତ୍ରଣ କରିଛନ୍ତି । ଏସବୁ ତତ୍ତ୍ୱ ବାଲ୍ମୀକି ରାମାୟଣରେ ନାହିଁ । 'ମହାନାଟକ' (୧-୨୯)ରେ ଲକ୍ଷ୍ମଣଙ୍କ ଅନୁରୋଧକ୍ରମେ ଶ୍ରୀରାମ ଧନୁଦ୍ୱଳକୁ ପୃଥିବୀ ଉପରେ ନରଖି ନିଜ ଅଙ୍ଗୁଷ୍ଠ ଉପରେ ରଖିଛନ୍ତି । ବଳରାମଙ୍କ 'ରାମାୟଣ'ରେ ନଜେ ପୃଥିବୀ ଏ ଅନୁରୋଧ କରିଛନ୍ତି । ହନୁମାନ ନାଟକରେ କେବଳ ଲକ୍ଷ୍ମଣଙ୍କ ଅନୁରୋଧ ଥିବାବେଳେ 'ଜଗମୋହନ ରାମାୟଣ'ରେ ଲକ୍ଷ୍ମଣ, ପୃଥିବୀ ଓ ଧନୁର ଅନୁରୋଧ ରହିଛି । ଧନୁଭଗ୍ନ କାଳରେ ଜନକଙ୍କର ଭ୍ରମ ଦୂର ହେବା, ରାମଙ୍କ ବିକ୍ରମରୂପ ଦର୍ଶନରେ ସୀତାଙ୍କର ରାମଙ୍କ ପ୍ରତି ଆକୃଷ୍ଟ ହେବା ଇତ୍ୟାଦି ବହୁ ନୂତନ ତଥ୍ୟର ମୂଳସ୍ରୋତ ବଳରାମଙ୍କ କଳ୍ପନାମୁଖର ପ୍ରତିଭା ଧନୁଭଗ୍ନ ପାଇଁ, ରାଜା, ଋଷି ଓ ଦେବତାମାନଙ୍କର ଅସଫଳ ପ୍ରଯତ୍ନକୁ ବଳରାମ ବିଶେଷ ମହତ୍ତ୍ୱ ଦେଇ ବର୍ଣ୍ଣନା କରିଅଛନ୍ତି ।

ବାଲ୍ମୀକି ରାମାୟଣ ଅନୁଯାୟୀ ସ୍ୱୟମ୍ବର କାଳରେ ଉପସ୍ଥିତ ଥିବା ବହୁ ରାଜା ଧନୁଭଗ୍ନ କରିବାକୁ ଅସମର୍ଥ ହୋଇ ମିଥିଳା ଆକ୍ରମଣ କଲେ । ଏ ଘଟଣାର ବହୁ ଦିନପରେ ରାମ ଧନୁଭଗ୍ନ କରି ସୀତାଙ୍କୁ ବିବାହ କରନ୍ତି । 'ଜଗମୋହନ ରାମାୟଣ'ରେ ପ୍ରଥମ ସ୍ୱୟମ୍ବରର ସୂଚନା ମିଳେ । ଏହାପରେ ବହୁ ନରପତି, ଋଷି ଓ ଦେବତା ବିଭିନ୍ନ ସମୟରେ ଆସି ଧନୁତୋଳିବାକୁ ପ୍ରଯତ୍ନ କରିଛନ୍ତି । ସେ ମଧ୍ୟରୁ କବି ଯଥାକ୍ରମେ ବାଣାସୁର, ରାବଣ, ବାଳୀ, ସହସ୍ରାର୍ଜ୍ଜୁନ, ସୁଧର୍ମା, ସୋମକେଶୀ, ନରଗଷି, ଇନ୍ଦ୍ର, ଗଣେଶ, କାମଦେବ, କାର୍ତ୍ତିକେୟଙ୍କ ବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି । ସୀତା ସ୍ୱୟମ୍ବର କାଳରେ ରାବଣଙ୍କର ଦୁଇଥର ମିଥିଳା ଆଗମନ ବର୍ଣ୍ଣିତ । ପ୍ରଥମଥର ବାଣାସୁର ସହ ଆସି ଧନୁ

ତୋଳିବା ବେଳକୁ ତା'ର ଦଶ ମୁଖରୁ ରୁଧିର ନିର୍ଗତ ହୋଇଛି ଓ ସେ ଅପମାନିତ ହୋଇ ଫେରିଯାଇଛି । ରାମଙ୍କ ଧନୁ ଭଗ୍ନର ଅବ୍ୟବହିତ ପରେ ସେ ଦ୍ୱିତୀୟ ଥର ଆସି ପୁଷ୍ପକ ଯାନରୁ ଧନୁଭଗ୍ନ ଦେଖି, ବ୍ରହ୍ମାଙ୍କ ଠାରୁ ସମସ୍ତ ସମ୍ବାଦ ଜାଣି ଫେରିଯାଇଛି । ବାଲ୍ମୀକିଙ୍କ ରାମାୟଣରେ ରାବଣର କୌଣସି ଉଲ୍ଲେଖ ନଥିଲେ ହେଁ 'ପ୍ରସନ୍ନ ରାଘବ' (ପ୍ରଥମ ଅଙ୍କ) ଏବଂ 'ପଦ୍ମପୁରାଣ'ର ପାତାଳଖଣ୍ଡ ଅଧ୍ୟାୟ ୧୧୨, ଓ 'ଆନନ୍ଦ ରାମାୟଣ' (୧,୩,୩୦)ରେ ରାବଣ ଓ ବାଣାସୁରର ଆଗମନ କଥା ସନ୍ନିବେଶିତ ହୋଇଛି । 'କୃତ୍ତିବାସ ରାମାୟଣ' (୧,୫୨)ରେ ରାବଣ ଜଗମୋହନ ରାମାୟଣ ସଦୃଶ ରାମଙ୍କ ଆଗମନ ପୂର୍ବରୁ ଧନୁ ତୋଳିବାକୁ ଚେଷ୍ଟା କରିଥିଲେ । ଧନୁ ତୋଳିବାକୁ ଇନ୍ଦ୍ରଙ୍କର ଅସଫଳ ପ୍ରୟାସର ବର୍ଣ୍ଣନା, 'ପଦ୍ମପୁରାଣ'ର ପାତାଳଖଣ୍ଡ ଅଧ୍ୟାୟ (୧୧୧-୯୯-୧୦୩) ତଥା ରାମକୀର୍ତ୍ତି ଦ୍ୱାରା ସମର୍ଥିତ ହୋଇଥାଏ ।

ନବରତ୍ନମାଳା ପ୍ରଦାନ ତଥା ଏହି ଅବସରରେ ଚାରିଚକ୍ଷୁର ମିଳନ କଥା 'ଜଗମୋହନ ରାମାୟଣ'ର ଆଉ ଗୋଟିଏ ସଂଯୋଜନା । ବରଣମାଳା ପ୍ରଦାନର ଉଲ୍ଲେଖ ବୋଧହୁଏ ପ୍ରଥମଥର ପାଇଁ 'ଅଧ୍ୟାତ୍ମ ରାମାୟଣ'ରେ ମିଳେ, 'କୃତ୍ତିବାସ ରାମାୟଣ' ଓ ତୁଳସୀ ଦାସଙ୍କ 'ରାମାୟଣ'ରେ ମଧ୍ୟ ସୀତାଙ୍କ ବରଣମାଳା ପ୍ରଦାନର ଉଲ୍ଲେଖ ଅଛି ।

ସୀତାଙ୍କ ପୂର୍ବାନୁରାଗ ଏହିପରି ଆଉ ଗୋଟିଏ ବୈଶିଷ୍ଟ୍ୟ । ସୁବର୍ଣ୍ଣ ମଣ୍ଡପ ଉପରୁ କଠୋର ଶରାସନକୁ ଦେଖି ସୀତାଙ୍କ ମନରେ ଯୁଗପତ୍ ଚିନ୍ତା ଓ ଆଶଙ୍କା ଜାତ ହୁଏ । ସେ ନିଜ ଭବିଷ୍ୟତ ଜୀବନ ସମ୍ବନ୍ଧରେ ଚିନ୍ତିତ ହୋଇ ପଡ଼ନ୍ତି । ଏହି ସମୟରେ ଶ୍ରୀରାମ ସଭାସ୍ଥଳରେ ପ୍ରବେଶ କରନ୍ତି । ଶ୍ରୀରାମଙ୍କୁ ଦେଖିବା ମାତ୍ରେ ସଖିମାନେ ସ୍ଥିର କରି ନେଲେ ଯେ, ସେ ହେଉଛନ୍ତି, ସୀତାଙ୍କର ବର । ସଖି ମନମାୟା ମୁଖରୁ ଏକଥା ଶୁଣି ସୀତା ଆନନ୍ଦିତା ହେଲେ । ଧନୁଧାରଣ କାଳରେ ଶ୍ରୀରାମଙ୍କ ବୀର-ବିକ୍ରମ ରୂପ ଦର୍ଶନକରି ସୀତା ତାଙ୍କ ପ୍ରତି ଆକୃଷ୍ଟ ହୋଇଯାନ୍ତି ଓ ତାଙ୍କୁ ନିଜ ସ୍ୱାମୀରୂପେ ପାଇବା ପାଇଁ ବିଭିନ୍ନ ଦେବତାଙ୍କୁ ମନେ ମନେ ପ୍ରାର୍ଥନା କରନ୍ତି । ଏହି ସମୟରେ ତାଙ୍କ ବାମ ନୟନ ଥରି ଉଠେ । ରାମଙ୍କୁ ପାଇବାର ଏହା ଶୁଭ ଶକୁନ ଭାବି ସେ ନିଜ ଅନ୍ତରଙ୍ଗ ସଖି ମନମାୟା ଆଗରେ ନିଜ ମନ କଥା ପ୍ରକାଶ କରନ୍ତି ।

ବରଣମାଳା ଦେବାବେଳେ ଚାରି ଚକ୍ଷୁର ମିଳନ ହୁଏ । ରାମ ସାହିତ୍ୟର ପୂର୍ବାନୁରାଗ ବର୍ଣ୍ଣନାକୁ ଦୁଇଭାଗରେ ବିଭକ୍ତ କରାଯାଇ ପାରେ । ଏହା ସୀତା ଓ ରାମଙ୍କର ପାରସ୍ପରିକ ଆକର୍ଷଣ ତଥା ପ୍ରେମ, ଓ କେବଳ ସୀତାଙ୍କର ଆକର୍ଷଣ । ବାଲ୍ମୀକିଙ୍କ ରାମାୟଣରେ ଏହାର କୌଣସି ସୂଚନା ନ ଥିଲେ ହେଁ ପରବର୍ତ୍ତୀ ରାମାୟଣକାରମାନେ ଏହି ଘଟଣା ବର୍ଣ୍ଣନାକୁ ବିଶେଷ ମହତ୍ୱ ପ୍ରଦାନ କରିଛନ୍ତି । ବଳରାମଙ୍କ ବର୍ଣ୍ଣନାରେ କେବଳ ସୀତାଙ୍କ ପୂର୍ବାନୁରାଗ କଥା ଅଛି । ସ୍ୱୟମ୍ବର କାଳରେ ଶ୍ରୀରାମଙ୍କୁ ସଭା

ପ୍ରାଙ୍ଗଣରେ ଦେଖିବାକ୍ଷଣି ସୀତା ପ୍ରେମବିହ୍ବଳ ହୋଇଗଲେ । ସେ ସଖି ଆଗରେ ନିଜର ମନ କଥା ପ୍ରକାଶ କରି କୁହନ୍ତି ଯେ, ଯଦି ଜନକ ରାମଙ୍କ ବ୍ୟତୀତ ଅନ୍ୟ କାହା ସହ ତାଙ୍କର ବିବାହ କରାନ୍ତି, ତାହା ହେଲେ ତାଙ୍କ ମୃତ୍ୟୁ ନିଶ୍ଚିତ । କଠୋର ଧନୁକୁ ପୁଷ୍ପବତ୍ କୋମଳ କରିଦେବା ପାଇଁ ସେ ଦେବତାମାନଙ୍କୁ ଅନୁରୋଧ କରନ୍ତି । ରାମଙ୍କୁ ବର ରୂପେ ପାଇଲେ ସେ ଚତୁର୍ଦ୍ଦଶ ବର୍ଷ ବନବାସ ବ୍ରତ ଗ୍ରହଣ କରିବେ ବୋଲି ସେତିକିବେଳେ ପ୍ରତିଜ୍ଞା କରିଥିଲେ । 'କୃତିବାସ ରାମାୟଣ' (୧୬୦-୧୬୧)ରେ ମଧ୍ୟ ସ୍ୱୟମ୍ବର କାଳରେ ରାମଙ୍କ ପ୍ରତି ସୀତାଙ୍କର ଅନୁରାଗ ଜାତ ହୋଇଥିବା ବୃତ୍ତାନ୍ତ ବର୍ଣ୍ଣିତ ।

ବଳରାମ ଦାସଙ୍କ ପ୍ରତିଭାର ମୂଲ୍ୟାଙ୍କନ କରିବାର ଅନ୍ୟ ଗୋଟିଏ ପଦ୍ଧତି ହେଉଛି ତୁଳନାତ୍ମକ ଆଲୋଚନା । ସେହି ସମୟରେ ଅନ୍ୟ ଦୁଇଜଣ ରାମାୟଣକାର ହେଉଛନ୍ତି ବଙ୍ଗଳାର କୃତ୍ତିବାସ ଓ ଅଯୋଧ୍ୟାର ତୁଳସୀ ଦାସ । ବଳରାମ ତୁଳସୀ ଏବଂ କୃତ୍ତିବାସଙ୍କ ମଧ୍ୟରେ ମାତ୍ର ପଚାଶ ବର୍ଷର ବ୍ୟବଧାନ । ତିନିଜଣଯାକ କବି ନିଜ ନିଜ କ୍ଷେତ୍ରରେ ଜନମନକୁ ବିଶେଷଭାବେ ଆଲୋଡ଼ିତ କରି ପାରିଛନ୍ତି ଏବଂ ପ୍ରତ୍ୟେକଙ୍କର ମୁଖ୍ୟ ଆଧାରଭୂମି ହେଉଛି ବାଲ୍ମିକୀ ରାମାୟଣ ।

ବଳରାମ, କୃତ୍ତିବାସ ଓ ତୁଳସୀ ଏହି ତନୋଟି ରାମୟଣରୁ ରାମଙ୍କ ମିଥିଳାପ୍ରବେଶ ଦୃଶ୍ୟକୁ ତୁଳନା ପାଇଁ ନିଆଯାଉ । ବାଲ୍ମୀକି ରାମାୟଣରେ ଏହା ନାହିଁ । କୃତ୍ତିବାସଙ୍କ ବର୍ଣ୍ଣନା ଅତ୍ୟନ୍ତ ସଂକ୍ଷିପ୍ତ । ସୀତାଙ୍କ ବର ଆସିଲା ବୋଲି ଶୁଣି ସମସ୍ତଙ୍କ ମନରେ ଉତ୍କଣ୍ଠାଭାବ ଜାଗ୍ରତ ହୋଇଛି । ସମସ୍ତେ ଘରକାମ ଛାଡ଼ି ଏପରିକି ଅନ୍ଧମାନେ ବନ୍ଧୁମାନଙ୍କ ହାତ ଧରି ରାମ ଓ ଲକ୍ଷ୍ମଣଙ୍କୁ ଦେଖିବା ପାଇଁ ଧାଇଁଛନ୍ତି ।

ଏକଥା ଶୁନିଆ ସବେ ରାଜ-ସଭାଜନ
କହିଲ ସୀତାର ବର ଆସିଲ ଏଖନ
ଆଇଲ ସମସ୍ତ ଲୋକ କରିତେ ଦର୍ଶନ
ମିତ୍ର କର ଧରି ଯତ ଏଲ ଅନ୍ଧଜନ
ସବେ ବଲେ ଦେଖିବ ଲକ୍ଷ୍ମଣ ଆର ରାମ
ମିଥିଲାର ସର୍ବଲୋକ ଛାଡ଼େ ଗୃହକାମ ।

ତୁଳସୀ ଦାସ ଶ୍ରୀରାମଙ୍କ ମିଥିଳାପ୍ରବେଶ କାଳରେ ଧନଧାନ୍ୟପୂର୍ଣ୍ଣ, ମଣିମୁକ୍ତା ଖଚିତ ଚତୁରଙ୍ଗ ବଳ ଶୋଭିତ ମିଥିଳା ନଗରର ସୁନ୍ଦର ବର୍ଣ୍ଣନା ପ୍ରସ୍ତୁତ କରିଛନ୍ତି । ନଗରର ସୁନ୍ଦରତା ବର୍ଣ୍ଣନା କରିହୁଏ ନାହିଁ । ମନ ଯେଉଁଠିକି ଯାଇଛି ସେଇଠି ଲାଖି ରହିଛି ।

ବନଇଂନ ବରନତ ନଗର ନିକାଇ
ଜହାଁ ଜାଇ ମନ ତହଇଁ ଲୋଭଇ ।

ରମଣୀୟ ମିଥିଳା ନଗରୀକୁ ଦେଖି ରାମଙ୍କ ମନ ପ୍ରସନ୍ନତାରେ ପୂର୍ଣ୍ଣ ହୋଇଥିଲେହେଁ, ରାମଙ୍କ ପ୍ରସନ୍ନ ବଦନ କାହାରିକୁ ଆନନ୍ଦ ଦାନ କରିଥିବା ପ୍ରସଙ୍ଗ ଏଠି ନାହିଁ। ତେବେ ମିଥିଳାପୁରୀର ନାଗରିକମାନଙ୍କର ଚିତ୍ତବୃତ୍ତି ଚିତ୍ରଣ କରିବାର ଲୋଭ ତୁଳସୀଦାସ ଏଡ଼ାଇ ପାରି ନାହାନ୍ତି। ପରଦିନ ପ୍ରଭାତରେ ରାମ ବିଶ୍ୱାମିତ୍ରଙ୍କ ଅନୁମତି ନେଇ ମିଥିଳା ଦେଖିବା ପାଇଁ ଓ ଲକ୍ଷ୍ମଣଙ୍କୁ ମିଥିଳା ଦେଖାଇବାପାଇଁ ବାହାରିଛନ୍ତି। ଏ ସମାଚାର ଶୁଣିବା ମାତ୍ରେ ପୁରବାସୀମାନେ ଗୃହର ଯାବତୀୟ କାର୍ଯ୍ୟ ପରିତ୍ୟାଗ କରି ଧନ ଲୁଣ୍ଠନ କରିବାପାଇଁ ଗରିବ ଦଉଡ଼ିଲା ପରି ଦଉଡ଼ିଲେ। ରାମଙ୍କ ସହଜସୁନ୍ଦର ରୂପ ସେମାନଙ୍କୁ ମୁଗ୍ଧ କଲା। ଯୁବତୀ ସ୍ତ୍ରୀମାନେ ଝରକା ପାଖରେ ଠିଆ ହୋଇ ରାମଙ୍କ ରୂପକୁ ପ୍ରେମପୂର୍ବକ ଦେଖିବାକୁ ଲାଗିଲେ। ପରସ୍ପର ମଧ୍ୟରେ ରାମଙ୍କର ରୂପର ଆଲୋଚନା ହେଲା। ଜଣେ ସଖୀ ମନ୍ତବ୍ୟ ଦେଇ କହିଲା ଯେ ରାମଙ୍କ ରୂପ "କୋଟି କାମରୂପ"କୁ ଜିଣିଗଲା। ସୁର, ନର, ଅସୁର ଓ ମୁନିମାନଙ୍କ ମଧ୍ୟରେ ଏପର ସୌନ୍ଦର୍ଯ୍ୟ ଶୁଣା ବି ନ ଥିଲା। ବିଷ୍ଣୁଙ୍କର ଚାରିହାତ, ବ୍ରହ୍ମାଙ୍କର ଚାରିମୁଣ୍ଡ, ଶିବଙ୍କର ବେଶ ଭୟାନକ ତଥା ସେ ପଞ୍ଚମୁଖ। ଆଉ କେହି ଦେବତା ନାହାନ୍ତି ଯାହାଙ୍କୁ ରାମଙ୍କ ସଙ୍ଗେ ତୁଳନା କରାଯାଇ ପାରିବ। ଏମାନଙ୍କର କିଶୋର ଅବସ୍ଥା; ଏମାନେ ସୌନ୍ଦର୍ଯ୍ୟର ଆଗାର। ଶ୍ୟାମ ଓ ଗୌରବର୍ଣ୍ଣର ସୁଖଧାମ। ଏମାନଙ୍କ ପ୍ରତିଅଙ୍ଗର ସୌନ୍ଦର୍ଯ୍ୟ ନିକଟରେ କୋଟିକୋଟି କାମଦେବଙ୍କ ଶୋଭା ହାରିଯିବ। ଏହାଙ୍କ ରୂପ ଦର୍ଶନରେ ଶରୀରଧାରୀ ଯେ କୌଣସି ବ୍ୟକ୍ତି ଯେ ମୋହିତ ହୋଇଯିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଏ କଥା ଶୁଣି ଅନ୍ୟ ଜଣେ ସଖୀ ରାମଙ୍କ କୀର୍ତ୍ତିକଳାପ ବର୍ଣ୍ଣନା କରିଛି। ଆଉ ଜଣେ ସଖୀ ରାମଙ୍କ ରୂପ ଦେଖି କହିଛି - ଏ ଜାନକୀଙ୍କର ଉପଯୁକ୍ତ ବର। ରାଜା ଏହାଙ୍କୁ ଦେଖିଲେ ନିଜ ଦୃଢ଼ପଣ ଛାଡ଼ି ଜାନକୀଙ୍କ ସହିତ ଏହାଙ୍କ ବିବାହ କରିଦେବେ। ଏ କଥା ଶୁଣି ଆଉ ଜଣେ କହିଲା, ରାଜା ଏମାନଙ୍କୁ ଦେଖିସାରିଛନ୍ତି। ମୁନିଙ୍କ ସହ ଏମାନଙ୍କର ଆଦରସତ୍କାର ମଧ କରିଛନ୍ତି। କିନ୍ତୁ ସେ ନିଜ ପ୍ରତିଜ୍ଞା ଛାଡ଼ିବେ ନାହିଁ। ଯାହା ହେବାର ଥିବ ତାହା ହେବ, ତା ନହେଲେ ସେ ନିଜେ ଅବିବେକୀ ଭାବେ ପରିଚିତ ହେବେ। ଆଉ ଜଣେ କହୁଛି, ବିଧାତା ମଙ୍ଗଳମୟ ଓ ଶୁଣାଯାଏ ଯେ ସେ ସମସ୍ତଙ୍କର ମଙ୍ଗଳ କରନ୍ତି। ତା'ହେଲେ ଜାନକୀଙ୍କୁ ଏହି ବର ମିଳିବ। ହେ ସଖୀ, ଏଥିରେ ସନ୍ଦେହ ନାହିଁ। ଯଦି ଦୈବକୃପାରୁ ଏ କଥା ଘଟେ, ତାହା ହେଲେ ଆମ ସମସ୍ତଙ୍କର କଲ୍ୟାଣ ହେବ। ସେ ତ ଏହି ବାହାନାରେ କେବେହେଲେ ପୁଣି ଏଠିକି ଆସିବେ, ନୋହିଲେ ତାଙ୍କ ଦର୍ଶନ ଆମ ପକ୍ଷରେ ଦୁର୍ଲ୍ଲଭ। ଆମ ପୂର୍ବ ଜନ୍ମର ପୁଣ୍ୟ ଅଧିକ ଥିଲେ ଏ କଥା ସମ୍ଭବ ହୋଇ ପାରିବ। ପୁଣି ଜଣେ କହିଲା ଏ ବିବାହରେ ସମସ୍ତଙ୍କର ମଙ୍ଗଳ। କେହି କହିଲା ଶିବଙ୍କ ଧନୁ ଅତି କଠୋର; ଆଉ ଏ ରାଜକୁମାର ବର୍ତ୍ତମାନ କୋମଳ ଶରୀର ବାଳକ। ଏ

କଥା ପୁଣି ସଖୀ ପ୍ରବୋଧନା ଦେଇ କହିଛି - ଏ ସବୁ ଅସାମଞ୍ଜସ୍ୟ ଜଣାପଡୁଥିଲେ ହେଁ ଏ ଅମିତ ମହିମାଶାଳୀ, ଏହାଙ୍କ ଚରଣଧୂଳିର ସ୍ପର୍ଶରେ ଅହଲ୍ୟା ପାପମୁକ୍ତ ହୋଇ ପାରିଲା । ଏ ନିଶ୍ଚିତ ଭାବେ ଶିବଧନୁକୁ ଭାଙ୍ଗି ସୀତାଙ୍କୁ ବିବାହ କରିବେ । ଯେଉଁ ବିଧାତା ସୀତାଙ୍କୁ ସୃଷ୍ଟି କରିଛି ସେହି ବିଧାତା ତାଙ୍କ ପାଇଁ ଶ୍ୟାମଳ ବର୍ଣ୍ଣର ବର ବି ଠିକ୍‌କରି ରଖିଛି । ଏ କଥା ଶୁଣି ସବୁସଖୀ ହସି ଉଠିଲେ ଓ କୋମଳ ସ୍ୱରରେ କହିଲେ, "ସେଇ ହୋଉ" ।

ତୁଳସୀଙ୍କ ବର୍ଣ୍ଣନାରେ ଶ୍ରୀରାମଙ୍କ ରୂପମୁଗ୍ଧା ଭାବପ୍ରବଣା ତଥା ଚତୁରୀ ନାୟିକାଙ୍କର ମନକଥା ଅତି ଚତୁରତାର ସହିତ ପ୍ରକାଶ ପାଇଛି । ସେମାନେ ରାମଙ୍କ ରୂପର ତୁଳନା ପାଇ ନାହାନ୍ତି । ସୀତାଙ୍କ ପାଇଁ ଯେ ସେ ସୁଯୋଗ୍ୟ ବର ଏ କଥା ମଧ ସେମାନେ ଉପଲବ୍ଧି କରିଛନ୍ତି । ସୀତାଙ୍କର ବର ହେଲେ ଯେ ସେମାନେ ତାଙ୍କୁ ଥରକୁ ଥର ଦେଖି ପାରିବେ, ଏ କଳ୍ପନା ବି ରହିଛି । ଅଥଚ ଏମାନଙ୍କ ହୃଦୟର ସହଜ ଓ ସ୍ୱାଭାବିକ କଥା ଏଥିରେ ନାହିଁ । ଏମାନଙ୍କ ଦୃଷ୍ଟି ଅତି ମାର୍ଜିତ । ରାମଙ୍କ ରୂପ ଦର୍ଶନରେ ଏମାନଙ୍କ ମନ ସାମାଜିକ ସୀମା ଅତିକ୍ରମ କରିଯିବାକୁ ସାହସ କରିନାହିଁ । ଏ ଦୃଷ୍ଟିରୁ ବଳରାମ ତୁଳସୀଙ୍କର ସଂପୂର୍ଣ୍ଣ ବିପରୀତ । ବଳରାମ ଦାସ ଯେଉଁ ସୁନ୍ଦରୀ ଯୁବତୀଙ୍କର ଚିତ୍ରଣ କରିଛନ୍ତି, ସେମାନେ ରାମଙ୍କୁ ଦେଖିବା ପାଇଁ ପାଗଳ ହୋଇ ଯାଇଛନ୍ତି । ସେମାନେ ବଢ଼ି ପାଣି ପରି ଅମଡ଼ାମଡ଼ା ମାଡ଼ିଯିବାକୁ ପଛେଇ ନାହାନ୍ତି । ଶ୍ରୀରାମ ରାଜମାର୍ଗରେ ପ୍ରବେଶ କଲାମାତ୍ରେ ସମସ୍ତଙ୍କ ମୁଖରେ ଗୋଟିଏ ଶବ୍ଦ ସାଧୁ-ସାଧୁ-ସାଧୁ । ଜଣକଠାରୁ ଶୁଣି ଆଉ ଜଣେ ଦଉଡ଼ିଛି । ସମସ୍ତେ ଶ୍ରୀରାମଙ୍କୁ ଦେଖିବାପାଇଁ ବେଢ଼ି ଯାଇଛନ୍ତି ।

ସମସ୍ତଙ୍କ ଭିତରେ ଯୁବତୀ କନ୍ୟାମାନଙ୍କର ଦୁର୍ଦ୍ଦଶା ଅତି ଶୋଚନୀୟ । ରାମଙ୍କୁ ଦେଖିବା ମୋହରେ କାହାର ଜଘନ ଓ ଯଉବନରୁ ବସ୍ତ୍ର ଖସି ପଡୁଛି । କେହି ଆଖିଛଟା ମାରୁଛି ତ କେହି ଅଙ୍ଗ ମୋଡ଼ି କାଖ ଦେଖାଉଛି । କାହାର ମୁଣ୍ଡ ଖୋସା ଖସି ପଡ଼ିବାରୁ ସେ ବାଁ ହାତରେ ତାକୁ ଧରି ଧାଇଁଛି । କାହାର ଖୋସାରୁ ବକୁଳମାଳ ଖସି ଭୂମିରେ ଲୋଟୁଛି । କାହା ସୀମନ୍ତର ମୁକ୍ତା ତୁଟି ମୁଖ ଉପରେ ପଡ଼ିଛି । କାହାର ବେଣ୍ଟୁଲାର ଢାଲି,କାହାର ଗଳାର ଚାପ ଖସି ଛିଣ୍ଡି ପଡୁଛି । ସେସବୁ ପ୍ରତି ଧ୍ୟାନ ନାହିଁ । ସୁବେଶ ହେଉଥିବା ସଖୀମାନଙ୍କର ଦଶା ଆହୁରି ବିଚିତ୍ର । କେହି ଆଖିର ଅଞ୍ଜନକୁ ଆଙ୍ଗୁଳି ଆଗରେ ଲଗାଇଛି ତ କେହି ଗନ୍ଧ ପେଡ଼ିକୁ ହାତରେ ଧରି ଧାଇଁଛି । କେହି ପାନପିକକୁ ଅଳତା ଭାବି ଲଗାଇଛି ତ କେହି ସିନ୍ଦୁରକୁ ଗନ୍ଧ ଗୁଣ୍ଡି ଭାବି ଦେହରେ ବୋଳିଛି । କେହି କେହି ସୁଚତୁରୀ ହସି ହସି ଧାଇଁଲାବେଳେ ତାହା ମୁଖରେ ପାନପିକ ରଙ୍ଗ ଜ୍ୟୋତିକୁ ମଧ ଧିକ୍କାର କରୁଛି । କେହି ନାରୀ ଶାଢ଼ୀରୁ ଅଧେ ପିନ୍ଧି, ଶାଢ଼ୀରୁ ଅଧେ ହାତରେ ଧରି ଦ୍ରୁତ ଗତିରେ ଚାଲିଛି । ପବନରେ ଛାତିର ଲୁଗା ଉଡ଼ି ପଳାଇଲାଣି ।

ସେମାନେ ଏତେ ବିହ୍ୱଳ ଯେ ବାଉଳାରେ ରାମ ଭାବି ଦେଢ଼ଶ୍ୱଶୁରଙ୍କୁ କେହି କୁଣ୍ଢାଇ ପକାଇଲାଣି । କେହି ମଳାଶୂର, କେହି ଶ୍ୱଶୂରଙ୍କୁ ରାମଙ୍କ ଖବର ପଚାରି, ପରେ ନିଜର ଭୁଲ ବୁଝିପାରି ଜିଭ କାମୁଡ଼ି ପକାଇଛି । ଏତେ ଦୁର୍ଦ୍ଦଶାରେ ମଧ୍ୟ ମନ ପୁରୁନାହିଁ । ସେମାନେ ନିଜର ଅଯୋଗ୍ୟତାକୁ ଧିକ୍କାର କରି କହିଛନ୍ତି -

ଦେହଯାକ କିମ୍ପା ଆମ୍ଭର ନାହିଁ ନୟନ

ଯେହାଙ୍କୁ ଦେଖିଲେ ତ ଶାନ୍ତି ନୋହେ ମନ ।

କୁମାରୀମାନେ ଶ୍ରୀରାମଙ୍କୁ ବରରୂପେ ପାଇବାର କଳ୍ପନା କଲାବେଳେ ବିବାହିତା ନାରୀମାନେ ବିଭା ନ ହୋଇଥିଲେ ଶ୍ରୀରାମଙ୍କୁ ନିଃସଂକୋଚରେ ଯେ ବରଣ କରି ନେଇଥାନ୍ତେ, ଏ କଥା କଳ୍ପନା କରି ନେଉଛନ୍ତି । ବୃଦ୍ଧାମାନେ ନିଜ ଭାଗ୍ୟକୁ ନିନ୍ଦା କରି ସନ୍ତାପି ହେଉଛନ୍ତି ।

ପୁରୁଷମାନଙ୍କୁ ଶ୍ରୀରାମଙ୍କ ସାଧୁମୂର୍ତ୍ତି ଦେଖା ଦେଇଛି । ଏପରି ମୂର୍ତ୍ତି ଦେଖିବା ତ ଦୂରର କଥା, କେବେ କେଉଁଠି ଶୁଣି ବି ନ ଥିଲେ । ବାଳକମାନେ ଭାବିଛନ୍ତି ରାମଙ୍କ ସହ ଖେଳିଲେ ବାଳମେଳି ଖୁବ୍ ସୁନ୍ଦର ଦେଖା ଯାଆନ୍ତା - ବୃଦ୍ଧମାନଙ୍କ ଦୃଷ୍ଟିରେ ସେ ଦେବତା । ସାଧାରଣ ଘରର ନାରୀମାନେ ତାଙ୍କ ପଛେ ପଛେ ଗୋଡ଼ାଇ ଥିଲାବେଳେ ସାମନ୍ତ, ପାତ୍ରଙ୍କ ଯୁବତୀମାନେ ଜଗତୀ ଉପରୁ ରାମଙ୍କ ଶୋଭା ଦେଖି ଆନନ୍ଦିତ ହେଉଛନ୍ତି ।

ତୁଳସୀ ଓ ବଳରାମଙ୍କୁ ତୁଳନା କଲେ ସେମାନଙ୍କର ଦୃଷ୍ଟିକୋଣ ସ୍ପଷ୍ଟଭାବେ ବାରି ହୋଇଯାଏ । ତୁଳସୀ ଯେଉଁ ଯୁବତୀ ନାରୀମାନଙ୍କର କଥାବାର୍ତ୍ତା ଶୁଣି ଶୁଣାଇଛନ୍ତି, ସେମାନେ ଝରକାର ପଛପଟେ ରହି ଘର ଭିତରୁ ଶ୍ରୀରାମଙ୍କୁ ଦେଖିଛନ୍ତି । ଶ୍ରୀରାମଙ୍କର ସଙ୍ଗେ ସଙ୍ଗେ ଦୌଡ଼ିବାର ସୌଭାଗ୍ୟ ସେମାନଙ୍କର ନାହିଁ । ବଳରାମ ମଧ୍ୟ ସାମନ୍ତ ଏବଂ ପାତ୍ରମାନଙ୍କର ନାରୀମାନଙ୍କ କଥା ବର୍ଣ୍ଣନା କଲାବେଳେ ସେମାନଙ୍କୁ ଜଗତୀ ଉପରକୁ ନେଇ ରାମଙ୍କୁ ଦେଖାଇଛନ୍ତି । ଯେଉଁମାନେ ପିଞ୍ଜରାବଦ୍ଧ, ସେମାନଙ୍କ ମନ ମଧ୍ୟ ସଂକୁଚିତ । ସ୍ୱାଧୀନତାର ଆନନ୍ଦ, ଉନ୍ମାଦନା ଓ ଉଦ୍ଦାମତା ସେମାନେ ପାଇବେ କେଉଁଠୁ ? ବଳରାମ ଦାସ ମଧ୍ୟ ଯେଉଁ ନାଗରୀ ବା ଚତୁରୀମାନଙ୍କର ଚିତ୍ରଣ କରିଛନ୍ତି ସେମାନେ ଓଡ଼ିଶାର ଗାଁ ଗହଳିରୁ ଆନୀତା । ଅତିରଞ୍ଜନ ଯେ ନାହିଁ ତାହା ନୁହେଁ । କିନ୍ତୁ ଯେଉଁମାନେ ଓଡ଼ିଶାରେ ବର ଆସିବା ବେଳର ଦୃଶ୍ୟ ଦେଖିଛନ୍ତି, ସେମାନେ ବଳରାମ ଦାସଙ୍କର ବର୍ଣ୍ଣନାର ବାସ୍ତବତା ଉପଲବ୍ଧି କରିପାରିବେ । କାଖରେ ପିଲା ଧରି ଗୁରୁଜନଙ୍କୁ ଧକ୍କା ଦେଇ ବର ଦେଖିବାର ଯେଉଁ ଆଗ୍ରହ, ତାହା କେବଳ ବଳରାମଙ୍କ ବର୍ଣ୍ଣନାରୁ ଦେଖିହୁଏ ।

ଆଉ ଗୋଟିଏ କଥା । ସମୟର ପ୍ରଭାବ । ତୁଳସୀ ବା କୃତ୍ତିବାସ ସେମାନଙ୍କ ରାମାୟଣ ଲେଖିଲା ବେଳକୁ ଚାରିପାଖେ ମୋଗଲ ରାଜତ୍ୱ । ମୋଗଲ ବା ପଠାଣମାନଙ୍କ

ଢଙ୍ଗରେ ପଦାକୁ ବାହାରିବା ନାରୀମାନଙ୍କ ପକ୍ଷେ ସଂପୂର୍ଣ୍ଣ ଅସମ୍ଭବ । ସେଥିପାଇଁ ତୁଳସୀ ସେମାନଙ୍କୁ ଝରକାର ପଛ ପଟରେ ରଖି ଶ୍ରୀରାମଙ୍କୁ ଦେଖାଇଛନ୍ତି ଓ କୃତ୍ତିବାସ ସେମାନଙ୍କ ବିଷୟରେ ନ କହିବାକୁ ହିଁ ଠିକ୍ ଭାବିଛନ୍ତି । ଅଥଚ 'ଜଗମୋହନ ରାମାୟଣ'ର ରଚନା ସ୍ୱାଧୀନ ଓଡ଼ିଶାରେ । ସେଥିପାଇଁ ବଳରାମ ନାରୀ-ସ୍ୱାଧୀନତାର ଏ ଦୁଃସାହସିକ ଚିତ୍ର ଦେବାକୁ ବୋଧହୁଏ ସମର୍ଥ ହୋଇଛନ୍ତି ।

ସୁନ୍ଦର ପୁରୁଷ ଦେଖି ନାରୀମାନେ ଯେ ବିହ୍ୱଳା ହୋଇ ପଡ଼ିବେ, ଏହା ଥିଲା ବଳରାମଙ୍କ ଉପରେ ପରମ୍ପରାର ପ୍ରଭାବ । ଏହି ପରମ୍ପରା ଉଭୟ ଶାସ୍ତ୍ରୀୟ ଓ ଲୌକିକ । 'ଉଦାତ୍ତ ରାଘବ'ରେ ଏହାର ଆରମ୍ଭ । 'ଶ୍ରୀମଦ୍ଭାଗବତ'ରେ ରାମକୃଷ୍ଣଙ୍କର ମଥୁରାଗମନ କାଳରେ ମଥୁରା ନାରୀମାନଙ୍କର ଭାବବିହ୍ୱଳତା ଏହାର ଆଉ ଗୋଟିଏ ଦୃଷ୍ଟାନ୍ତ । ପରବର୍ତ୍ତୀ କାଳରେ କବିମାନେ ଏ ପ୍ରକାର ବର୍ଣ୍ଣନାକୁ ସ୍ୱୀକୃତ ରୀତିରୂପେ ଗ୍ରହଣ କରି ବ୍ୟବହାର କରିଛନ୍ତି । ନାରୀମାନେ ଯେତେ ସୁଖରେ ଥାଆନ୍ତୁ ପଛକେ, କାର୍ତ୍ତିକେୟଙ୍କ ପରି ବର ଥାଉ ପଛେ, ପରପୁରୁଷ ସହ ମିଳିବାର ଲୋଭ ସେମାନଙ୍କର ସହଜାତ ପ୍ରବୃତ୍ତିଭାବେ ବଳରାମ ଦାସ ଗ୍ରହଣ କରି ନେଇଛନ୍ତି । ସୀତାଙ୍କ ସହ ମିଳିତ ହେବାର ପ୍ରଥମ ରାତ୍ରିରେ ଶ୍ରୀରାମଙ୍କ ମୁଖରୁ ବଳରାମ ନାରୀମାନଙ୍କର ଚରିତ୍ରର ଯେଉଁ ବର୍ଣ୍ଣନା କରିଛନ୍ତି ସେଥିରୁ ଏହାର ସ୍ପଷ୍ଟ ଆଭାସ ମିଳିଥାଏ । ନାରୀମାନଙ୍କ ଚରିତ୍ରର ବର୍ଣ୍ଣନା କରି କବି ଲେଖିଛନ୍ତି -

ସ୍ତିରୀ ଚଞ୍ଚଳା ଚିତ୍ତ ଯେ ଅଥିର
ମନ ପ୍ରକୃତି ଥିର ନୁହଇ ତାହାଙ୍କର ।
ଭ୍ରତା ଯଦ୍ୟପିରେ ଜାଣନ୍ତି କାମକଳା ।
ବିଦ୍ୟାବନ୍ତ ପଣେ ହୋଇବ କୁଶଳା ।।
ନିରିମଳ ପଣେ ଅଟଇ ଅବତାର ।
ଯୁବା ବୟସ ଯେ ଅଟଇ ତାହାଙ୍କର ।।
ଅବିଚ୍ଛନେ ଦାନୀ ଧନେଣ ଗରିଷ୍ଠ ।
ସର୍ବ ସଂପଦ ଯେହୁ କୁଳଗୋତ୍ର ଶ୍ରେଷ୍ଠ ।।
ସ୍ତିରୀଙ୍କି ଶୃଙ୍ଗାରେ ଯେବେ ପାରନ୍ତି ତୋଷ କରି ।
ପ୍ରାଣରୁ ଅଧିକ କରି ଘେନିଥାନ୍ତି ନାରୀ ।।
ଯେସନେକ ଭ୍ରଥାକୁ ତେଜନ୍ତି ଯୁବତୀ ।
ଅନ୍ୟ ପୁରୁଷେ ସେ ଯେ କରଇ ମେଳମତି ।

ଯୁଗ ପ୍ରଭାବ ସତ୍ତ୍ୱେ ବଳରାମଙ୍କ ଶୃଙ୍ଗାରିକ ମନର ପରିଚୟ ମଧ୍ୟ ଏଥିରେ ନିହିତ । ସେ ଇଚ୍ଛା କରିଥିଲେ ତୁଳସୀଦାସଙ୍କ ପରି ଏସବୁ ବର୍ଣ୍ଣନାରୁ ନିଜ କାବ୍ୟକୁ

ମୁକ୍ତକରି ପାରିଥାନ୍ତେ । ତାହା ସେ ଜାଣିଶୁଣି କରି ନାହାନ୍ତି । ବରଂ ଏସବୁ ଦୃଶ୍ୟ ବର୍ଣ୍ଣନା କଲାବେଳେ ସେ ସହଜଭାବେ ସେ ସବୁର ଚିତ୍ର ନିପୁଣ ଚିତ୍ରକାର ଭାବେ ପ୍ରଦାନ କରିଛନ୍ତି । ତାନ ହୋଇଥିଲେ ଷୋଡ଼ଶ ଶତାବ୍ଦୀରେ ମଧ୍ୟ ଓଡ଼ିଆ ଯୁବତୀ ଖଣ୍ଡିଏ ଶାଢ଼ୀରେ ଦାଣ୍ଡକୁ ବାହାରୁଥିବା, ବକ୍ଷଦେଶ ଆବୃତ କରିବା ପାଇଁ ତା'ପାଖରେ କାଞ୍ଚୁଲି ନ ଥିବା; ପୁଣି ଶାଢ଼ୀ ଖଣ୍ଡିକ ଖସିଗଲେ ଜଘନ ପ୍ରଦେଶ ଅନାବୃତ ହୋଇଯାଉଥିବା କଥା ଆମେ ଜାଣନ୍ତୁ କିପରି ? ଏସବୁ ଦୃଶ୍ୟ ଦେଖି କବି ବଳରାମ ଯେତେ ରସିକତା କରିଥାଆନ୍ତୁ ପଛେ, ଏହା ଯେ ଓଡ଼ିଆ ସମାଜର ବାସ୍ତବ ଚିତ୍ର ଏକଥା ଆଜି ମଧ୍ୟ ଅସ୍ୱୀକାର କରି ହୁଏ ନାହିଁ । ଆଜି ମଧ୍ୟ ଓଡ଼ିଆ ଲଳନା ଖଣ୍ଡିଏ ଶାଢ଼ୀରେ ଲଜ୍ଜା ନିବାରଣ କରିବାକୁ ବାଧ୍ୟ ହୁଏ ।

କବି ମନକୁ ଚିହ୍ନିବାପାଇଁ ଆଉ ଗୋଟିଏ ଦୃଷ୍ଟାନ୍ତ ହେଉଛି ସୀତାଙ୍କ ରୂପ ବର୍ଣ୍ଣନା, ଅଷ୍ଟାଦଶ ଶତାବ୍ଦୀ ବେଳକୁ ନାୟିକାର ରୂପ ବର୍ଣ୍ଣନା କାବ୍ୟର ମୁଖ୍ୟ ବିଷୟବସ୍ତୁକୁ ଯେପରି ପ୍ରଭାବିତ କରିଥିଲା, ଷୋଡ଼ଶ ଶତାବ୍ଦୀରେ ତା' ନାହିଁ । ତେବେ ରୂପବର୍ଣ୍ଣନା କରିବାର ଲୋଭ କୃତ୍ତିବାସ, ତୁଳସୀ ଓ ବଳରାମ ପ୍ରତ୍ୟେକଙ୍କ କାବ୍ୟରେ ଦେଖିବାକୁ ମିଳେ । ତିନିଜଣଯାକ କବି ସୀତାଙ୍କୁ ଲକ୍ଷ୍ମୀଙ୍କ ସମ୍ମାନ ଦେଇଥିଲେ ହେଁ, ରୂପବର୍ଣ୍ଣନା ପ୍ରସଙ୍ଗରେ କୃତ୍ତିବାସ ଓ ତୁଳସୀ ଯେତେ ସଂଯତ, ବଳରାମ ସେତେ ନୁହନ୍ତି । ତୁଳନା ପାଇଁ ନିମ୍ନରେ ତିନିଜଣଙ୍କ କାବ୍ୟରୁ ସୀତାଙ୍କ ରୂପବର୍ଣ୍ଣନା ପ୍ରଦତ୍ତ ହୋଇଛି ।

କୃତ୍ତିବାସଙ୍କ 'ରାମାୟଣ'ରେ ସୀତାଙ୍କ ରୂପବର୍ଣ୍ଣନା ଅତି ସଂକ୍ଷିପ୍ତଭାବେ ପ୍ରଦତ୍ତ । ସୀତାଙ୍କ ଜନ୍ମକଥା କହିବାବେଳେ କବି ରୂପ ବର୍ଣ୍ଣନାକୁ ପ୍ରାଧାନ୍ୟ ଦେଇ କହିଛନ୍ତି - ସୀତା ହେଉଛନ୍ତି ନିଜେ ଲକ୍ଷ୍ମୀମାତା । ଯାହାଙ୍କର ରୂପଦେଖି ନିଜେ ରାମାୟଣ ମୁଗ୍ଧ ହୋଇଯାନ୍ତି । ଏପରି ରୂପ ତୁଳନା ଇହଲୋକରେ ଉପଲଭ୍ୟ ନୁହେଁ । କବି ମଧ୍ୟ ଅକ୍ଷମ । ତେବେ ବି ତାଙ୍କ ଲେଖନୀରେ ସୀତାଙ୍କର ଚାମର ସଦୃଶ କେଶପାଶ, ପକ୍ୱ ବିମ୍ବଫଳ ସଦୃଶ ଅଧର, ମୁଷ୍ଟି ମଧ୍ୟରେ ଆବଦ୍ଧ ହୋଇ ପାରୁଥିବା କ୍ଷୀଣ କଟି, ହିଙ୍ଗୁଳରଞ୍ଜିତ ପାଦର ଅଙ୍ଗୁଳି ଓ ହେମଲତା ସଦୃଶ ଶରୀରର ପରିଚୟ ମିଳେ । ବିବାହ କାଳରେ ସୀତାଙ୍କୁ ସଜାଇବା ଅବସରରେ କୃତ୍ତିବାସ କେବଳ କେତେକ ଅଳଙ୍କାରର ସଂଯୋଜନା କରିଛନ୍ତି ।

ତୁଳସୀଦାସ ମଧ୍ୟ ସୀତାଙ୍କୁ ଲକ୍ଷ୍ମୀ ତଥା ଜଗତଜନନୀରୂପେ ଗ୍ରହଣକରି ସାଧାରଣ ନାରୀପରି ତାଙ୍କର ରୂପବର୍ଣ୍ଣନା କରି ନାହାନ୍ତି । ତୁଳସୀଙ୍କ ଦୃଷ୍ଟିରେ ସୀତାଙ୍କ ଶୋଭା ବର୍ଣ୍ଣନାର ଅତୀତ; ସେ ଜଗତର ମାତା, ରୂପ ଓ ଗୁଣର ଖଣି, ତାଙ୍କ ସୌନ୍ଦର୍ଯ୍ୟ ନିକଟରେ ସବୁ ଉପମା ହୀନପ୍ରଭ କାରଣ ସେସବୁ ଲୌକିକ ସ୍ତ୍ରୀର ଅଙ୍ଗଶୋଭାରେ ଅନୁରାଗ ରଖିଥାନ୍ତି । ଏସବୁ ଉପମା ଦେଇ ସୀତାଙ୍କର ରୂପବର୍ଣ୍ଣନା କଲେ କୁ-କବିର

ଅପଯଶ ମିଳେ । ସାଧାରଣ ସ୍ତ୍ରୀଙ୍କ ସହିତ ସୀତାଙ୍କର ତୁଳନା ମଧ୍ୟ ହୋଇପାରେ ନାହିଁ । ସଂସାର ମଧ୍ୟରେ ସୀତାଙ୍କପରି ସୁନ୍ଦରୀ ଅତ୍ୟନ୍ତ ଦୁର୍ଲ୍ଲଭ, ସରସ୍ୱତୀ ତାଙ୍କର ମୁଖରତା ଯୋଗୁଁ, ପାର୍ବତୀ ଅର୍ଦ୍ଧାଙ୍ଗୀ ହୋଇଥିବା ହେତୁ, ରତିଦେବୀ ନିଜ ପତିଙ୍କୁ ଦୁଃଖଦାୟକ ହୋଇଥିବାରୁ ଓ ଲକ୍ଷ୍ମୀଙ୍କର ପ୍ରିୟ ଭାଇ ଭାବେ ମଦ ଓ ବିଷ ଆଦୃତ ହେଉଥିବା ଯୋଗୁ ସେମାନେ କେହି ସୀତାଙ୍କ ସମାନ ନୁହନ୍ତି । ଯଦି ଛବିରୂପୀ ଅମୃତ ସମୁଦ୍ର ହୁଏ, ପରମ ବା ଶ୍ରେଷ୍ଠ ରୂପ କଚ୍ଛପର ସ୍ଥାନ ଗ୍ରହଣ କରେ, ଶୋଭା ଯଦି ରଜ୍ଜୁ ହୁଏ ଓ ଶୃଙ୍ଗାର ଯଦି ମନ୍ଦରପର୍ବତ ହୁଏ ଓ ନିଜେ କାମଦେବ ନିଜ ହାତରେ ମନ୍ଥନକରି ସୁନ୍ଦରତା ଓ ସୁଖର ମୂଳ ଲକ୍ଷ୍ମୀଙ୍କୁ ଉତ୍ପନ୍ନ କରନ୍ତି, ତାହା ହେଲେ ବି କବିମାନେ ଅତି ସଙ୍କୁଚିତ ଚିତ୍ତରେ ସୀତାଙ୍କ ସହ ତାଙ୍କର ତୁଳନା କରିବେ । ତୁଳସୀଦାସ ସୀତାଙ୍କୁ ଜଗଜ୍ଜନନୀ କହିବା ପରେ ତାଙ୍କ ପ୍ରାକୃତ ସୌନ୍ଦର୍ଯ୍ୟର ବର୍ଣ୍ଣନା କରିବାପାଇଁ କେବେହେଲେ ଲାଳାୟିତ ହୋଇ ନାହାନ୍ତି । ରାମଙ୍କ ମୁଖରୁ ସୀତାଙ୍କ ମୁଖଚନ୍ଦ୍ରର ଯେଉଁ ବର୍ଣ୍ଣନା ମିଳେ ସେଥିରେ ମଧ୍ୟ କାମୁକତା ବା ଶୃଙ୍ଗାରିକତାର ବର୍ଣ୍ଣନା ନାହିଁ । ତୁଳସୀଦାସଙ୍କ ଭକ୍ତିପ୍ଲୁତ ମନ ପାଖରେ ପ୍ରାକୃତ ସୌନ୍ଦର୍ଯ୍ୟ ମୂଲ୍ୟହୀନ ।

ଏମାନଙ୍କ ତୁଳନାରେ ବଳରାମଙ୍କ ବର୍ଣ୍ଣନା ଅତି ବିସ୍ତୃତ । ବଳରାମଙ୍କ ଦୃଷ୍ଟିରେ ସୀତା ହେଉଛନ୍ତି ପରମଲକ୍ଷ୍ମୀ ଓ ଜଗଜ୍ଜନଙ୍କର ମାତା; ତେଣୁ ଶଚୀ, ରୋହିଣୀ, ପାର୍ବତୀ, ରତି, ଛାୟା, ସ୍ୱାହା, ତାରା, ଯମୁନା, ଦମୟନ୍ତୀ, ସାବିତ୍ରୀ, ରମ୍ଭା ଓ ସତୀପ୍ରଭୃତିଙ୍କ ସହ ତାଙ୍କର ତୁଳନା କରାଯାଇ ନ ପାରେ । କବି କହିଛନ୍ତି-

ସ୍ୱୟେଂ ପରମଲକ୍ଷ୍ମୀ ଜଗତର ମାତା ।
ଯେହାଂକର ତହୁଂ ଜାତ ସକଳ ଦେବତା ।
ତାହାଂକର ନାରୀ କି ଯେହାଙ୍କୁ ସମ ହୋନ୍ତି ।
ଯେ ସେ ପରମଲକ୍ଷ୍ମୀ ଯୁବତୀ ରତ୍ନକାନ୍ତି ।

ଏହି ପ୍ରସଙ୍ଗରେ କବି ସୀତାଙ୍କ ହେମବର୍ଣ୍ଣ ଶରୀର, ପୂର୍ଣ୍ଣଚନ୍ଦ୍ର ସଦୃଶ ମୁଖ, ନୀଳନୀଳକ ଜାଣି ନୟନ, ତିଳଫୁଲ ପରି ନାସିକା, କାମ ମନ ଫାଶୀପରି ଶ୍ରବଣ, ବଧୁଲୀ ପୁଷ୍ପ, କାନ୍ତିଯୁକ୍ତ ଅଧର, କାମର ଶରାସନ ପରି ଭ୍ରୂଲତା, ଉଡ଼ନ୍ତା ଶଙ୍ଖଚିଲ ପରି ଚନ୍ଦନ ଚିତା, ସିନ୍ଦୂର, ଅଳକାବଳୀ, କଣ୍ଠ, ଭୁଜ, ଅଙ୍ଗୁଳି, ନଖ, ପଦରତଳ, କରତଳରେ ଥିବା ଉର୍ଦ୍ଧ ରେଖା, କଟି, ନାଭି, ସ୍ତନ, ଜଙ୍ଘ, ନିତମ୍ବ, ଜାନୁ, ରୋମାବଳୀ, ପାଦତଳି ଓ ଅଙ୍ଗୁଷ୍ଠିର ନଖପ୍ରଭୃତି ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା କରିଛନ୍ତି । ତୁଳସୀଦାସଙ୍କ ପରି ବଳରାମ ସାଧାରଣ ସ୍ତ୍ରୀ, ଦେବତାଙ୍କ ପତ୍ନୀ ଓ ଅପ୍ସରୀମାନଙ୍କ ସହ ସୀତାଙ୍କର ରୂପର ତୁଳନା କରିବା ପାଇଁ କୁଣ୍ଠା ପ୍ରକାଶ କରିଥିଲେ ହେଁ ପାରମ୍ପରିକ ରୀତିରେ ତାଙ୍କ ସୌନ୍ଦର୍ଯ୍ୟର ବର୍ଣ୍ଣନା କରିଛନ୍ତି । ସୀତାଙ୍କୁ ପରମଲକ୍ଷ୍ମୀ ଜାଣି ମଧ୍ୟ ତାଙ୍କ ରୂପ ବର୍ଣ୍ଣନା କରିବାର

ମୋହ ବଳରାମ ପରିତ୍ୟାଗ କରି ପାରି ନାହାନ୍ତି । ତେବେ ଶରୀରର ବର୍ଣ୍ଣ, ମୁଖ ଓ ଆଖିର ଶୋଭା ବର୍ଣ୍ଣନା କରିବା ପାଇଁ ସେ ଯେତେ ତତ୍ପର, ସ୍ତନ, ଜଙ୍ଘ, ନିତମ୍ବ ଓ ଜାନୁପ୍ରଭୃତି ଅଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା ପାଇଁ ସେ ସେତିକି ସଂଯତ । କେବଳ ଉଲ୍ଲେଖ ମାତ୍ର କରି ସେ ପରମ୍ପରା ନିର୍ବାହ କରିଛନ୍ତି । ରମ୍ଭା, ଉର୍ବଶୀ ଓ ଭରତା ରୂପ ବର୍ଣ୍ଣନାର ଅସଂଯମତା ଏଥିରେ ନାହିଁ ।

'ଜଗମୋହନ ରାମାୟଣ'କୁ ଅନୁଶୀଳନ କରିବାର ଅନ୍ୟ ଗୋଟିଏ ବିଶିଷ୍ଟ ଦିଗ ହେଉଛି ଭାରତର ବିଭିନ୍ନ ପ୍ରାନ୍ତୀୟ ରାମାୟଣ ସହ ଏହାର ସମ୍ପର୍କ । ବଳରାମ ଦାସ ତାଙ୍କ 'ରାମାୟଣ'ରେ ଏପରି ବହୁ ଘଟଣାର ବର୍ଣ୍ଣନା କରିଛନ୍ତି ଯେଉଁସବୁ ଘଟଣା ମାଧ୍ୟମରେ ଭାରତୀୟ ବିଭିନ୍ନ ପ୍ରାନ୍ତ ସହ ଓଡ଼ିଶାର ସମ୍ପର୍କ ପ୍ରତିଷ୍ଠିତ ହୋଇଥାଏ । କେବଳ କେତୋଟି ଉଦାହାରଣ ନିମ୍ନରେ ପ୍ରଦତ୍ତ ହୋଇଛି ।

ଦଶରଥଙ୍କ ପ୍ରତି ଶନିଙ୍କ କୋପ, ରାମଙ୍କ ଉପରେ ତାଉ। ଅଭିଶାପ ବର୍ଣ୍ଣନା କରି କବି ବଳରାମ ଆସାମ, ବଙ୍ଗ ଓ ଓଡ଼ିଶାର ସମ୍ପର୍କ ପ୍ରକାଶ କରୁଥିବାବେଳେ ଶବରୀର ଅଇଁଠା ଫଳ ଶ୍ରୀରାମଙ୍କୁ ଦେଇ ସେ ଉତ୍ତର ଭାରତର ବିଶିଷ୍ଟ କବି ସୁରଦାସଙ୍କ ସହ ନିଜକୁ ମିଶାଇ ଦିଅନ୍ତି । ଦଶରଥଙ୍କ ପତ୍ନୀ-ସଂଖ୍ୟା ସାତଶହରୁ ଅଧିକ, ବାଳକ ରାମଙ୍କ ଦ୍ୱାରା ମନ୍ଥରାର ଉତ୍ପୀଡ଼ନ ଓ ବିଭୀଷଣଙ୍କ ପୁତ୍ରୀଭାବେ ତ୍ରିଜଟାର ଉଲ୍ଲେଖ ପ୍ରଭୃତି ଉପାଖ୍ୟାନ ସାହାଯ୍ୟରେ ସେ ଓଡ଼ିଶାକୁ ଦାକ୍ଷିଣାତ୍ୟର ବିଭିନ୍ନ ପ୍ରାନ୍ତସହ ସଂପୃକ୍ତ କରନ୍ତି । ଏସବୁ ଦୃଷ୍ଟାନ୍ତରୁ ଏ କଥା ମଧ୍ୟ ପ୍ରମାଣିତ ହୁଏ ଯେ ଭାରତରେ ପ୍ରଚଳିତ ବହୁ ଅବାଲ୍ମୀକୀୟ ରାମକଥା ଲୋକମୁଖରେ ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଅକ୍ଳେଶରେ ପ୍ରସାରିତ ହୋଇ ପାରୁଥିଲା ଓ କବିମାନେ ସେ ସବୁକୁ ନିଜ ଗ୍ରନ୍ଥରେ ସଂଗ୍ରହ କରି ରଖୁଥିଲେ ।

ଜଗମୋହନ ରାମାୟଣରେ ଏପରି ବହୁ ଘଟଣାର ଉଲ୍ଲେଖ ଅଛି, ଯଦ୍ଦ୍ୱାରା ଜାଭା ଓ ସୁମାତ୍ରାସହ ଓଡ଼ିଶାର ସମ୍ପର୍କ ମଧ୍ୟ ପ୍ରମାଣିତ ହୋଇଥାଏ । ଧନୁଭଙ୍ଗ ପାଇଁ ଇନ୍ଦ୍ରଙ୍କ ଅସଫଳ ପ୍ରଚେଷ୍ଟା, ଚକ୍ରବାକ ଓ ଚକ୍ରବାକୀ ଉପାଖ୍ୟାନ, ଲଙ୍କାର ଜୀର୍ଣ୍ଣୋଦ୍ଧାର ଘଟଣା ବଳରାମ ଦାସଙ୍କ ପରି 'ରାମକୀର୍ତ୍ତି' ଓ 'ସେରୀରାମ'ର ଲେଖକ ମଧ୍ୟ ବର୍ଣ୍ଣନା କରିଛନ୍ତି ।

## ପ୍ରକାଶିତ ସଂସ୍କରଣ ଓ ସମ୍ପାଦନାର ଆବଶ୍ୟକତା :

'ଜଗମୋହନ ରାମାୟଣ' ପଞ୍ଚଦଶ ଶତାବ୍ଦୀର ଶେଷଭାଗର ରଚନା । ସାରଳା 'ମହାଭାରତ' ପରେ ଓଡ଼ିଶାର ସାମାଜିକ, ରାଜନୀତିକ, ଧାର୍ମିକ ଓ ଆର୍ଥନୀତିକ ଅବସ୍ଥାର ଅନୁଶୀଳନ ପାଇଁ ଏହାର ଅଧ୍ୟୟନର ଆବଶ୍ୟକତା ଅନେକ । ଓଡ଼ିଆ ଭାଷାର ବିକାଶ ପଥରେ ଏହାର ଦାନ ଅତୁଳନୀୟ । ଏଥିରେ ଏତେ ପ୍ରାଚୀନ ଓ ବର୍ତ୍ତମାନ କାଳରେ

ଅନୁପଲବ୍ଧ ତଥା ଅପ୍ରଚଳିତ ଶବ୍ଦ ଓ ପ୍ରୟୋଗ ସଞ୍ଚିତ ହୋଇ ରହିଛି ଯେ, ସେ ସବୁର ବିଶ୍ଳେଷଣ ବିନା, ଓଡ଼ିଆ ଭାଷା ସମ୍ବନ୍ଧରେ ସଠିକ୍ ସମ୍ବାଦ ମିଳେ ନାହିଁ । ଏସବୁ ଦୃଷ୍ଟିରେ 'ଜଗମୋହନ ରାମାୟଣ'ର ଏକ ପ୍ରାମାଣିକ ସଂସ୍କରଣ ଅତ୍ୟନ୍ତ ଆବଶ୍ୟକ ମନେ ହୁଏ । ପ୍ରଫେସର ସାହୁଙ୍କର ନିଜସ୍ୱ ସଂପାଦନରେ 'ଜଗମୋହନ ରାମାୟଣ'ର ଦୁଇ ଖଣ୍ଡରେ ପ୍ରାମାଣିକ ସଂସ୍କରଣରେ ପ୍ରକାଶ ପାଇଛି, ପ୍ରକାଶ କରିଛନ୍ତି ସେ ନିଜେ ସଂପାଦକ । ଗୋବିନ୍ଦ ରଥଙ୍କ ଦ୍ୱାରା ସଂଗୃହୀତ ଓ ସଂଶୋଧିତ ହୋଇ ପ୍ରକାଶ ପାଇଥିବା ବୃହଦ୍ ଓ ସଚିତ୍ର 'ଦାଣ୍ଡି ବାଲ୍ମୀକି ରାମାୟଣ' ପ୍ରକୃତ 'ଜଗମୋହନ ରାମାୟଣର' ଏକ ବିକୃତ ଓ ପରିବର୍ଦ୍ଧିତ ରୂପ । ଦାଣ୍ଡିବୃତ୍ତକୁ ଚଉଦ ଅକ୍ଷରୀ କରିବାକୁ ଯାଇ ସେ ମୂଳ ପୋଥିରେ କେତେକ ଶବ୍ଦ ସଂଯୋଜିତ କରିଛନ୍ତି । ପ୍ରାଚୀନ କାବ୍ୟ-କବିତା ସମ୍ବନ୍ଧରେ ତାଙ୍କର ଧାରଣା ଅଦ୍ଭୁତ ଥିଲା । ସେ ଶ୍ଳୀଳତା ଓ ଅଶ୍ଳୀଳତାର ବିଚାର କରି ତାଙ୍କ ଦୃଷ୍ଟିରେ ଅଶ୍ଳୀଳ ଜଣା ପଡୁଥିବା ବହୁ ଅଂଶକୁ କାବ୍ୟରୁ ପରିତ୍ୟାଗ କରିଛନ୍ତି । ସେ କବିରବି ଭାରତୀଙ୍କ 'ପାକେଲା ଚଉତିଶା'ର ମୁଖବନ୍ଧରେ ନିଜର ଏହି ପରିବର୍ତ୍ତନ ପ୍ରକ୍ରିୟାର ସୂଚନା ଦେଇ ଲେଖିଛନ୍ତି-

''ଏହା ଗୋଟିଏ ସୁଲଳିତ ମୁକ୍ତିମାର୍ଗମୂଳକ ଚଉତିଶା । କବି ଆଦିରସ ଅବଲମ୍ବନ କରି ଏହା ଲେଖିଛନ୍ତି; ପ୍ରକୃତରେ ଦେଖିଲେ ଏହା ପରମାର୍ଥବିଷୟକ ଅଟେ । ସାକ୍ଷାତରେ ଯେ ସବୁ ପଦ ପାଠ ମାତ୍ରେ ଅଶ୍ଳୀଳ ବୋଲି ପାଠକର ଜ୍ଞାନ ହେବ ସେ ସବୁର ଆମ୍ଭେ ପରବର୍ତ୍ତନ କଲୁଁ ।''

('ପାକେଲା ଚଉତିଶା' - H.M. Dutta Pressରେ ପ୍ରକାଶିତ)

ଗୋବିନ୍ଦ ରଥଙ୍କ ଏ ପ୍ରକାର ପରିବର୍ତ୍ତନ ସେ ଯୁଗରେ ମଧ୍ୟ ସମାଲୋଚକର ଦୃଷ୍ଟି ଆକୃଷ୍ଟ କରିଥିଲା । କବି କୃପାସିନ୍ଧୁଙ୍କ ରଚିତ 'ଛପନ ପଦିଆ'ର ପ୍ରକାଶନ ବେଳେ ଗୋବିନ୍ଦ ରଥଙ୍କ ଏ ପ୍ରକାର ପରିବର୍ତ୍ତନର ପ୍ରତିବାଦ କରି ଏହାର ପ୍ରକାଶକ ଲେଖିଛନ୍ତି-

''ଥିଲା ଏ ଗ୍ରନ୍ଥର ଯେଉଁ ଆକାର । ରଥେ କଲେ ତାହା ଭିନ୍ନ ପ୍ରକାର ।
କେବଳ ଆଇନକାନୁନେ ଡରି । ରସମୟ ଭାବ ଭାଙ୍ଗିଲେ ଧରି ।
ସାହିତ୍ୟ ଲୋଭରେ
ଭଙ୍ଗା ଦଦରା ଛପାଇଲେ ଥରେ । ୧ ।
ସଭା ସମିତିକି ଏହି ପ୍ରାର୍ଥନା । ସାହିତ୍ୟ ଉନ୍ନତି ପାଇଁ କାମନା ।
ରଖିଅଛ ଯେବେ ଦେଶର ଭାଇ । ସରକାରେ କର ଗୁହାରି ଯାଇ ।
ପୁରୁଣା ଗ୍ରନ୍ଥରେ
ଆଦି-ରସ ଦୋଷ ନ ଘେନ ବାରେ । ୨ ।''

'ଜଗମୋହନ ରାମାୟଣ'କୁ ମଧ୍ୟ ଏହିପରି ବହୁ ଶଲ୍ୟ-କ୍ରିୟାର ଶରବ୍ୟ ହେବାକୁ ପଡ଼ିଛି । ଜରତା ଉପାଖ୍ୟାନରୁ ଗୋଟିଏ ଉଦାହରଣ ଦେଲେ ଏ କଥା ସ୍ପଷ୍ଟ ହେବ ।

ଜରତାର କୋଳରେ ଅଛଇ ମୁନି ବସି ।
ସୁନ୍ଦରୀ କି ମୁନି କଥା କହଇ ହସି ॥

ଏହି ପଦ ପରେ ଥିବା ଛଅ ପଦକୁ ପଣ୍ଡିତ ଗୋବିନ୍ଦ ରଥ ଛପା ବହିରୁ ବହିଷ୍କାର କରି, ଏହା ପରେ ଥିବା ଗୋଟିଏ ପଦ ଦେଇ ପୁଣି ଦଶପଦ ରଖି ନାହାନ୍ତି । ପୁଣି ଦୁଇପଦ ଦେଇ ସେ ତିନିପଦ ଛାଡ଼ି ଦେଇଛନ୍ତି । ଏହିପରି ପଦ ସଂଖ୍ୟା କମ୍ କରିବା ସଙ୍ଗେ ସଙ୍ଗେ ସେ ରାମକଥାର ବହୁ ଆବଶ୍ୟକୀୟ ଉପାଦାନ ତଥା ଓଡ଼ିଆ ଭାଷା ତଥା ସଂସ୍କୃତିର ବହୁ ପ୍ରାଚୀନ ପ୍ରକାଶକୁ ଲୋପ କରି ଦେଇଛନ୍ତି ।

ଅଥଚ ଅନ୍ୟ ସ୍ଥାନରେ ଯାହା ରହିବା କଥା ନୁହେଁ, କେବଳ ଗୋଟିଏ ପରିବର୍ଦ୍ଧିତ ପୋଥି ଉପରେ ନିର୍ଭର କରିବା ଫଳରେ ସେ ସବୁ ରହି ଯାଇଛି । ସୁରାଭାଣ୍ଡେଶ୍ୱର ଉତ୍ପତ୍ତି କଥା ନିଆଯାଉ । ଗଙ୍ଗାକୂଳରେ ଋଷି ଶୁଣ୍ଡି ନାରୀକୁ ଭୋଗ କରିବା ପାଇଁ ଶୁଣ୍ଡି ଗୃହକୁ ଯାଇଛନ୍ତି । ସେ ଗୃହରେ ପ୍ରବେଶ କରିବା ମାତ୍ରେ ଗୃହର ନାୟକ ଆସି ପହଞ୍ଚିଛି । ଅନ୍ୟ ଉପାୟ ନ ଦେଖି ଶୁଣ୍ଡି ଯୁବତୀ ତାଙ୍କୁ ଗୋଟିଏ ତୁଚ୍ଛା ସୁରା ଭାଣ୍ଡ ମଧ୍ୟରେ ରଖି ଦେଇଛି । ଛପା ବହିରେ ଏ ଘଟଣାର ରୂପ କେବଳ ଗୋଟିଏ ପଦ ଯୋଗୁଁ ସମ୍ପୂର୍ଣ୍ଣ ବଦଳି ଯାଇଛି । ଏଥିରେ :

ତପୀଙ୍କି ଘେନି ରମଣୀ ପଲଙ୍କେ ବସିଲା ।
ନାନା ପ୍ରବୋଧେ ରମଣ-ରସଭୋଗ ଦେଲା ॥

ଓଡ଼ିଆ ଭାଷାରେ ପ୍ରାଚୀନ ବୈଶିଷ୍ଟ୍ୟ ଆଲୋଚନା କରିବା ପ୍ରସଙ୍ଗରେ ପଣ୍ଡିତ ଗୋପୀନାଥ ନନ୍ଦ 'ଜଗମୋହନ ରାମାୟଣ'ର ଆଦିକାଣ୍ଡରୁ ବହୁ ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି । ତାଙ୍କ ଦ୍ୱାରା ବ୍ୟବହୃତ ହୋଇଥିବା ପୋଥି ଗୋବିନ୍ଦ ରଥଙ୍କ ପୋଥି ଅପେକ୍ଷା ବିଶେଷ ପ୍ରମାଣିକ । ତେବେ କେବଳ ଖଣ୍ଡିଏ ପୋଥି ଉପରେ ନିର୍ଭର କରିଥିବା ଯୋଗୁଁ କେତେକ ସ୍ଥଳରେ ପ୍ରମାଣିକ ଗ୍ରନ୍ଥ ସହ ଅମେଳ ରହିବା ସ୍ୱାଭାବିକ । ଗୋବିନ୍ଦ ରଥଙ୍କ ପ୍ରକାଶିତ ପୁସ୍ତକ, ଗୋପୀନାଥ ନନ୍ଦଙ୍କ ଉଦ୍ଧୃତାଂଶ, ଓ ପ୍ରାମାଣିକ ସଂସ୍କରଣର ଗୃହୀତ ପାଠକୁ ତୁଳନାରେ ରଖି ଦେଖିଲେ 'ଜଗମୋହନ ରାମାୟଣ'ର ପ୍ରାମାଣିକ ସଂସ୍କରଣର ଆବଶ୍ୟକତା ଉପଲବ୍ଧି କରିହୁଏ । ନିମ୍ନରେ ଏହିପରି କେତୋଟି ଉଦାହରଣ ପ୍ରଦତ୍ତ ହୋଇଛି ।

(୧) (କ) ଏକା ଜଣକକୁ କି କେ ଗର୍ଭରେ ଧଇଲା ।
କେମନ୍ତ ହୋଇ ଛଡ଼ ଗର୍ଭରେ ରହିଲା ॥

'ଓଡ଼ିଆ ଭାଷା ତତ୍ତ୍ୱ' ପୃ - ୪୩୫

(ଖ) ଏକାଜଣକ କି ଏତେ ଗର୍ଭରେ ଧଇଲା ।
କି ଅବା ସେ ଷଡ଼ଙ୍କର ଗର୍ଭରେ ରହିଲା ॥

ପ୍ରକାଶିତ ଗ୍ରନ୍ଥ, ପୃ. ୧୦୪

(ଗ) ଏକାଜଣକରେ କି ଗର୍ଭରେ ଧଇଲା ।
କିଅବା ଛଡ଼ଙ୍କର ଗର୍ଭରେ ରହିଲା ॥ ପ୍ରାମାଣିକ ସଂସ୍କରଣ

'କି କେ' ଗୋଟିଏ ପ୍ରାଚୀନ ଅବ୍ୟୟ । ଏହି ପ୍ରୟୋଗକୁ ଦେଖାଇବା ପାଇଁ ପଣ୍ଡିତ ଗୋପୀନାଥ ନନ୍ଦ ଏହି ଦୃଷ୍ଟାନ୍ତଟି ଉଦ୍ଧାର କରିଥିଲେ ହେଁ, ଏହା କେବଳ ଗୋଟିଏ ପୋଥିର ପାଠ, ପ୍ରାମାଣିକ ସଂସ୍କରଣ ପାଇଁ ବ୍ୟବହୃତ ହୋଇଥିବା ପୋଥିସବୁରେ ଏ ପାଠ ନ ଥିବାରୁ ଗୃହୀତ ହୋଇନାହିଁ ।

(୨) (କ) ଏ ତୁମ୍ଭର କଟକେ ସର୍ବଜନେ ସୁଖୀ ।
ବିଶେଷେ ବେଶ୍ୟା ଆମ୍ଭେ ନୋହୁଁ ଦୁଃଖୀ ॥

'ଓ ଭା ତ.' ପୃ. ୩୭୮

(ଖ) ଏ ତୋହର କଟକରେ ସର୍ବଜନ ସୁଖୀ ।
ଏକା ମୁହିଁ ତୋ ରାଜ୍ୟରେ ଅଟେ ବଡ଼ ଦୁଃଖୀ ।

(ପ୍ରକାଶିତ ପୁସ୍ତକ, ପୃ. ୧୬)

(ଗ) ଏ ତୋହର କଟକେ ସର୍ବଜନେ ସଖୀ ।
ବିଶେଷେଣ ବେଶ୍ୟା ନୋହୁ ଆମ୍ଭେ ଦୁଃଖୀ ॥

ପ୍ରାମାଣିକ ସଂସ୍କରଣ ।

ଗୋପୀନାଥ ନନ୍ଦଙ୍କ ଗୃହୀତ ପାଠସହ ପ୍ରାମାଣିକ ସଂସ୍କରଣର ସାଦୃଶ୍ୟ ଥିଲେହେଁ, ଗୋବିନ୍ଦ ରଥଙ୍କ ପ୍ରକାଶିତ ଗ୍ରନ୍ଥରେ ଏହା ପରିବର୍ତ୍ତିତ ହୋଇ ବିକୃତ ଅର୍ଥ ପ୍ରଦାନ କରୁଛି ।

(୩) (କ) ରତ୍ନ ହାନ୍ଦୋଳାଏ ଶାନ୍ତାଏ ବିଜେ କଲେ,
ବିଚିତ୍ର ପାଟଟେରା ଘୋଡ଼ାଇଣ ଦେଲେ ।

ଓ. ଭା. ତ, ପୃ, ୨୮୦

(ଖ) ଦିବ୍ୟପୁର ରଚି ଅଣାଇଲାକ ସୁନ୍ଦରୀ,
ବିଚିତ୍ର ପାଟର ନେତ ଉହାଡ଼ଣ ଦେଲେ ।

ପ୍ରକାଶିତ ପୁସ୍ତକ, ପୃ ୩୯

(ଗ) ରତ୍ନ ହାନ୍ଦୋଳାଏ ଶାଏନ୍ତା ବିଜେ କଲା ।
ବିଚିତ୍ର ପାଟଟେରା ଓହାଡ଼ ପଡ଼ିଲା ।

ପ୍ରମାଣିକ ସଂସ୍କରଣ

ଏହି ଦୃଷ୍ଟାନ୍ତକୁ ବିଶ୍ଳେଷଣ କଲେ, ଶାନ୍ତାଏ ଅପେକ୍ଷା ଶାଏନ୍ତା ଓ ଘୋଡ଼ାଇଣ ଦେଲେ ଅପେକ୍ଷା ଓହାଡ଼ ପଡ଼ିଲା ବିଶେଷ ସଙ୍ଗତ ଜଣାପଡ଼େ । ଏ ସ୍ଥଳରେ ଗୋବିନ୍ଦ ରଥଙ୍କ ବିକୃତ ପାଠ ଦୁଇପଦର ଅଂଶ ହୋଇ ପ୍ରକାଶ ପାଇଛି ।

ପ୍ରକାଶିତ ଗ୍ରନ୍ଥରୁ ଏହିପରି ବହୁ ବିକୃତ ଉଦାହରଣ ସଂଗ୍ରହ କରାଯାଇ ପାରେ । ସେ ସବୁକୁ ଗୋଟି ଗୋଟି କରି ବାଛି ଦେଖାଇବାର ଆବଶ୍ୟକତା ନାହିଁ । ତେବେ 'ଜଗମୋହନ ରାମାୟଣ'ର ପ୍ରକୃତ ରୂପ ଦେଖାଇବା ପାଇଁ ଆଦିକାଣ୍ଡର ଆରମ୍ଭରୁ ପ୍ରାମାଣିକ ପାଠର କେତେକ ଅଂଶ ନିମ୍ନରେ ଉଦ୍ଧାର କରାଯାଉଛି ।

## ଜଗମୋହନ ରାମାୟଣ (ଆଦିକାଣ୍ଡ)

### (ପ୍ରସ୍ତୁତ ସମ୍ପାଦନାରୁ କିଛି)

ବନ୍ଦଇ ଜଗନ୍ନାଥ କମଳାବିଳାସ । ବନ୍ଦଇ ଜଗନ୍ନାଥ ଅଖିଳ ଭୂତେ ବାସ । ୧ ।
ସୁନ୍ଦର ଶ୍ରୀମୁଖ ନୀଳମଣି-ଆଭା । କି ଜାଣି ପଟାନ୍ତର କଳାମେଘ ପ୍ରଭା । ୨ ।
ନୟନ ଯୁଗଳ କି ସରଗର ଶଶୀ । ଜଗତଜନ ହୃଦେ ଅଛଇ ପ୍ରଭୁ ବସି । ୩ ।
ସର୍ବଦେବ ନିସ୍ତାରଣ ସୁରଗଣ ସାହା । ସୁବର୍ଣ୍ଣର ଶଙ୍ଖଚକ୍ର ଶୋହେ ବେନି ବାହା । ୪ ।
ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରି । ବିଚିତ୍ର ଝିନବାସ ପରିହରଣ କରି । ୫ ।
ଅତିଅନ୍ତ ଶୋଭିତ ପବିତ୍ର ନେତ ଟୋପି । ଶ୍ରୀହରି ଅଙ୍ଗେଣ କାଛେଣି ପାଟଥୋପି । ୬ ।
ଶିରରେ ମୁକୁଟ କୁଣ୍ଡଳ ଶୋଭାବନ । ବିରାଜନ୍ତି ମଣି କିରଣ ଛନ ଛନ । ୭ ।
ଲଲାଟେ ଶୋହଇ ନବରତ୍ନ ଚିତା । ଗଗନ ମଣ୍ଡଳେ କି ଶୋହଇ ସବିତା । ୮ ।
ଅଳକା ଲମ୍ବିତ ଯେ ମୁକୁତାର ଝରା । ଚନ୍ଦ୍ର ସନ୍ନିଧେ ଯେହ୍ନେ ଉଦୟେ ଲକ୍ଷେ ତାରା । ୯ ।
ଗଣ୍ଡସ୍ଥଳେ ମଣ୍ଡିତ ସୁସଞ୍ଚ ଚାରୁଚିତା । ହରପଦେକ ଉପରେ ସୁବର୍ଣ୍ଣ ପଇତା । ୧୦ ।
ସୁରଙ୍ଗ ଅଧର ସୁଦୀର୍ଘ ସଞ୍ଚରେଖା । ଜଳଧର କୋଳେ କି ଝଟଇ ବିଦ୍ୟୁରେଖା । ୧୧ ।
ସୁସଞ୍ଚ ନାସିକାକୁ ପଟାନ୍ତର ନାହିଁ କିଛି । ଆପଣେ ଆପଣକୁ ଘଟଇ ଶ୍ରୀବତ୍ସି । ୧୨ ।
ତଇଲୋକ ବଶ ହୁଅଇ ଯାହାକୁ ଚାହିଁ । ସେ ଜଗନ୍ନାଥ ଯେ ଜଗତମୋହନ ଗୋସାଇଁ । ୧୩ ।
କଟିରେ ମେଖଳା ଶୋଭିତ ଦିବ୍ୟ କାନ୍ତି । ବାମେ ଯମଦାଢ଼ ପ୍ରଚଣ୍ଡ ସୂର୍ଯ୍ୟଜ୍ୟୋତି । ୧୪ ।
ରତ୍ନ ଚକାୟେଣ ନେତର ତୁଳି ପାଡ଼ି । ବିଜୟେ ଜଗନ୍ନାଥ ବଡ଼ିମା ପଣ ଛାଡ଼ି । ୧୫ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚିନ୍ତନ୍ତି ଯାକୁ ଧ୍ୟାନେ । ସେ ପ୍ରଭୁ ଅବତାର ମଞ୍ଚେଣ ଆପଣେ । ୧୬ ।
ଦେଖିତ ସୁଲଭ ମନୁଷ୍ୟେ ଅଗୋଚର । ପରମବ୍ରହ୍ମ ରୂପ ଦିଶନ୍ତି ଶୋଭାକର । ୧୭ ।
ଅବତାର ଅଂଶେ ଅଶେଷ ରୂପ କାୟା । ଅବର୍ଣ୍ଣ ଅଜାତ ଅବିବେକ ମାୟା । ୧୮ ।
ଅନନ୍ତ କୋଟୀ ବ୍ରହ୍ମାଣ୍ଡେ ଯେକଇ ଈଶ୍ୱର । ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁତୀର । ୧୯ ।
ଦଣ୍ଡ ସିଂଘାସନ ଚାମର ଶ୍ୱେତ ଛତ୍ର । ରାଜାରାଜେଶ୍ୱର ନୃପତି ପବିତ୍ର । ୨୦ ।

(ଖ) ଏକାଢଣକ କି ଏତେ ଗର୍ଭରେ ଧଇଲା ।
କି ଅବା ସେ ଷଡ଼ଙ୍କର ଗର୍ଭରେ ରହିଲା ॥
ପ୍ରକାଶିତ ଗ୍ରନ୍ଥ, ପୃ. ୧୦୪

(ଗ) ଏକାଢଣକରେ କି ଗର୍ଭରେ ଧଇଲା ।
କିଅବା ଛଡ଼ଙ୍କର ଗର୍ଭରେ ରହିଲା ॥ ପ୍ରାମାଣିକ ସଂସ୍କରଣ

'କି କେ' ଗୋଟିଏ ପ୍ରାଚୀନ ଅବ୍ୟୟ । ଏହି ପ୍ରୟୋଗକୁ ଦେଖାଇବା ପାଇଁ ପଣ୍ଡିତ ଗୋପୀନାଥ ନନ୍ଦ ଏହି ଦୃଷ୍ଟାନ୍ତଟି ଉଦ୍ଧାର କରିଥିଲେ ହେଁ, ଏହା କେବଳ ଗୋଟିଏ ପୋଥିର ପାଠ, ପ୍ରାମାଣିକ ସଂସ୍କରଣ ପାଇଁ ବ୍ୟବହୃତ ହୋଇଥିବା ପୋଥିସବୁରେ ଏ ପାଠ ନ ଥିବାରୁ ଗୃହୀତ ହୋଇନାହିଁ ।

(୨) (କ) ଏ ତୁମ୍ଭର କଟକେ ସର୍ବଜନେ ସୁଖୀ ।
ବିଶେଷେ ବେଶ୍ୟା ଆମ୍ଭେ ନୋହୁଁ ଦୁଃଖୀ ॥
'ଓ ଭା ଚ.' ପୃ. ୩୭୮

(ଖ) ଏ ତୋହର କଟକରେ ସର୍ବଜନ ସୁଖୀ ।
ଏକା ମୁହିଁ ତୋ ରାଜ୍ୟରେ ଅଟେ ବଡ଼ ଦୁଃଖୀ ।
(ପ୍ରକାଶିତ ପୁସ୍ତକ, ପୃ. ୧୬)

(ଗ) ଏ ତୋହର କଟକେ ସର୍ବଜନେ ସଖୀ ।
ବିଶେଷେଣ ବେଶ୍ୟା ନୋହୁ ଆମ୍ଭେ ଦୁଃଖୀ ॥
ପ୍ରାମାଣିକ ସଂସ୍କରଣ ।

ଗୋପୀନାଥ ନନ୍ଦଙ୍କ ଗୃହୀତ ପାଠସହ ପ୍ରାମାଣିକ ସଂସ୍କରଣର ସାଦୃଶ୍ୟ ଥିଲେହେଁ, ଗୋବିନ୍ଦ ରଥଙ୍କ ପ୍ରକାଶିତ ଗ୍ରନ୍ଥରେ ଏହା ପରିବର୍ତ୍ତିତ ହୋଇ ବିକୃତ ଅର୍ଥ ପ୍ରଦାନ କରୁଛି ।

(୩) (କ) ରତ୍ନ ହାନ୍ଦୋଳାଏ ଖାନ୍ତାଏ ବିଜେ କଲେ,
ବିଚିତ୍ର ପାଟଚେରା ଘୋଡ଼ାଇଣ ଦେଲେ ।
ଓ. ଭା. ଚ, ପୃ, ୨୮୦

(ଖ) ଦିବ୍ୟପୁର ରଚି ଅଣାଇଲାକ ସୁନ୍ଦରୀ,
ବିଚିତ୍ର ପାଟର ନେତ ଉହାଡ଼ଣ ଦେଲେ ।
ପ୍ରକାଶିତ ପୁସ୍ତକ, ପୃ ୩୯

(ଗ) ରତ୍ନ ହାନ୍ଦୋଳାଏ ଖାଏନ୍ତା ବିଜେ କଲା ।
ବିଚିତ୍ର ପାଟଚେରା ଓହାଡ଼ ପଡ଼ିଲା ।
ପ୍ରମାଣିକ ସଂସ୍କରଣ

ଏହି ଦୃଷ୍ଟାନ୍ତକୁ ବିଶ୍ଳେଷଣ କଲେ, ଶାନ୍ତାଏ ଅପେକ୍ଷା ଶାଏନ୍ତା ଓ ଘୋଡ଼ାଇଣ ଦେଲେ ଅପେକ୍ଷା ଓହାଡ଼ ପଡ଼ିଲା ବିଶେଷ ସଙ୍ଗତ ଜଣାପଡ଼େ। ଏ ସ୍ଥଳରେ ଗୋବିନ୍ଦ ରଥଙ୍କ ବିକୃତ ପାଠ ଦୁଇପଦର ଅଂଶ ହୋଇ ପ୍ରକାଶ ପାଇଛି।

ପ୍ରକାଶିତ ଗ୍ରନ୍ଥରୁ ଏହିପରି ବହୁ ବିକୃତ ଉଦାହରଣ ସଂଗ୍ରହ କରାଯାଇ ପାରେ। ସେ ସବୁକୁ ଗୋଟି ଗୋଟି କରି ବାଛି ଦେଖାଇବାର ଆବଶ୍ୟକତା ନାହିଁ। ତେବେ 'ଜଗମୋହନ ରାମାୟଣ'ର ପ୍ରକୃତ ରୂପ ଦେଖାଇବା ପାଇଁ ଆଦିକାଣ୍ଡର ଆରମ୍ଭରୁ ପ୍ରାମାଣିକ ପାଠର କେତେକ ଅଂଶ ନିମ୍ନରେ ଉଦ୍ଧାର କରାଯାଉଛି।

## ଜଗମୋହନ ରାମାୟଣ (ଆଦିକାଣ୍ଡ)

### (ପ୍ରସ୍ତୁତ ସମ୍ପାଦନାରୁ କିଛି)

ବନ୍ଦଇ ଜଗନ୍ନାଥ କମଳାବିଳାସ। ବନ୍ଦଇ ଜଗନ୍ନାଥ ଅଖିଳ ଭୂତେ ବାସ। ୧।
ସୁନ୍ଦର ଶ୍ରୀମୁଖ ନୀଳମଣି-ଆଭା। କି ଜାଣି ପଟାନ୍ତର କଳାମେଘ ପ୍ରଭା। ୨।
ନୟନ ଯୁଗଳ କି ସରଗର ଶଶୀ। ଜଗତଜନ ହୃଦେ ଅଛଇ ପ୍ରଭୁ ବସି। ୩।
ସର୍ବଦେବ ନିସ୍ତାରଣ ସୁରଗଣ ସାହା। ସୁବର୍ଣ୍ଣର ଶଙ୍ଖଚକ୍ର ଶୋହେ ବେନି ବାହା। ୪।
ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରି। ବିଚିତ୍ର ଝିନବାସ ପରିହରଣ କରି। ୫।
ଅତିଅନ୍ତ ଶୋଭିତ ପବିତ୍ର ନେତ ଟୋପି। ଶ୍ରୀହରି ଅଙ୍ଗେଣ କାଛେଣି ପାଟଥୋପି। ୬।
ଶିରରେ ମୁକୁଟ କୁଣ୍ଡଳ ଶୋଭାବନ। ବିରାଜନ୍ତି ମଣି କିରଣ ଛନ ଛନ। ୭।
ଲଲାଟେ ଶୋହଇ ନବରତ୍ନ ଚିତା। ଗଗନ ମଣ୍ଡଳେ କି ଶୋହଇ ସବିତା। ୮।
ଅଳକା ଲମ୍ବିତ ଯେ ମୁକୁତାର ଝରା। ଚନ୍ଦ୍ର ସନ୍ନିଧେ ଯେହ୍ନେ ଉଦୟେ ଲକ୍ଷେ ତାରା। ୯।
ଗଣ୍ଡସ୍ଥଳେ ମଣ୍ଡିତ ସୁସଞ୍ଚ ଚାରୁଚିତା। ହରପଦେକ ଉପରେ ସୁବର୍ଣ୍ଣ ପଇତା। ୧୦।
ସୁରଙ୍ଗ ଅଧର ସୁଦୀର୍ଘ ସଞ୍ଚରେଖା। ଜଳଧର କୋଳେ କି ଝଟଇ ବିଦ୍ୟୁରେଖା। ୧୧।
ସୁସଞ୍ଚ ନାସିକାକୁ ପଟାନ୍ତର ନାହିଁ କିଛି। ଆପଣେ ଆପଣକୁ ଘଟଇ ଶ୍ରୀବତ୍ସି। ୧୨।
ତଇଲୋକ ବଶ ହୁଅଇ ଯାହାକୁ ଚାହିଁ। ସେ ଜଗନ୍ନାଥ ଯେ ଜଗତମୋହନ ଗୋସାଇଁ। ୧୩।
କଟିରେ ମେଖଳା ଶୋଭିତ ଦିବ୍ୟ କାନ୍ତି। ବାମେ ଯମଦାଢ଼ ପ୍ରଚଣ୍ଡ ସୂର୍ଯ୍ୟଜ୍ୟୋତି। ୧୪।
ରତ୍ନ ଚକାୟେଣ ନେତର ତୁଳି ପାଢ଼ି। ବିଜୟେ ଜଗନ୍ନାଥ ବଡ଼ିମା ପଣ ଛାଡ଼ି। ୧୫।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚିନ୍ତନ୍ତି ଯାକୁ ଧ୍ୟାନେ। ସେ ପ୍ରଭୁ ଅବତାର ମଞ୍ଚେଣ ଆପଣେ। ୧୬।
ଦେଖିତ ସୁଲଭ ମନୁଷେଁ ଅଗୋଚର। ପରମବ୍ରହ୍ମ ରୂପ ଦିଶନ୍ତି ଶୋଭାକର। ୧୭।
ଅବତାର ଅଂଶେ ଅଶେଷ ରୂପ କାୟା। ଅବର୍ଣ୍ଣ ଅଜାତ ଅବିବେକ ମାୟା। ୧୮।
ଅନନ୍ତ କୋଟୀ ବ୍ରହ୍ମାଣ୍ଡେ ଯେକଇ ଈଶ୍ୱର। ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁତୀର। ୧୯।
ଦଣ୍ଡ ସିଂଘାସନ ଚାମର ଶ୍ୱେତ ଛତ୍ର। ରାଜାରାଜେଶ୍ୱର ନୃପତି ପବିତ୍ର। ୨୦।

ପାଟ ମହାଦେଈ ରୁକ୍ମିଣୀ ସତ୍ୟଭାମା । ମନ୍ତ୍ରୀଗଣ ସହିତରେ ଜ୍ୟେଷ୍ଠ ବଳରାମ । ୨୧ ।
ଭଗ୍ନୀ ସୋଭଦ୍ରା ଯେ ସମ୍ଭାଳଇ ଅର୍ଥ । ଭଣ୍ଡାରେ ପରିପୂର୍ଣ୍ଣ ବିବିଧ ପଦାର୍ଥ । ୨୨ ।
ବୟାଷ୍ଠା ପ୍ରାସାଦ ପାଷାଣ ନବର । ଧ୍ୱଂଜ ଚକ୍ରଚିହ୍ନ ଚିରାଳ ଫରହର । ୨୩ ।
ଆଗେ ଦ୍ୱାରପାଳ ବିନତାର ବଛ । ଦକ୍ଷିଣ ପାରୁଶେଣ କଳ୍ପବଟ ବୃକ୍ଷ । ୨୪ ।
ଲବଣ ମହାଜଳ ଗଡ଼ଖାଇ ଖଣା । ଲାଉକେଶ୍ୱର ଲିଙ୍ଗ ପଶ୍ଚିମକଣେ ଠଣା । ୨୫ ।
ପାଟଣାର ନାମ ଶ୍ରୀପୁରୁଷୋତ୍ତମ ପୁରୀ । ବ୍ରହ୍ମା ସିରିଜିଲା ତାହା ଶଙ୍ଖମତି କରି । ୨୬ ।
ମାରକଣ୍ଡେଶ୍ୱର ଲିଙ୍ଗ ନଗ୍ରକୁ ଦଣ୍ଡପାଟ । ଚାରିଦ୍ୱାରେ ବସଇ ମୁକତି ଚାରିହାଟ । ୨୭ ।
ସୁବର୍ଣ୍ଣମୟେ ପୁର ଦିଶଇ ଅତି ଶୋଭା । ଯହିଁ ନ ଭେଶୋଦଇ କଳିକାଳ ପ୍ରଭା । ୨୮ ।
ଦଶ ସହସ୍ରଘର ଅଷ୍ଟାଦଶ ଜାତି । ସବିହେଁ ଚତୁର୍ଭୁଜ ସ୍ୱର୍ଗକଇ ଦିଶନ୍ତି । ୨୯ ।
ଭାଳିଣ ଦେବତାଏ ପୁଛନ୍ତି ପିତାମହ । ଏଥିରେ ସଂଶୟେ ଦେବ ବିଚାରିଣ କହ । ୩୦ ।
ମର୍ତ୍ତ୍ୟଲୋକେ ଭ୍ରଥଖଣ୍ଡ ପୁର୍ବଦିଗ ଶେଷ । ଦକ୍ଷିଣ ମଉଦଧି ଉତ୍ତର ତଟ ଦେଶ । ୩୧ ।
ନୀଳଗିରି ପର୍ବତେ ବିଜୟେ ଚକ୍ରଧାରୀ । ଚର୍ମନୟନରେ ଦେଖିଣ ଲୋକେ ତରି । ୩୨ ।
ନଗ୍ରହିଁ ସୁସଞ୍ଚ ଅନେକ ଲୋକ ଅଛି । ସମସ୍ତେ ଦିଶନ୍ତି ପ୍ରତକ୍ଷେ ଶ୍ରୀବଛି । ୩୩ ।
ଶଙ୍ଖଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ । କିରୀଟୀ କୁଣ୍ଡଳ ପୀତବାସ ଦିବ୍ୟତେଜ । ୩୪ ।
ଏଥିରେ ମଧ କେ ଅଟଇ ଜଗନ୍ନାଥ । କେମନ୍ତେ ଜାଣିମୁ ଜଗତର ତାତ । ୩୫ ।
ହସିଣ ବ୍ରହ୍ମା ବୋଲନ୍ତି ଦେବେ ଶୁଣ । ପୁରୁଷୋତ୍ତମ ଲୋକେ ସମସ୍ତେ ନାରାୟଣ । ୩୬ ।
ଯେ ସେ ନିଦାବିଷ୍ଣୁ ପରମ ବ୍ରହ୍ମ ହରି । ଚର୍ମଲୋଚନେ ଦେଖିଲେ ଯାହା ତରି । ୩୭ ।
ସର୍ବଲୋକେ ଯହୁଁ ହୋଇଲେ ଚତୁର୍ଭୁଜ । ଆପଣାର କର ଛାଡ଼ିଲେ ଦେବରାଜ । ୩୮ ।
ଚରଣହିଁ ନ ଘେନିଲେ ଦେବଗଣ ହିତେ । ଗୁପତକଲେ ହରି ଶ୍ରବଣ ସହିତେ । ୩୯ ।
ଆଜହୁଁ ହେତୁ କରିଣ ଥିବ ଯେହା ଚିହ୍ନି । ଆନନ୍ଦ ହୋଇଲେ ଶୁଣି ସୁରସିଦ୍ଧ ମୁନି । ୪୦ ।
ବ୍ରହ୍ମା ସହିତେଣ ଅଇଲେ ଦେବେ ଦେଖି । ସୁଫଳ ହୋଇଲେ ଗୋବିନ୍ଦଙ୍କୁ ନିରେଖି । ୪୧ ।
ବାହୁ ଦୁଇ ଟେକିଣ ଯାଚନ୍ତି ଶରଣ । ଯେଉଁ ନାମ ଗୋଟି ଜଗତ ଉଦ୍ଧାରଣ । ୪୨ ।
ଦାସ ଜନକଇ ଦେଖିଲେ ହସନ୍ତି । ତେଣୁ ସେ ସୁରଙ୍ଗ ଅଧର ବିଘଂସନ୍ତି । ୪୩ ।
ଚକ୍ଷୁ ନିଇଳ କରିଣ ଦେବ ଚାହେଁ । ନିପୁଣ ମୋହୋର ଭଗତ ଦୁଃଖ ପାୟେ । ୪୪ ।
କଟି ପୀତବାସ ପିନ୍ଧନ୍ତି କାଛିକରି । ସେବକ ନିମିତ୍ତେଣ ଧାମନ୍ତି ଚକ୍ରଧାରୀ । ୪୫ ।
ଚାରିକତି ବହଇ ଚତୁଧାମ ନଦୀ । ଆରତ ଭଞ୍ଜନବାନା ଯାହାର ପ୍ରସିଦ୍ଧି । ୪୬ ।
କୁସୁମ ଚନ୍ଦନ ସୁଗନ୍ଧ ଝିନବାସ । ରତ୍ନ ଆଭରଣ ଭୋଗ ଯେ ବିଳାସ । ୪୭ ।
ଦେଖିଣ ଦେବତାୟେ ହୋଇଲେ ତ୍ରିପୁତି । ଜାଣିଲେ ବାସୁଦେବର ବାସନା ପ୍ରକୃତି । ୪୮ ।
ଦେବେଣ ଦୁର୍ଲ୍ଲଭ ମାନବେ ଅଗୋଚର । ଜୟ ଜୟମାଧେବ ତୁ ପରମ ନିରାକାର । ୪୯ ।
ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି । ସହସ୍ରେକର ସହସ୍ରେ ସୂର୍ଯ୍ୟ ଜ୍ୟୋତି । ୫୦ ।

ସହସ୍ରେକ ଶିର ସହସ୍ରେ ଲୋଚନ । ସହସ୍ରେ କୋଟି ଯୁଗ କଳାକ ବିମୋଚନ । ୫୧ ।
ସ୍ୱୟମ୍ଭୁ ମୁନି ସହସ୍ରେ ସୃଷ୍ଟି ଅନେତ୍ରିଦଶ । ଦ୍ୱାଦଶ ଆଙ୍ଗୁଳ ଯେ ବେଦାନ୍ତ ପୁରୁଷ । ୫୨ ।
ସତ ଶାନ୍ତ ସାତ୍ୱିକା ଅର୍ଚ୍ଚନା ଗୋସାଇଁ । ଭାବଗ୍ରାହୀ ନାଥ ତୁ ତୋ ତହୁଁ ଆନ ନାହିଁ । ୫୩ ।
ଅପାର ମହିମା ନାଥ ବିଚିତ୍ର ତୋର କେଳି । ଜାଣିତ ଭାଜନ ନାଥ ନୋହନ୍ତି ଦେବଶୂଳୀ । ୫୪ ।
ଦାସବତ୍ସଳ ନାଥ କରୁଣା ମୟେ ସିନ୍ଧୁ । ଧଉର୍ଯେଣ ମେରୁ ଦୁଃଖି ଜନ ବନ୍ଧୁ । ୫୫ ।
ସୁରଗଣକଇ ଶାଖା ଦତ୍ୟକୂଳ ସିନ୍ଧୁ । ନମୋ ନାରାୟେଣ ଗୋବିନ୍ଦ ଗୋପାଳ । ୫୬ ।
ନମୋ ଦାମୋଦର ଶ୍ରୀରଙ୍ଗ ମଧୁହାରୀ । ନମୋ ନମୋ ବିଷ୍ଣୁ ସାରଙ୍ଗ ଚକ୍ରଧାରୀ । ୫୭ ।
ନମୋ ଭଗବାନ ଜଗୁଜନ ଆତ୍ମା । ଉତପତି ପ୍ରଳୟେ ତୁ କରତା ମହାତ୍ମା । ୫୮ ।
ସୃଷ୍ଟି ସିର୍ଜନ୍ତା ଦୁଃଖ-ସୁଖ-ଦାନୀ । ଅବିକ୍ଷଣେ ଦାତା ପାପ-ପୁଣ୍ୟ-ଜ୍ଞାନୀ । ୫୯ ।
ଭାଇ ଭାରିଜା ଭୟେଣୀ ସହିତେ । ନୀଳଗିରି ବିଜୟେ ଜଗତଜନ ହିତେ । ୬୦ ।
ବିବିଧ ବନୋଦ ତୁ କରୁ କ୍ରୀଡ଼ାରସ । ତୀର୍ଥ ଯାତ୍ରା ନାନା ବିଧାନ ସରସ । ୬୧ ।
ପାଦାନ୍ତି ଗଜ ଅଶ୍ୱ ଦାସ ଦାସୀ ଜନ । ଅବିକାର ପାତନା ତୋ ନ ଜାଣନ୍ତି ଆନ । ୬୨ ।
ଯାହାକଇ ସୁଦୟା କରୁ ବ୍ରହ୍ମରାଶି । ସେ ତୋହର ଚରଣେ ଶରଣ ପଶି ଆସି । ୬୩ ।
ଇହଲୋକେଣ ଭକ୍ତି ଅନ୍ତେଣ ସ୍ୱର୍ଗଯାଇ । ଦେବଙ୍କର ତୁଲେ ଯୁଗେ ଯୁଗେ ଥାଇ । ୬୪ ।
ତୁ ସେ ନାରାୟେଣ ଶରଣ ରଖନ୍ତା । କୀଟୁଁ ବ୍ରହ୍ମ ସବୁହିଁ ଯେକଇ ଦେଖନ୍ତା । ୬୫ ।
ଧନୀ ନିର୍ଦ୍ଧନୀ ଧବଳ ବଳ ନାହିଁ । ତୋହୋର ଆଗେ ସ୍ୱାମୀ ଜପମନ୍ତ୍ର କାହିଁ । ୬୬
ବେଦ ପୁରାଣେ ତୁ ଅଟୁ ଆଦପତି । ତୋହୋର ଆଗେ କିସ ଯୋଗର ଯୁଗତି । ୬୭ ।
ବ୍ରହ୍ମା ତରନ୍ତ ହୋଇବ ଯାହାର ଆଗେ । ରୁଦ୍ର ସମ ନୋହିଲା ଯାହାକୁ ସଂଯୋଗେ । ୬୮ ।
ସର୍ବଦେବ ନିସ୍ତାରଣ ସର୍ବଜୀବ ଅନ୍ତର୍ଯ୍ୟାମୀ । ବନ୍ଦଇ ଦାମୋଦର ପରମ ବ୍ରହ୍ମସ୍ୱାମୀ । ୬୯ ।
ମୁହିଁ ତୋହୋର ଶରଣ ପଶିଲି ଜଗନ୍ନାଥ । ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର ହସ୍ତ । ୭୦ ।
ତୁ ଦେବ ଉଦ୍ଧାର ବୋଲିଣ ଭଜିଲି । ଭୟେ ନ କରିଣ ତୋହୋରେ ଶରଣ ପଶିଲି । ୭୧ ।
ଶାହାସ୍ତ୍ର ଆଗମ ମୁଁ ଶୁଣିଲି ବିପ୍ର ମୁଖେ । ତୋତେ ସେବା ସ୍ୱାମୀ କରିଥିବି ମହାସୁଖେ । ୭୨ ।
ତୋହୋର ଆଜ୍ଞାରେ ସୁରଗଣ ବନ୍ଦୀ । ତୋତେ ଦୋଷ କରି ଅସୁରେ ଯାନ୍ତି ଜଳି । ୭୩ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଚଉଦ ଭୁବନ । ତୋତେ ଆଶ୍ରେ କରିଛନ୍ତି ସର୍ବଜନ ।୭୪ ।
ଯେ ତୋହୋର ଦୟା ଅଛଇ ଦେବପାଇଁ । ବ୍ରହ୍ମାଣ୍ଡ ଭିତରେ ତାକୁ ସରିସମ ନାହିଁ ।୭୫।
ଜୟତୁ ଶ୍ରୀବତ୍ସ ଲାଞ୍ଛନ ମୁରାରି । କଉସ୍ତୁଭମଣି ମଣ୍ଡିତ ଦଇତାରି ।୭୬।
ପୁରାଣ ପୁରୁଷ ତୁ କମଳପତ୍ରାକ୍ଷ । ପ୍ରସନ୍ନ ହୁଅ ମୋତେ ପ୍ରମଗ୍ୟାନ ଦକ୍ଷ ।୭୭।
ବଳରାମ ଦାସ ସେବକ ଅଟଇ ତୋହୋର । ତୁ ଦେବ ହୃଦରେ ବସସି ମୋହର ।୭୮।
ଶ୍ରୀରାମ ରୂପ ଜାନକୀପତିମୂର୍ତ୍ତି । ସପ୍ତମ ଅବତାର ହୋଇଲେ ଶ୍ରୀପତି । ୭୯ ।
ରାବଣ ଦର୍ପ ଧ୍ୱଂସିଲେ ଯେବଣ ରୂପେ । ତାହା ମୁଁ ବିଚାର କରଇ ରଚିବଇଁ ଗୀତେ ।୮୦।

ଯେ ଜନ୍ମ ମୋହର ସାର୍ଥକ କରିବି ତୋତେ ସେବି । ଯାହା ସେ ବଖାଣ କଲା ବାଲ୍ମୀକ
ମହାକବି । ୮୧ ।
ତାହା ମୁଁ ସୁମରିଣ ଧ୍ୱଂସିବି ପାପରାଶି । କରସି କରୁଣା ମୋତେ ନୀଳଗିରିବାସୀ ।୮୨ ।
ଶୁଣିଣ ପ୍ରସନ୍ନ ଯେ ମୋତେ ହୋଇଲେ ଜଗନ୍ନାଥ । ହୃଦେ ପ୍ରକାଶ ଶଙ୍ଖଚକ୍ର ହସ୍ତ । ୮୩ ।
ସ୍ୱାମୀର ଆଜ୍ଞା ପ୍ରମାଣେ ଶିରେ ଧରି । ଗ୍ରନ୍ଥ ବଖାଣିମି ବୋଲି ମନରେ ବାଞ୍ଛାକରି । ୮୪ ।
ଶୁଣିମା ସୁଜ୍ଞ ଜନେ ଶ୍ରୀରାମର ମହିମା । ସଦାଶିବ ଆଗେ ଯାହା ପଚାରିଲେ ଉମା । ୮୫ ।
ପ୍ରସନ୍ନ ଚିତ୍ତ ହୋଇଣ କହନ୍ତି ଶୂଳପାଣି । ମୁହିଁ ତାହା ପଣ୍ଡିତ ମୁଖୁଁ ଅଛି ଶୁଣି । ୮୬ ।
ନୀଳସୁନ୍ଦର ଗିରି ଜଗନ୍ନାଥ ପ୍ରସନେ । କହିବି ରାମାୟଣେ ଅମୃତ ବଚନେ । ୮୭ ।
କପିଳାସ କନ୍ଦରେ ଅଛନ୍ତି ବିଶ୍ୱନାଥ । ଯେସନ ସମୟେ ଯାଇ ମିଳିଲେ ଚଉମାଥ । ୮୮ ।
ଦେଖିଣ କୃତ କୃତ ହୋଇଲେ ତ୍ରିପୁରାରି । ଉଠିଣ ବିଧାତାକୁ କୋଳାଗ୍ରତ କରି । ୮୯ ।
ପୀରତି କରିଣ ବସାଇଲେ ନେଇ । ବ୍ରହ୍ମାଙ୍କୁ ଦେଖିଣ ଆନନ୍ଦ ଉମାସାଇଁ । ୯୦ ।
ଏକ ଆରକେଣ ପୁଚ୍ଛନ୍ତି କୁଶଳ । ସୃଷ୍ଟିର କଥା ବ୍ରହ୍ମା କହିଲେ ସକଳ । ୯୧ ।
ସଦାଶିବ ବୋଲନ୍ତି ଶୁଣିମା ପିତାମହ । ବଳ ଖିନ୍ନ ଭଗ୍ନ ହୋଇଲା ମୋର ଦେହ । ୯୨ ।
ପାର୍ବତୀ ବିକଳ ବହୁତ ମୋତେ ଦେଖି । କେବଣ କାରଣ ଯେ ବୃଝ ଅଷ୍ଟ ଆଖି । ୯୩ ।
ବ୍ରହ୍ମା ବୋଇଲେ ଦେବ ଅଛଇ ମୁହିଁ ଜାଣି । ତେଣୁ ମୁଁ ଅଇଲି ଶୁଣ ଶୂଳପାଣି । ୯୪ ।
ଧର୍ମ ନ ଥାପି ମହାଯଜ୍ଞ ଭାଙ୍ଗିଲୁ । ଦକ୍ଷ ପ୍ରଜାପତିକି ଅନେକ ଗଞ୍ଜିଲୁ । ୯୫ ।
ସେ ଦୋଷରେ ତୋହର ଶରୀର ସୁସ୍ଥ ନାହିଁ । ତୁ ମହୀ ସିଜା ତିଆଇଁ ଅଛୁ ଉମାସାଇଁ । ୯୬ ।
ପାପ ପୁଣ୍ୟ ବୋଲି ଦୁଇ ପନ୍ଥ କଲୁ । ପୁନ୍ୟେଣ ପାପେ ଦଗଧି ହୋଇଲୁ । ୯୭ ।
ଯାଗ ଯଜ୍ଞ ଜପ ଦାନ ଧର୍ମ । ଯେହା ଝିଙ୍ଗାସନ୍ତେ ପାଇ ପାପକର୍ମ । ୯୮ ।
ଅହନ୍ତା ଘେନିଣ ଯେ ବିଚାର ନକଲୁ । ତେଡ଼େ ମହାଧର୍ମ ହେଲେ ଝିଙ୍ଗାସିଲୁ । ୯୯ ।
ତହିଁର ପାପେଣ ବଢ଼ିଲା ତୋତେ ରୋଗ । ଶରୀର ଅସୁସ୍ଥେଣ ଅସାଧନ ଯୋଗ । ୧୦୦ ।
ଯେବେ ସଦାଶିବ ମୋହୋର ବୋଲକର । ତାରେକ-ବ୍ରହ୍ମ ରାମନାମ ଉଚ୍ଚାର । ୧୦୧ ।
ଯେ ସେ ପ୍ରମବ୍ରହ୍ମ ସଂସାରୁ ପଣେ ତରି । ରାମନାମ ସୁମରଣା କର ତ୍ରିପୁରାରି । ୧୦୨ ।
ବିଶ୍ୱାମିତ୍ର ମୁନି ଅନୁଷ୍ଟୁପ ଛନ୍ଦ । ଯେ ସେ ରାମନାମ ହୃଦୟରେ ବନ୍ଦ । ୧୦୩ ।
ହେଉ ପରାପତ ତୋତେ କଳପ ପଦାର୍ଥ । କଳୁଷ ବିସର୍ଜିଣ ହୁଅତୁ ସୁଆର୍ଥ । ୧୦୪ ।
ଯେତେ ବୋଲି ବ୍ରହ୍ମା ଚତୁର୍ବେଦ ଘୋଷି । ରୁଦ୍ରକଇ ଆଶିଷ କହିଲେକ ମନୋ ତୋଷି । ୧୦୫ ।
କୃତ ଆଞ୍ଜୋଳି ହୋଇଣ ସଦାଶିବ । ବୋଲନ୍ତି ତୁମ୍ଭେ ଶୁଣ ହୋ ଦେବଙ୍କର ଦେବ ॥ ୧୦୬ ॥
ଅନେକ ସ୍ତୁତି ଯେ କଲା ଶୂଳପାଣି । ତୁ ସେ ପିତାମହ ମୋହୋର ମନଜାଣି । ୧୦୭ ।
ଆଜ୍ଞୁ ରାମନାମ ଜପିବି ଅନୁବ୍ରତେ । ତୋହୋର ପ୍ରସନ୍ନେ ମୋତେ ହଉ ପରାପତେ । ୧୦୮ ॥
ଏଥୁ ଅନନ୍ତରେ ଗଲାକ କୁଶପାଣି । ସଦାଶିବ ହରଷେ ଭଣଇ ରାମବାଣୀ । ୧୦୯ ॥

ନିତି ନିତ୍ୟକର୍ମ ସାରିଣ ଶଙ୍କର । ଜପଇ ରାମନାମ ବେନି ଯେ ଅକ୍ଷର । ୧୧୦ ।
ଦିନୁ ଦିନୁ ଶରୀର ହୋଇଲାକ ସୁସ୍ଥ । ପରମ ସନ୍ତୋଷ ହୋଇଲେ ଶୂଳହସ୍ତ ।। ୧୧୧ ।।
କ୍ଷଣେହେଁ ନଛାଡ଼ନ୍ତି ଶୀରାମର ନାମ । ହୃଦପଦ୍ମ ମଧ୍ୟେ କଲାକ ବିଶ୍ରାମ । ୧୧୨ ।।
ଯେସନେକ କେତେ କାଳ ଯହୁଁ ଗଲା । ହେମବନ୍ତର ନନ୍ଦିନୀ ତାହା ସେ ଜାଣିଲା ।। ୧୧୩ ।।
ଦିନେକ ସଦାଶିବ ଜପିବାର ବେଳେ । ପାର୍ବତୀ ନମଇଁ ଈଶ୍ୱର ପାଦତଳେ । ୧୧୪ ।
ଭୋ ଦେବ ଈଶ୍ୱର କେବଣ ଜପୁ ଜପୁ । ମୋତେ ହେ ମାୟା ଯେ ଅଛି ତୋର ବପୁ ।। ୧୧୫ ।
ମୁଁ ତୋହୋର ଚରଣେ ସର୍ବଦା ଅଟଇ ଦାସୀ । କର ଅନୁଗ୍ରହ ମୋତେ କପିଳାସବାସୀ । ୧୧୬ ।
ଯେତେକ ବୋଲି ଦେବୀ ନମଇଁ ପୁଣପୁଣି । ହସନ୍ତି ସଦାଶିବ ବଦନ୍ତି ପ୍ରିୟବାଣୀ । ୧୧୮ ।
ଉଠ ଉଠ ସଖୀ ଗୋ ମୋହୋର ପ୍ରାଣେଶ୍ୱରୀ । ତୋତେ କି ଗୁପତ ଯେ ଅଛଇଁ ମୋହୋରି । ୧୧୯ ।
ଆପଣେ ପ୍ରଭୁ ଯେ ତୋଳିଲେ ଦେବଶୂଳୀ । ଜାନୁରେ ବସାଇ କହନ୍ତି ରାମକେଳି । ୧୨୦ ।
ଶୁଣ ଶଶୀମୁଖୀ ଗୋ କହଇ ମୁହିଁ ତୋତେ । ପିତାମହ ଗୁପତେ ଯାହା କହିଗଲେ ମୋତେ । ୧୨୧ ।
ବିଷ୍ଣୁର ଯେକନାମ ସର୍ବଦେବ ସରି । ସହସ୍ରେକ ନାମ ଯେ ଉଚ୍ଚାରଣ କରି । ୧୨୨ ।
ଯେ ଯେତେକ ଫଳ ହୋୟେ ସ୍ମରନ୍ତେ । ଯେଥୁ ଅଧିକ ହୋଇବ ରାମନାମ ଜପନ୍ତେ । ୧୨୩ ।

---

(୧) K.C. Sahoo, Literature & Social life in medieval Orissa, p. p. 19-36.
(୨) ମନୁ ସ୍ମୃତି ୧-୨୧
(୩) ମହାଭାରତ, ୧,୧,୨୦୪ (ପୁନା ସଂସ୍କରଣ, ସ ୧୯୩୩)
(୪) ଭାଗବତ, (୧,୪,୨୮), (ଗୋରଖପୁର)
(୫) ଶ୍ରୀମଦ୍ ବାଲ୍ମୀକି ରାମାୟଣମ୍ (ମାନ୍ଦ୍ରାଜ) ରାମାୟଣ ଉପକ୍ରମ ।
୬ । Rev, C. Bulcle, The genesis of the Valmiki Ramayana Recensions. J.O. 1, Vol. V. No. 1, Sept, 1955, pp. 66-94.
(୭) K.C. Saho, Balaram Das and the various recensions of the Valmiki Ramayana, J.H.R. Vol. IV No. 2 Jan 1962 pp. 45-51.
୧ - (ଖ) ଶ୍ରୀଜଗନ୍ନାଥ ଯେ କମଳା ଦେବୀ - ପତି । ନୀଳଗିରିରେ ବିଜୟେ ଅପୂର୍ବ ମୂରତି ।।
(ଗ)(ଘ) କମଳା ଦେବୀ ପତି । ନୀଳଗିରି ପର୍ବତେ ବିଜୟେ ଦିବ୍ୟମୂର୍ତ୍ତି ।।
(ଙ) ନାରାୟଣ କମଳା ଦେବୀ ପତି । ନୀଳଗିରି ଶିଖରେ ଅପୂର୍ବ ମୂରତି ।।
୨ - ଆଭା (ଗ) (ଘ)ରେ ଶୋଭା (ଚ) ରେ ପ୍ରଭା, (ଗ) (ଘ) ଶରଦ ଶଶୀ

ଯେହ୍ନେ କଳାମେଘେ ଆଭା, (ଡ) କି ଜାଣି ପଟାନ୍ତର ଶରଦ ଶଶୀ ଶୋଭା ।

(୩) (ଖ) ଜ - ଜନ୍ତୁ, ହୃଦରେ, (କ) ଅଛୟେ, (ଚ) ଅଛଇ - ଯେବଣ

(ଖ) ପ୍ରଭୁ - ଦେବ ।

(୪) (କ) ସକଳ ସୁରଗଣ ଦେବ ନିସ୍ତାରଣ ସାହା (ଖ) ଦେବତା, ସୁରଗଣଙ୍କୁ; (ଖ) ଶୁଧି ସୁବର୍ଣ୍ଣର (ଘ) ଶୋଭେ, (ଚ) ଶୋଭିତ ଚଉବାହା ।

୫ - (କ) ପବିତ୍ର ଝିନବସନ ପରିହରି, (ଚ) ପରିଧାନ ।

୬ - ସୁବଳିତ ସୁନ୍ଦର ଶୋଭିତ ନେତ୍ର ଗୋଟା ।
ଶ୍ରୀ ହରିର ଶ୍ରୀଅଙ୍ଗେ କାଛେଣି ଚାରୁଛଟା ।
(ଗ) ଶୋଭା ଅତିସୁନ୍ଦରୀ ଶୋଭିତ ସେତ ପଟା ।
ଶ୍ରୀ ହରିର ଶ୍ରୀଅଙ୍ଗେ କାଛେଣି ଚାରୁଛଟା ।
(ଚ) ଶୁଭ୍ର ମନୋହର ଯେ ନେତ୍ର ବେନି ଗୋଟି ।
ଶ୍ରୀ ହରି ଅଙ୍ଗରେ କାଛେଣି ଝଟକନ୍ତି ।

୭ - (ଖ) ନାନା ମଣି ଛନେ ଛନ ।

୮ - (ଖ) ଚନ୍ଦ୍ରମା ଉଦିତା, (ଗ) (ଘ) ମଣ୍ଡଳେ କି - ଗଗନେ ଉଦୟେ ଯେହ୍ନେ, (ଚ) ଚତୁତମ ଚିତା, (ଚ) ଜଗତ ଜନ ହିତେ ବିଜେ ଜଗୁଜିତା ।

୯ - (କ) ଅଳଙ୍କାର ମୁରତି ଯେ ମୁତାର ଝରା, (ଖ) ଅଳକାପନ୍ତି ଗଜ, (ଡ) ଗଜମୋତି ହୀରା, (ଚ) ସାନ୍ନିଧେ-ପାରୁଣେ, (ଚ) ଉଦୟେ - ଶୋହଇ ।

୧୦- (କ) (ଡ) ଚାରୁଲତା, (ଖ) ସୁସଞ୍ଚ ଛୋପ, (ଖ) ହୃଦର ପଦେକ ଉରେ ।

୧୧- ସୁସଞ୍ଚ, ସଞ୍ଚ-ଚାରୁ (ଗ) (ଘ) ସୁଦୀର୍ଘ ଅଧରେ ସୁରଙ୍ଗ (ଚ) ଜଳଧାରା ଘେନି କି ବିଜୁଳିର ଶିଖା ।

୧୨- (ଖ) ଯେ ଜଗତ୍ର ଶ୍ରୀଜିଛି, (ଗ) ଆପଣେ ଆପଣେ ସେ ଘଟଣ ।

୧୩- ବଣଜଲା ହୁଅନ୍ତି ଯାହାର ମୁଖ ।

୧୫- (କ) ରତ୍ନ ପଇଙ୍କରେ (ଖ) ଚନ୍ଦା ଉପରେ ହଂସୁଲି, (ଗ) (ଗ) ବଡ଼ିମା ଗୁଣ, (କ) ଯାହା ଚିନ୍ତନ୍ତି ନିତ୍ୟେ ।

୧୬- (ଖ) ଯାକୁ ଚିନ୍ତନ୍ତି ଅନୁଧ୍ୟାନେ, (ଡ) ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ବନ୍ଦନ୍ତି (ଚ) ବ୍ରହ୍ମା ଇନ୍ଦ୍ର ଯାକୁ; (କ) ମଞ୍ଚ ଦିବ୍ୟସ୍ଥାନେ, (ଖ) ହୋୟେ ମଞ୍ଚ ଭୁବନେ ।

୧୭- (ଖ) (ଚ) ଦେଖିତେ ଶୋଭା ବଡ଼ ନୟନେ ଅଗୋଚର, (କ) ପରଂବ୍ରହ୍ମ ସ୍ୱରୂପ ଦିଶି ଯେକାକାର ।

୧୮- (ଖ) ଅବୟରୂପ ସ୍ୱରୂପ ଯା'ର କାୟ ।

୧୯- (ଖ) ସ୍ୱଇଚ୍ଛେ ବିଜେ ପ୍ରଭୁ, (ଚ) ଅନନ୍ତ - ଅଖିଳ, ସାକ୍ଷାତେ = ସ୍ୱଦେହେ ।

୨୦- (ଖ) ରକ୍ସଣି; (ଗ) ମନ୍ତ୍ରୀବର ଜ୍ୟେଷ୍ଠ ଭାଇ ବଳଦେବ ସୀମା । (କ) ଆବର ଅଛନ୍ତି ଅନେକ ଯେ ବାମା, (ଚ) ବଳରାମ ଜ୍ୟେଷ୍ଠ ଭ୍ରାଥ ଆବର ନାମ ।
୨୨- ଦୁଗା ସୁଭଦ୍ରା ସମ୍ଭାଳେ ଅର୍ଥବିତ୍ତ । (ଚ) ସମ୍ଭାଳନ୍ତି; (ଖ) ଅର୍ଥଚରଚା କରେଇ ବିବିଧ ପଦାର୍ଥ ।
୨୩- (କ) ଚନ୍ଦ୍ରସମ ପ୍ରାସାଦ; (ଖ) ବିଜୟେ ସମପାଦ, (ଘ) ବାସାନାର ପ୍ରାସାଦ, (ଘ) ବୟାସ୍ଥାମ, (ଙ) ଧ୍ୱଜ = ରଥେ ।
୨୪- (କ) ଆବର = ଆଗେ, ଆପଣେ, (କ) ଦଖିଣି ପାରୁଶେ କଳପ ଯେ ବୃକ୍ଷ । (ଖ) ପାରୁସରେ (ଘ) କଛ ନାମେ (ଙ) କଛବଟ ଅଛି ।
୨୫- (କ) ଖାଇ = ଖାଲ, (ପଡ଼ଇ କଳଣା, (ଗ) (ଘ) ମହାସିନ୍ଧୁ (ଙ) ମହାସିନ୍ଧୁ ଗଡ଼ କଡି; (ଖ) ଦକ୍ଷିଣରେ, (ଗ) (ଘ) ପଶ୍ଚିମ କଇ (ଙ) ଦ୍ୱାରେ ।
୨୬- (କ) ବ୍ରହ୍ମା ସଞ୍ଚିଲେ ଯାହା (ଖ) ତାହା ଶଙ୍ଖ ଚକ୍ର କରି (ଙ) ସ୍ରିଜିଲା ଯାହା ଅତି ଯତ୍ନକରି ।
୨୭- (ଗ) (ଘ) ଘାଟ (ଖ) ଚାରିକତି ବସଇ ମୁକତିର ହାଟ ।
୨୮- (ଖ) ପୁର କିରଣ ଦିଶେ (ଚ) ଦିବ୍ୟ ଶୋଭା, (ଙ) ବସଇ କାଳଦଣ୍ଡ ପ୍ରଭା ।
୨୯- (ଗ) (ଗ) ପୁର ବସଇ (ଚ) ଅଷ୍ଟାଦଶ ପାଟକେ, (ଗ) (ଘ) ସ୍ୱର୍ଗକଇ = ବିଦ୍ୟାଧର ପ୍ରାୟେ (ଙ) ଦୃଶ୍ୟକୁ ।
୩୦- [କ] ସନ୍ଦେହ (ଖ) ସନ୍ଦେଶ ଆମକୁ ଦେବ କହ (ଙ) ଚରିତ୍ର ।
୩୧- [କ] (ଖ) (ଗ) (ଘ) (ଙ) ମୃତ୍ୟୁ, (ଗ)] (ଘ) ଜମ୍ବୁଦ୍ୱୀପେ ଗୋବିନ୍ଦ ଭିନ୍ନ ଖଣ୍ଡେ, (ଖ) ଯେ ଅଭିନ୍ନ ମଣ୍ଡଳେ; (ଗ) (ଘ) ଲବଣ ସିନ୍ଧୁ, (କ) ସିନ୍ଧୁ ଜଳ ଲବଣ ମହା, (ଖ) ଠାବେ ଯେବେଣ ଯେ କୁରୀ ନୀଳ ପର୍ବତରେ ।
୩୩- ସବିହେଁ ।
୩୪- (ଖ) ଶୋଭିତ, (ଗ) (ଘ) ଚକ୍ର ଚିହ୍ନେ ଗଦା ଶୋହେ, (ଚ) ଶୋଭିତି ଚାରିଭୁଜ; ପୀତବସନ (ଖ) ପୀତାମ୍ବର ବାସ ।
୩୬- (କ) ସମସ୍ତେ = ପ୍ରତକ୍ଷେ, (ଖ) ସବିହେଂ ।
୩୭- (ଚ) ଆଦିବିଷ୍ଣୁ; (ଗ) (ଘ) ଘୋର ତାପୁଂ (କ) ଯାହା = ଯାଇ, (ଖ) ନୟନେ ।
୩୯- (ଚ) ଜଗତଜନ, ନ ବହିଲେ ।
୪୨- (ଖ) ତେଣେ ସେ ନାମ ଅଟଇ, (ଗ) (ଘ) ଯେବଣ ସେ ନାମ ଜଗତ ମୋହନ, (ଙ) ବେନିଭୁଜ, ତେବେ ସେ ନାମ ତାଙ୍କ ଜଗତ ନିସ୍ତାରଣ ।

୪୩- (ଘ) ବିକାଶନ୍ତି, (ଚ) ପ୍ରଭୁ ଶରଣ ଯାଚନ୍ତି । ତେବେ ସେ ଉର୍ଦ୍ଧ୍ୱ ବାହୁ ନିରତେ ହୋଇଥାନ୍ତି ।

୪୫- (କ) ଯତ୍ନ, (ଗ) ଗୋଟି (ଙ) ପିନ୍ଧିଛନ୍ତି ଟାଣି । ତଥିର ଉପରେ ଯେ ରତ୍ନ ଉଡ଼ିଆଣି । ଅଧିକା ପଦ (ଙ) ରିପୁବଳ ଛାଗେ ଦହଇ ଗିରିଧାରୀ । ସେବକର ଛଳେ ସେ କରେଣ ଚକ୍ରଧାରୀ ।

୪୬- (କ) ଚାରିପାଖେ ବହଇ ଚତୁଇ ହେମ ନଦୀ । (ଖ) ଚତୁଧର୍ମ ନିଧି । (ଙ) ଚତୁର ଚାରି ଶୁଦ୍ଧ ନଦୀ । (ଚ) ଆରତ ଭଞ୍ଜନ ନାଥ ପରମ ଗ୍ୟାନ ସିଧି ।

୪୭- (କ) ଭୋଗେଣ, (ଖ) ଭୋଗ ... = ପ୍ରଭୁ କମଳାବିଳାସ ।

୪୯- (କ) ମାନୁସ୍ୟେ ପ୍ରକାଶ, ପରମ ପୁରୁଷ, (ଖ) ମନିସେ, (ଚ) ମାନୁସେ ।

୫୦- (ଖ) ସହସ୍ର = ଅନନ୍ତ; (କ) ସହସ୍ରେକ ପରଂବ୍ରହ୍ମ ସହସ୍ରେକ ମୂର୍ତ୍ତି । (ଖ) ସହସ୍ର ପ୍ରଳୟେ ତୁ ସହସ୍ର ନାମ ଶ୍ରୁତି ।

୫୧- (ଖ) ଯାଗ କଳାକ ବିମୋଚନ (ଗ) ସହସ୍ରେ କୋଟୀ ଯୁଗର କଲା ବିମୋଚନ । (ଚ) ଭଗତ କରେ ଧାନ ।

୫୨- (ଖ) ସହସ୍ରେ ସହସ୍ରେ ଶ୍ରୁତି ପୀତାବାସ । ଦଶଦୋଷ ଅପ୍ରାଧ କ୍ଷେମାଶୀଳ ପୁରୁଷ, (ଗ) ସମ୍ପୋ ଶୂନ୍ୟ ସର୍ବ ସୃଷ୍ଟି ଅଟେତିଶ । ଦଶ ଆଙ୍ଗୁଳ ଯେ ବେଦୀତ୍ରିୟ (ଘ- ବେଦ୍ଧ୍ୟକ୍ରିଅ) ପୁରୁଷ ।

୫୩- (ଖ) ସତ୍ୟକୁ ସାଗର, (କ) ଅପୂନ୍ୟା ଗୋସାଇଁ । (ଗ) ଶତ୍ରୁ ସ୍ୟାତୁ ସାସ୍ତ୍ର ଯା'ର ଅଟ ତୁନା ଗୋସାଇଁ ।

୫୪- (କ) ବିଚିତ୍ର=ବିହିତ, (ଖ) ବ୍ରହ୍ମା ଶୂଳୀ ।

୫୭- (କ) (ଖ) ନାରାୟଣ, (ଗ) (ଘ) ଶ୍ରୀରଙ୍ଗ=ସ୍ୱର୍ଗ ।

୫୮- (ଖ) ତୁ ଲୋପ, କରନ୍ତା ମହାତମା । (ଗ) (ଘ) ନାହିଁ ।

୫୯- (ଗ) (ଘ) ସିର୍ଜନ୍ତି । (ଚ) ଦାତା= ପ୍ରଭୁ ତୁ ।

୬୦- (ଖ) ଯେ ଭଗ୍ତିକି, (କ) ଜଗତର ହିତେ, (ଗ) (ଘ) ଜଗୁଜନ ।

୬୧- (କ) ନାନାବିଧ ସରସ, (ଖ) ଯାଗ ନାନା ବିଧାନ ଯେ ରସ, (ଗ) (ଘ) ସ୍ୱରସ ।

୬୨- (ଖ) ପାଟଗଣ ପାଟ ଦାସୀଗଣ, (ଗ) (ଘ) ପାଟକ୍ଷତ୍ର (କ) ପାଟଗଣ, (ଖ) ପାନୋଢ଼ ପାଟଣା (କ) ରେ ୬୨ ରୁ ୭୫ ପଦ ନାହିଁ ।

୬୪- (ଖ) ମୁକତି ।

୬୬- (ଗ) ମନ୍ତ୍ର=ଯନ୍ତ୍ର ।

୬୭- (ଖ) ତୋହୋର ଆଗରେ ନାହିଁନା ଯୁଗତି ।

୬୮- (ଖ) ତୁହିଂ ସମାନ ନୋହିବ ନା ଯୋଗେ।

୬୯- (ଗ) (ଘ) ନିସ୍ତାର, (ଖ) ଜୀବ ନାହିଁ।

୭୧- (ଙ) ତୁ ନାଥ ଉଦ୍ଧାରଣ।

୭୨- (ଖ) ଆଗମ ମୁଁ - ସଂଯୋଗ; ସ୍ୱାମୀ ସେବା କରିଥିବି ନିତ୍ୟେ।
(ଘ) ମନସୁଖେ।

୭୬- (ଖ) ମଣ୍ଡିତ=ଭୂଷିତ।

୭୭- (ଖ) ପୁରୁଷୋତ୍ତମ କମଳା ପ୍ରତକ୍ଷ, (ଗ) (ଘ) କମଳ ପତ୍ରାକ୍ଷ।

୭୯- (କ) ଶ୍ରୀରାମରୂପ ତୁମ୍ଭେ ଜାନକୀର ପତି। (ଖ) ସପତମ ଅବତାର।

୮୦- (ଙ) ମୁଁ ତାହା ବିଚାରି ରଚିବଇଁ ଗୀତେ।

୮୧- (ଗ) (ଘ) ମୋହର ନାହିଁ।

୮୨- (କ) (ଖ) ସୁମରି।

୮୩- (କ) (ଖ) ପ୍ରକାଶ = ପ୍ରସନ୍ନ।

୮୪- (ଖ) ପ୍ରମାଣ, (ଘ) ହୃଦେ ଧରି। (ଗ) ପ୍ରସ୍ତାବ ବଖାଣିମି ଚିତ୍ତରେ ବିଚାରି।

୮୫- (କ) (ଖ) ଅଗ୍ରତେ, (ଚ) ଯାହା ବଖାଣିଲେ ବ୍ରହ୍ମା।

୮୬- (ଚ) ତ୍ରିପୁରାରି। ତୁ ଯାହା ପଚାରିଲୁ ହୃଦରେ ବିଚାରି।

୮୯- (କ) (ଘ) ଦେଖି।

୯୦- (କ) ପ୍ରୀତି କଥା କହି, (ଗ) (ଘ) ଆନନ୍ଦ = ଉତ୍ତର।

୯୧- କୁଣ୍ଢିଆ କୁଣ୍ଢି ହୋଇ ବୋଲନ୍ତି ଦେବ ଶୂଳ। (ଗ) (ଘ) ବ୍ରହ୍ମା କହିଲେ ଯେ ସକଳ କୁଶଳ।

୯୩- (କ) କାରଣ = ପ୍ରକାର (ଖ) ଆକାର।

୯୬- (ଗ) (ଘ) ବ୍ରହ୍ମା ବୋଇଲେ ଦେବ ଯେ ନିର୍ଭାଇ ଅଛି ଉମାସାଇଁ।

୯୭- (ଖ) ବୋଲି = ସେଇ, ଶୂନ୍ୟେଣ ଧର୍ମ ପାପେଣ ଦୁଃଖ ଦେଲୁ।

୯୮- (ଖ) ଯାଗ ଯଗ୍ୟଂ ପବିତ୍ର ଅଟନ୍ତି ଏ ଧର୍ମ, ଏହା ନ ଘୋଷିଲେ ପାଇବୁ ଦୁଃଖ କର୍ମ।

୧୦୦-(ଖ) ଅସୁଙ୍ଖେ ଅସାଧ ହୋଏ ଯୋଗ; (ଚ) ପୋଥିରେ ୯୭ରୁ ୧୦୦ ପଦ ନାହିଁ।

୧୦୧-(କ) ରାମ ନାହିଁ। (ଖ) ରାମ = ମନ୍ତ୍ର ଯେ।

୧୦୨-(କ) ପରମ, (ଗ) (ଘ) ବ୍ରହ୍ମଜ୍ଞାନ।

୧୦୩-(ଖ) ବିଷ୍ଣୁ ବାକ୍ୟ ମୁକ୍ଷ ଅଷ୍ଟୋକ ଯେ ଛନ୍ଦ, ହୃଦରେଣ, (ଗ) (ଘ) ହୃଦଯେ ଗୋବିନ୍ଦ (ଗୋବିନ୍ଦ?)।

୧୦୪-(ଖ) କଳପ = ପରମ, (କ) କଲ୍ମଷ ବିସର୍ଜନପରେ ସୁଖ ତନୁ ଅର୍ଥ। (ଖ) କିଳସ (ଗ) କୁସଳ ସର୍ବ ଜନ୍ତୁ ନକର ସୁଆର୍ଥ।

୧୦୫-(ଖ) ରୁଦ୍ରଙ୍କୁ ଆଶିଷ ଦେଲେ ପରମେଷ୍ଠି, (ଗ) ରୁଦ୍ରକଇ ଏହା କହିଲେ କମଳାଖି।

(ଘ) ରୁଦ୍ରକଇ ଏହା କହିଲେ କମଳାଖି, ଓଡ଼ିଆ ଭାଷାତତ୍ତ୍ୱ, ପୃ ୨୬୪, ରୁଦ୍ରକଇ ତାହା କହିଲେ କୋମଳ-କେଶୀ (ପାଠ ଅସ୍ପଷ୍ଟ)।

୧୦୬-(ଖ) ବ୍ରହ୍ମାର କଇଲାଣ ଶିରରେ ଧରିବ।

୧୧୨-(ଖ) ଆନନ୍ଦ, (ଗ) (ଘ) ମନେ ମନେ ସୁଛ।

୧୧୩-(ଗ) କଣ୍ଡ।

୧୧୬-(ଖ) ମୋତେ କି ଦୟା ଯେ ଅଛଇଁ ତୋର ବପୁ।

୧୧୮-(କ) ବଦନ୍ତି = ବୋଲନ୍ତି, (ଖ) ନାହିଁ।

୧୧୯-(ଚ) ସଖି ରେ, (ଖ) ପ୍ରିୟ ଗୋ ମମ ପ୍ରାଣ ସରି। (ଗ) (ଘ) ମମପ୍ରାଣ ସରି।

୧୨୩-(ଗ) ଯେଥି ଯେତେଫଳ ହୋଇ ସୁମରନ୍ତେ।



# ଲକ୍ଷ୍ମୀପୁରାଣ

ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟର ଦ୍ୱିତୀୟ ପୁରାଣକାର ହେଉଛନ୍ତି ବଳରାମ ଦାସ । ସାରଳା ଦାସ ମହାଭାରତକୁ ପୁରାଣ ରୂପ ଦେବା ପରି ବଳରାମ ଦାସ ରାମାୟଣକୁ ବିଷ୍ଣୁ ପୁରାଣରେ ପରିଣତ କଲେ । ଶାକ୍ତ ସାରଳା ଦାସ ଦେବୀଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା ପାଇଁ 'ଚଣ୍ଡୀ ପୁରାଣ' ରଚନା କଲାପରି ବୈଷ୍ଣବ ବଳରାମ ଦାସ ଲକ୍ଷ୍ମୀଙ୍କର ମହିମା ବର୍ଣ୍ଣନା କଲେ 'ଲକ୍ଷ୍ମୀ ପୁରାଣ'ରେ ।

ସଂସ୍କୃତରେ ପୁରାଣ ଶବ୍ଦର ଏକ ନିର୍ଦ୍ଦିଷ୍ଟ ଅର୍ଥ ଥିଲା । 'ବାୟୁ ପୁରାଣ'ରେ ପ୍ରାଚୀନ କାଳରୁ ପ୍ରଚଳିତ କଥାକୁ ପୁରାଣ କୁହାଯାଇଛି । 'ମତ୍ସ୍ୟ ପୁରାଣ'ରେ ଏହାର ଅର୍ଥ ହେଲା, ଅତୀତ ଉପାଖ୍ୟାନ । ତେଣୁ ପୁରାଣର ସାଧାରଣ ଅର୍ଥ ହେଲା, ଅତୀତ ଉପାଖ୍ୟାନର ବର୍ଣ୍ଣନା । ସବୁ ପୁରାଣରେ ମୂଳ ବିଷୟବସ୍ତୁ ରୂପେ ଅତୀତ ଉପାଖ୍ୟାନକୁ ଗ୍ରହଣ କରାଯାଇଥିଲେ ହେଁ 'ଅମରକୋଷ'କାର ପୁରାଣର ବିଷୟବସ୍ତୁକୁ ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି । ଡକ୍ଟର ଉଇଲ୍‌ସନ୍‌ଙ୍କ ମତରେ ଏକମାତ୍ର 'ବିଷ୍ଣୁପୁରାଣ' ପୁରାଣର ପଞ୍ଚ ଲକ୍ଷଣକୁ ଗ୍ରହଣ କରିଛି । ଯୁଗର ପରିବର୍ତ୍ତନ ସଙ୍ଗେ ପରବର୍ତ୍ତୀ ଯୁଗରେ ଏଥିରେ ଆଉ ବହୁ ଲକ୍ଷଣ ସଂଯୋଜିତ ହୋଇ ପାର୍ଜିଟରଙ୍କ ଭାଷାରେ ପୁରାଣକୁ ହିନ୍ଦୁମାନେ ବିଶ୍ୱକୋଷରେ ପରିଣତ କଲେ । ଏଥିରେ ହିନ୍ଦୁମାନଙ୍କ ଧର୍ମ, ଦର୍ଶନ ସ୍ମୃତି ଓ ଇତିହାସ ସଂକଳିତ ହୋଇ ଏହାକୁ ବେଦଠାରୁ ମଧ୍ୟ ଅଧିକ ଲୋକପ୍ରିୟ କରି ପାରିଥିଲା ।

ଲେଖକମାନେ ଯେ କୌଣସି ଘଟଣାକୁ ଏପରିକି ଲୋକରେ ପ୍ରଚଳିତ କଥାକୁ ଗ୍ରହଣ କରି ପୁରାଣ ରଚନା କଲେ । ଫଳରେ ଓଡ଼ିଆ ସାହିତ୍ୟରେ ପୁରାଣ ଲେଖା ହେବା ବେଳକୁ ସଂସ୍କୃତ ସାହିତ୍ୟର ପୁରାଣ ସମ୍ବନ୍ଧୀୟ ନିର୍ଦ୍ଦେଶ ତଥା ସଂଖ୍ୟାର ନିର୍ଦ୍ଦିଷ୍ଟତା ଗୃହୀତ ହେଲା ନାହିଁ ଓ ଓଡ଼ିଆ କବିମାନେ ପୁରାଣ ପାଇଁ ଏକ ନୂଆ ରୂପରେଖ ପ୍ରସ୍ତୁତ କରିବାକୁ ଲାଗିଲେ । ଏହି ପରିବର୍ତ୍ତନର ପ୍ରଥମ ପଦକ୍ଷେପ ହେଲା ଇତିହାସ ଓ ପୁରାଣର ସମନ୍ୱୟ । ବୈଦିକ ସାହିତ୍ୟରେ ପୁରାଣକୁ ଇତିହାସ ସହ ଯୋଗ କରି ଯୁଗ୍ମ ଶବ୍ଦ ରୂପେ ବ୍ୟବହାର କରାଯାଇଛି । ପରବର୍ତ୍ତୀ କାଳରେ ଇତିହାସ, ପୁରାଣଠାରୁ ମହତ୍ତ୍ୱପୂର୍ଣ୍ଣ ଭାବେ ବର୍ଣ୍ଣିତ ହୋଇ ଥିଲେହେଁ ଧୀରେ ଧୀରେ ପୁରାଣର ଲୋକପ୍ରିୟତା ଇତିହାସ ଠାରୁ ମଧ୍ୟ ବୃଦ୍ଧି ପାଇଛି । ସଂସ୍କୃତରେ ଇତିହାସ ରାମାୟଣ ଓ ମହାଭାରତକୁ ବୁଝାଏ । ଓଡ଼ିଆ ସାହିତ୍ୟର ପ୍ରାକ୍ କାଳରେ ଇତିହାସ ଅପେକ୍ଷା ପୁରାଣର ଲୋକପ୍ରିୟତା ବୃଦ୍ଧି ପାଇଥିଲା । ଫଳରେ, ସାରଳାଦାସ, ବଳରାମ ଦାସ ପ୍ରଭୃତି ଲେଖକ ମହାଭାରତ ଓ ରାମାୟଣକୁ ଇତିହାସ ନ କହି ପୁରାଣ କହିଛନ୍ତି । ସାରଳା ମହାଭାରତର ଆଦ୍ୟ ପର୍ବରେ

ସାରଳାଦାସ ମହାଭାରତକୁ ଅଷ୍ଟାଦଶ ପୁରାଣ ଠାରୁ ଶ୍ରେଷ୍ଠ ବା 'ମହାପୁରାଣ' ଭାବେ ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ :-

ଅଷ୍ଟାଦଶ ପୁରାଣ ପଞ୍ଚବିଂଶ ଲକ୍ଷ
ରାମାୟଣ ଚଣ୍ଡୀଯୁକ୍ତ ସମସ୍ତ ପୁରାଣ ପ୍ରତକ୍ଷ ।
ବିଷ୍ଣୁ ପୁରାଣ ରାଜା ମାରକଣ୍ଡ ପୁରାଣ ପାତର ।
ଶିବ ପୁରାଣ ମନ୍ତ୍ରୀ ନାରଦ ପୁରାଣ ଡଗର ।

× × × ×

ଯୁଗତେ ସେ ଯହୁଁ ହୋଇଲା ମହାଭାରା
ତହୁଁ ମହାଭାରଥ ନାମ ଦେଲେ କଶ୍ୟପ ଅଙ୍ଗିରା ।

('ମହାଭାରତ' ଆଦି ପୃ-୬)

ଏଥିରେ କେବଳ ମହାଭାରତ ନୁହେଁ, ରାମାୟଣ ଓ ଚଣ୍ଡୀ ପୁରାଣକୁ ମଧ ପୁରାଣ ରୂପେ ଗଣନା କରାଯାଇଛି ।

'ନୃସିଂହ ପୁରାଣ'ର ଲେଖକ ପୀତାମ୍ବର ଦାସଙ୍କ ସମୟ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧକୁ ପୁରାଣର ଗଣନା କଲାବେଳେ କେବଳ ସେ 'ନୃସିଂହ ପୁରାଣ'କୁ ପୁରାଣ ମଧ୍ୟରେ ରାଜାରୂପେ ଗ୍ରହଣ କରିଛନ୍ତି, ତା' ନୁହେଁ, ଓଡ଼ିଶାରେ ପ୍ରଚଳିତ ବହୁ ଅର୍ବାଚୀନ କ୍ଷୁଦ୍ର ଗ୍ରନ୍ଥ, ଏପରି କି 'ଲକ୍ଷ୍ମୀ ପୁରାଣ'କୁ ସେ ଅଷ୍ଟାଦଶ ପୁରାଣ ରୂପେ ଗଣନା କରିବାରେ କୁଣ୍ଠାବୋଧ କରି ନାହାନ୍ତି । ସେ ପୁରାଣର ବର୍ଣ୍ଣନା ଦେବାକୁ ଯାଇ କହିଛନ୍ତି-

'ବେଦବ୍ୟାସ କୃତ ଏହିସବୁ ଶାସ୍ତ୍ର ଜାଣ
ଅଷ୍ଟାଦଶ ପୁରାଣ ଯେ ବାନ୍ଧିଲେକ ପୁଣ ।
ନୃସିଂହ ପୁରାଣ କଲେ ତାଙ୍କ ମଧେ ରାଜା
ତହିଁକି ବ୍ରହ୍ମ ପୁରାଣ ପାତ୍ର ପଣେ ଖଞ୍ଜା ।

× × × ×

ବୀଣା ବଜାଇ ରହିଲେ ବାଗ୍‌ଦେବୀ ପୁରାଣ
ଲକ୍ଷ୍ମୀ ପୁରାଣ ସେବିଲେ ପ୍ରିୟା ହୋଇ ଜାଣ ।
ପଦ୍ମ ପୁରାଣ ନିଯୋଗ ହେଲେ ସେବାକାରୀ ।
ବ୍ରହ୍ମାଣ୍ଡ ପୁରାଣ ହେଲେ ସଭା ପଢ଼ିହାରୀ ।
ଏହା ଉତ୍ତାରୁ ଆବର ଯେତେକ ପୁରାଣ ।
ପରିଚାର ହେଲେ ରାଜା ପାଦରେ ରହିଣ ।''

(ନୃସିଂହ ପୁରାଣ, ପୃ-୪୯)

## ଲକ୍ଷ୍ମୀପୁରାଣ

ପୁରାଣ-ସାହିତ୍ୟର ବିକାଶ ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ, ପ୍ରଥମେ ଶକ୍ତିଙ୍କ ପାଇଁ କୌଣସି ପୁରାଣ ନ ଥିଲା । କେବଳ ଦେବୀ ବା ଦୁର୍ଗାଙ୍କ ମହିମା ବର୍ଣ୍ଣନା କରିବା ପାଇଁ 'ମାର୍କଣ୍ଡେୟ ପୁରାଣ', 'ବାମନ ପୁରାଣ', 'ବରାହ ପୁରାଣ', 'କୂର୍ମପୁରାଣ' ପ୍ରଭୃତିରେ ଦେବୀ ମାହାତ୍ମ୍ୟ ଅଂଶ ସଂଯୋଜିତ । ଏହା ବ୍ୟତୀତ ଦେବୀ ମହାତ୍ମ୍ୟ ପ୍ରଚାର ପାଇଁ ଉପପୁରାଣ ମଧ୍ୟରେ 'ଦେବୀ ପୁରାଣ', 'କାଳିକା ପୁରାଣ', 'ମହାଭାରତ' ଏବଂ 'ଦେବୀ ଭାଗବତ' ପ୍ରଭୃତି ସ୍ୱତନ୍ତ୍ର ଭାବେ ରଚିତ ହେଲା । ପ୍ରକାଶିତ ଏହିସବୁ ପୁରାଣ ବ୍ୟତୀତ କେତେକ ଅପ୍ରକାଶିତ ପୁରାଣ ମଧ୍ୟ ଦେଖିବାକୁ ମିଳେ । 'ଭାଗବତୀ ପୁରାଣ', 'ଚଣ୍ଡୀପୁରାଣ' ବା 'ଚଣ୍ଡିକା ପୁରାଣ', 'ଦେବୀ ରହସ୍ୟ' ଏବଂ 'ଦ୍ୱିତୀୟ କାଳିକା ପୁରାଣ' ଏହାର ଅନ୍ତର୍ଗତ । ଏ ସବୁରେ ଶକ୍ତି କହିଲେ ଦେବୀ ବା ଦୁର୍ଗାଙ୍କୁ ବୁଝାଏ । ପରବର୍ତ୍ତୀ ଯୁଗରେ ଶକ୍ତିପୂଜା ଅତ୍ୟଧିକ ଲୋକପ୍ରିୟ ହେବାରୁ ଅନ୍ୟ ଦେବତାମାନଙ୍କର ସ୍ତ୍ରୀ ବା ଅଂଶାବତାର ମଧ୍ୟ ଶକ୍ତି ରୂପେ ପୂଜା ପାଇବାକୁ ଲାଗିଲେ ।

ସେହି ଦୃଷ୍ଟିରୁ ବଳରାମଙ୍କ 'ଲକ୍ଷ୍ମୀ ପୁରାଣ' ମଧ୍ୟ ଶକ୍ତି ପୂଜାର ଏକ ଗ୍ରନ୍ଥ । ଲକ୍ଷ୍ମୀଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା 'ଲକ୍ଷ୍ମୀ ପୁରାଣ'ର ମୂଳ ଉଦ୍ଦେଶ୍ୟ । ଏଥିରେ ଲକ୍ଷ୍ମୀଙ୍କୁ ଜଗନ୍ନାଥ ଓ ବଳଭଦ୍ରଙ୍କ ଠାରୁ ଶ୍ରେଷ୍ଠ ରୂପେ ଗ୍ରହଣ କରାଯାଇଛି । ଲକ୍ଷ୍ମୀଙ୍କର ଶ୍ରୀୟା ଚଣ୍ଡାଳୁଣୀ ଗୃହ ଗମନ, ଜଗନ୍ନାଥ ଓ ବଳରାମଙ୍କର ବିରୋଧ, ଲକ୍ଷ୍ମୀଙ୍କୁ ମନ୍ଦିରରୁ ବିତାଡ଼ନ, ଲକ୍ଷ୍ମୀଙ୍କ ଅଭାବରେ ଜଗନ୍ନାଥ ଓ ବଳରାମଙ୍କର ଦୁର୍ଦ୍ଦଶା, ଜଗନ୍ନାଥ ଓ ବଳରାମଙ୍କର ଅନୁତାପ, ଏବଂ ଲକ୍ଷ୍ମୀଙ୍କର ଶରଣାପନ୍ନ - ଏହି ବିଷୟବସ୍ତୁକୁ ଗ୍ରହଣ କରି ବଳରାମ ଦାସ 'ଲକ୍ଷ୍ମୀ ପୁରାଣ'ର ପରିକଳ୍ପନା କରିଅଛନ୍ତି ।

ଲକ୍ଷ୍ମୀଙ୍କର ମାହାତ୍ମ୍ୟ ପ୍ରଚାର କରିବା ସଙ୍ଗେ ସଙ୍ଗେ ଏହି ଗ୍ରନ୍ଥରେ ଅସ୍ପୃଶ୍ୟତା ନିବାରଣକୁ ଏକ ମୁଖ୍ୟ ବିଷୟବସ୍ତୁ ରୂପେ ଗ୍ରହଣ କରାଯାଇଛି । ଷୋଡ଼ଶ ଶତାବ୍ଦୀରେ ବଳରାମ ଦାସ ଜଣେ ବିପ୍ଲବୀ ଓ ସମାଜ ସଂସ୍କାରକ ଭାବେ ପ୍ରତିଷ୍ଠିତ । ତାଙ୍କ ନାମରେ ପ୍ରଚଳିତ 'ବେଦାନ୍ତସାର ଗୁପ୍ତଗୀତା' 'ଗୀତା ବକାଶ', ଓ 'ଭାବସମୁଦ୍ର' ପ୍ରଭୃତି ଗ୍ରନ୍ଥ ତାଙ୍କର ଏହି ବିପ୍ଳବୀ ମନୋଭାବର ପରିଚୟ ଦିଏ । ଏହିସବୁ ଗ୍ରନ୍ଥରୁ ଜଣାଯାଏ ଯେ, ସେ ସବୁବେଳେ ସମାଜରେ ଅବହେଳିତ ସଂପ୍ରଦାୟର ଦୁଃଖ, ଦୁର୍ଦ୍ଦଶା ଦୂର କରିବାପାଇଁ ତତ୍ପର ରହୁଥିଲେ । 'ଗୀତାବକାଶ'ରୁ ଜଣାଯାଏ ଯେ ସେ ଗୀତାକୁ କେବଳ ବ୍ରାହ୍ମଣମାନଙ୍କର ଗ୍ରନ୍ଥରୂପେ ଗ୍ରହଣ କରିବା ପାଇଁ ବା କେବଳ ଦେବ ମନ୍ଦିରରେ ପାଠ କରିବାର ପକ୍ଷପାତୀ ନ ଥିଲେ । ସେଥିପାଇଁ ସେ ଗୀତାକୁ ସଂସ୍କୃତରୁ ଓଡ଼ିଆ ଅନୁବାଦ କରି ବାଉରୀ ମୁଖରେ ଏହାକୁ ପ୍ରକାଶ କରିବା ପାଇଁ ଘୋଷଣା କରିଛନ୍ତି । ଗୀତା ପରି ବେଦାନ୍ତ ମଧ୍ୟ କେବଳ ବ୍ରାହ୍ମଣମାନଙ୍କ ଧନ ରୂପେ ବିବେଚିତ ହେଉଥିଲା । ବଳରାମ ଦାସ ନିଜର ଅଲୌକିକ ପ୍ରତିଭା ଫଳରେ ବେଦାନ୍ତ ଚର୍ଚ୍ଚାକୁ ବ୍ରାହ୍ମଣମାନଙ୍କ ଠାରୁ ଛଡ଼ାଇ

ଆଣି ହରିଦାସ ଜଡ଼କୁ ପ୍ରଦାନ କଲେ । ଗୀତା ଓ ବେଦାନ୍ତ ପରି ଭଗବାନଙ୍କର ଭକ୍ତହେବା କେବଳ ସମାଜର କେତେକ ବିଶିଷ୍ଟ ବ୍ୟକ୍ତିଙ୍କର ଅଧିକାର ଅନ୍ତର୍ଭୁକ୍ତ ଥିଲା । କେବଳ କେତେକ ବ୍ରାହ୍ମଣ ବା ରାଜାଙ୍କର ଉଚ୍ଚପଦସ୍ଥ କର୍ମଚାରୀ ଭକ୍ତି ଭାବକୁ ଗ୍ରହଣ କରି ପ୍ରଚାର କରୁଥିଲେ । ବଳରାମ ଦାସ ଏହା ବିରୁଦ୍ଧରେ ମଧ୍ୟ ବିଦ୍ରୋହ କରି ଆଚାଣ୍ଡାଳ ବ୍ରାହ୍ମଣ ସବୁ ଜାତିର ଲୋକଙ୍କୁ ଏହି ଅଧିକାର ପ୍ରଦାନ କଲେ । ସେଥିପାଇଁ 'ଭାବ ସମୁଦ୍ର'ରେ ବେଶ୍ୟାଗୃହରୁ ସଦ୍ୟନିର୍ଗତ ବଳରାମ ନୀଳାଚଳପତି ଜଗନ୍ନାଥଙ୍କ ଦ୍ୱାରା ଭକ୍ତଶ୍ରେଷ୍ଠ ଭାବେ ଘୋଷିତ ହେଲେ, ଏବଂ ତାଙ୍କୁ ଦଣ୍ଡ ଦେଉଥିବା ରାଜା ଓ ରାଜକର୍ମଚାରୀମାନେ ସର୍ବସମକ୍ଷରେ ଦଣ୍ଡିତ ଓ ଅପମାନିତ ହେବାକୁ ବାଧ୍ୟ ହେଲେ । ବଳରାମ ଦାସଙ୍କ ଜୀବନୀ ସମ୍ବନ୍ଧରେ ପ୍ରଚଳିତ ଏହି ସବୁ ଉପାଖ୍ୟାନରେ ଥିବା ବିପ୍ଳବୀ ମନୋଭାବ 'ଲକ୍ଷ୍ମୀ ପୁରାଣ'ର ମଧ୍ୟ ମୂଳ ସ୍ୱର । ବଳରାମଙ୍କ ଆରାଧ୍ୟା ଲକ୍ଷ୍ମୀ ଦେବୀ ନଗର ଭ୍ରମଣ କାଳରେ ଶ୍ରୀୟା ଚଣ୍ଡାଳୁଣୀ ସେବାରେ ଏବଂ ତା'ର ପବିତ୍ରତାରେ ସନ୍ତୁଷ୍ଟ ହୋଇ, ତା ଗୃହରେ ଆଶ୍ରୟ ନେଇଛନ୍ତି । ମଣିଷ କେବଳ ବ୍ରାହ୍ମଣ ଜାତିରେ ଜନ୍ମ ହେଲେ ବ୍ରାହ୍ମଣ ହୁଏ ନାହିଁ, ଶୁଦ୍ଧପୂତ ଆଚରଣ ଚଣ୍ଡାଳକୁ ମଧ୍ୟ ବ୍ରାହ୍ମଣର ଆସନ ପ୍ରଦାନ କରେ । ଜାତିପ୍ରଥାକୁ ବିରୋଧ କରୁଥିବା ବୁଦ୍ଧଦେବ ମଧ୍ୟ କହିଥିଲେ ''ଜାତି ମାଂ ପୁଚ୍ଛ ଚରଣଂ ପୁଚ୍ଛ ।'' ଅର୍ଥାତ୍ ଜାତି ଅପେକ୍ଷା ଆଚରଣ ଶ୍ରେଷ୍ଠ । ବଳରାମଙ୍କ ଲକ୍ଷ୍ମୀ ମଧ୍ୟ ବୁଦ୍ଧଦେବଙ୍କ ପରି କହିଲେ, ଜାତି ନୁହେଁ, ଆଚରଣରେ ପବିତ୍ରତାହିଁ ଦେବତାର ନିବାସ ଭୂମି । ଲକ୍ଷ୍ମୀଙ୍କର ବିଚାର ରକ୍ଷଣଶୀଳ ପୁଣି ବ୍ରାହ୍ମଣମାନଙ୍କ ସେବା-ସନ୍ତୁଷ୍ଟ ପ୍ରଭୁ ବଳରାମ ଓ ଜଗନ୍ନାଥଙ୍କୁ ପ୍ରଥମେ ବିଷଦୃଶ ଜଣା ଯାଇଥିଲେ ହେଁ, ଷୋଡ଼ଶ ଶତାବ୍ଦୀର ପରିବେଶ ଲକ୍ଷ୍ମୀଙ୍କର ବିଚାରକୁ ହିଁ ଗୁରୁତ୍ୱ ଦେଇଥିଲା ଏବଂ ଜଗନ୍ନାଥ ଓ ବଳରାମ ଶେଷରେ ଲକ୍ଷ୍ମୀଙ୍କ ବିଚାରକୁ ମାନିବା ପାଇଁ ବାଧ୍ୟ ହୋଇଥିଲେ ।

ଅସ୍ପୃଶ୍ୟତା ନିବାରଣ ବା ଜାତି ପ୍ରଥା ଲୋପ କରିବା ପାଇଁ ବଳରାମ ଦାସ କେବଳ ଯେ ଲକ୍ଷ୍ମୀଙ୍କ ବିଚାରକୁ ଗୁରୁତ୍ୱ ଦେଇଛନ୍ତି ତା' ନୁହେଁ । ଜଗନ୍ନାଥ ଓ ବଳରାମଙ୍କ ଦ୍ୱାରା ଲକ୍ଷ୍ମୀଙ୍କର ଏହି କ୍ଷଣକୁ ଚିରସ୍ମରଣୀୟ କରିବା ପାଇଁ ସେ ମହାପ୍ରସାଦର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ପୁରୀ ମହାପ୍ରସାଦ ଗ୍ରହଣ କରିବାରେ ଜାତି, ବର୍ଣ୍ଣର ବିଚାର ହୁଏ ନାହିଁ । ଏହା ଏକ ପ୍ରଚଳିତ ପ୍ରଥା ଥିଲେ ହେଁ, ବଳରାମ ଦାସ 'ଲକ୍ଷ୍ମୀ ପୁରାଣ'ରେ ଏହାପାଇଁ ଏକ ନୂତନ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଲକ୍ଷ୍ମୀଙ୍କର ଚାଣ୍ଡାଳୀ ଗୃହ ଗମନରୁ ଏହାର ସୃଷ୍ଟି । ମଣିଷ ମନ ପବିତ୍ର ହେଲେ ସେ ଚାଣ୍ଡାଳ ହେଲେହେଁ, ବ୍ରାହ୍ମଣ ପରି ଦେବ ପୂଜାର ଯୋଗ୍ୟ ହୋଇପାରେ । ସେଥିପାଇଁ ଲକ୍ଷ୍ମୀଙ୍କ ଅନୁରୋଧ କ୍ରମେ ଜଗନ୍ନାଥଙ୍କ ମହାପ୍ରସାଦ ଗ୍ରହଣ କରିବାରେ ଉଚ୍ଚ ଓ ନୀଚ ଜାତିର ବିଚାର ଦୂର ହେଲା ଏବଂ ସବୁ ଜାତିର ଲୋକେ ମହାପ୍ରସାଦ ଗ୍ରହଣ କରିବାରେ ସମାନ ଅଧିକାର ପ୍ରାପ୍ତ ହେଲେ ।

'ଜଗମୋହନ ରାମାୟଣ'ରେ ମଧ ସୀତାଙ୍କ କନକ-ପ୍ରତିମାକୁ ଅଯୋଧ୍ୟାର ଲୋକେ 'ପୁରୁଷୋତ୍ତମରେ ଲକ୍ଷ୍ମୀଙ୍କ ପରି' ଷୋଡ଼ଶ ଉପଚାରରେ ପୂଜା କରିଛନ୍ତି ଓ ତାଙ୍କ ପ୍ରସାଦକୁ 'ନିର୍ମାଲ୍ୟ' ପରି ଗ୍ରହଣ କରିଛନ୍ତି ।

'ଲକ୍ଷ୍ମୀପୁରାଣ'ର ମୂଳ ବିଷୟବସ୍ତୁରେ ବଳରାମଙ୍କ କଣ୍ଠସ୍ୱର ପ୍ରତିଧ୍ୱନିତ ହେଉଥିଲେ ହେଁ, ଏଥିରେ ଥିବା ଶବର ଉପାଖ୍ୟାନ ଏହାର ଏକ ବ୍ୟତିକ୍ରମ । ଉପାଖ୍ୟାନଟି ହେଉଛି, ଜାରାଶବର ଗୃହରେ ରାମ ଓ ଲକ୍ଷ୍ମଣଙ୍କର ଅବସ୍ଥାନ, ଏବଂ ଶବର ପ୍ରଦତ୍ତ ଦନ୍ତକ୍ଷତଯୁକ୍ତ ଆମ୍ର-ଗ୍ରହଣ । 'ଜଗମୋହନ ରାମାୟଣ' ଅନୁଯାୟୀ ରାବଣ କର୍ତ୍ତୃକ ସୀତା ହରଣ ପରେ ସୀତାଙ୍କୁ ବିଭିନ୍ନ ସ୍ଥାନରେ ଅନ୍ୱେଷଣ କରୁଥିବା ସମୟରେ ରାମ ଓ ଲକ୍ଷ୍ମଣ ପମ୍ପା ସରୋବର ନିକଟରେ ଏକ ଶବର ପରିବାର ଦ୍ୱାରା ଅଭ୍ୟର୍ଥିତ ହୋଇଛନ୍ତି । ସେହି ପରିବାରର ଶବରୀ ରାମ ଓ ଲକ୍ଷ୍ମଣଙ୍କୁ ଦନ୍ତକ୍ଷତଯୁକ୍ତ ପକ୍ୱ ଆମ୍ବ ସବୁ ପ୍ରଦାନ କରେ । ତୁଳସୀ ଦାସ ଓ କୃତ୍ତିବାସ ମଧ ଏହି ଉପାଖ୍ୟାନକୁ ସୀତା ଅନ୍ୱେଷଣ କାଳରେ ହିଁ ରଖିଛନ୍ତି । ଅଥଚ 'ଲକ୍ଷ୍ମୀ ପୁରାଣ'ରେ ଏହି ଉପାଖ୍ୟାନରେ କେତେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ ।

(୧) ରାମାୟଣ ସବୁରେ ଶବରର କୌଣସି ନାମ ନାହିଁ । କୌଣସି କୌଣସି ସ୍ଥାନରେ ଶବରୀକୁ "ଋଷି ପରିବାରୀ" ରୂପେ ଗ୍ରହଣ କରାଯାଇଛି । ଅଥଚ ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣ'ରେ ଶବରର ନାମ ହେଉଛି ଜାରା ଶବର ।

(୨) ସବୁ ରାମାୟଣରେ ରାବଣ ବଧ ପୂର୍ବରୁ ଏ ଉପାଖ୍ୟାନ ସନ୍ନିବେଶିତ ହୋଇଥିଲେ ହେଁ 'ଲକ୍ଷ୍ମୀପୁରାଣ'ରେ ଏହା ରାବଣ ବଧ ପରେ ବର୍ଣ୍ଣିତ ।

(୩) ରାମାୟଣ ସବୁରେ ରାମ ଓ ଲକ୍ଷ୍ମଣ ଶବରୀ ଦ୍ୱାରା ଅଭ୍ୟର୍ଥିତ ହେବା ପରେ ସେହି ସ୍ଥାନ ପରିତ୍ୟାଗ କରିଥିବା ବର୍ଣ୍ଣିତ । ଅଥଚ 'ଲକ୍ଷ୍ମୀ ପୁରାଣ' ଅନୁଯାୟୀ ରାମ ଓ ଲକ୍ଷ୍ମଣ ଜାରାଶବର ଗୃହରେ ଦଶ ବର୍ଷ ଅତିବାହିତ କରିଥିଲେ ।

(୪) 'ଜଗମୋହନ ରାମାୟଣ'ରେ ଶବର ଓ ଶବରୀର ଉଲ୍ଲେଖ କରାଯାଇଥିଲେ ହେଁ, ଶବରୀକୁ ପ୍ରାଧାନ୍ୟ ଦିଆଯାଇଛି । ଅଥଚ 'ଲକ୍ଷ୍ମୀ ପୁରାଣ'ରେ ଜାରା ଶବର ମୁଖ୍ୟସ୍ଥାନ ଗ୍ରହଣ କରିଛି ।

(୫) ଜାରା ଶବର ଚରିତ୍ର ରାମାୟଣରେ ଦେଖିବାକୁ ମିଳେ ନାହିଁ । ଏହା ହେଉଛି, ମହାଭାରତର ଏକ ଚରିତ୍ର ଏବଂ ଶ୍ରୀକୃଷ୍ଣଙ୍କ ମୃତ୍ୟୁର କାରଣ । ଅଥଚ 'ଲକ୍ଷ୍ମୀ ପୁରାଣ'କାର ମହାଭାରତ ଜାରା ଶବରକୁ ରାମ କଥାରେ ଗ୍ରହଣ କରିଛନ୍ତି ।

ବଳରାମ ଦାସ 'ଜଗମୋହନ ରାମାୟଣ'ରେ ବାଲ୍ମୀକି ରାମାୟଣ ବ୍ୟତୀତ ବହୁ ପୁରାଣ, କାବ୍ୟ, ନାଟକ ଏବଂ ଲୋକକଥାରୁ ରାମ କଥା ସମ୍ବନ୍ଧୀୟ ବହୁ ଉପାଦାନ ସଂଗ୍ରହ କରିଥିଲେ ହେଁ, କୌଣସି ସ୍ଥଳରେ ସେ ରାମକଥାରେ ନ ମିଳୁଥିବା ଅଦ୍ଭୁତ ପରଂମ୍ପରାକୁ

ସ୍ଥାନ ପ୍ରଦାନ କରି ନାହାନ୍ତି । ସାରଳା ଦାସଙ୍କ 'ମହାଭାରତ'ରେ ରାମକଥା ଦୃଷ୍ଟିରୁ ଏ ପ୍ରକାର ବହୁ ବ୍ୟତିକ୍ରମ ଦେଖିବାକୁ ମିଳୁଥିଲେ ହେଁ, ବଳରାମ ଦାସ ଏ ବିଷୟରେ ଅତ୍ୟନ୍ତ ସତର୍କତା ଅବଲମ୍ବନ କରିଥିବା ତାଙ୍କ ବର୍ଣ୍ଣିତ ଅଗଣିତ ଉପାଖ୍ୟାନରୁ ପ୍ରମାଣିତ ହୋଇଥାଏ । ସେଥିପାଇଁ କଥା ଦୃଷ୍ଟିରୁ 'ଲକ୍ଷ୍ମୀପୁରାଣ' ପରି ଏକ କ୍ଷୁଦ୍ର ରଚନାରେ ବଳରାମ ଦାସ ରାମକଥାରେ ଏପରି ବ୍ୟତିକ୍ରମ ସୃଷ୍ଟି କରିବା ସମ୍ଭବ ନୁହେଁ । ତେଣୁ 'ଲକ୍ଷ୍ମୀ ପୁରାଣ'ର ମୂଳ ଉପାଖ୍ୟାନରେ ଥିବା ଏହି ଉପକଥାଟି ବୋଧହୁଏ ପରବର୍ତ୍ତୀ ସଂଯୋଜନା ।

ବଳରାମ ଦାସ 'ଲକ୍ଷ୍ମୀ ପୁରାଣ'ର ଉପାଖ୍ୟାନକୁ ପୁରୁଷୋତ୍ତମ କ୍ଷେତ୍ର ସହ ସଂଯୋଜିତ କରି ଏହାକୁ ଓଡ଼ିଆ ରୂପ ପ୍ରଦାନ କରିଛନ୍ତି । ସଂସ୍କୃତ ପୁରାଣରେ ପ୍ରଚଳିତ ଲକ୍ଷ୍ମୀ-ଉପାଖ୍ୟାନ ଏହା ଠାରୁ ସ୍ୱତନ୍ତ୍ର । ଏଥିରେ ଓଡ଼ିଶାର ରୀତି ନୀତି ବର୍ଣ୍ଣିତ ହୋଇଥିବାରୁ ଏହା ଓଡ଼ିଆମାନଙ୍କର ଏକ ଲୋକପ୍ରିୟ ଗ୍ରନ୍ଥ । ମାର୍ଗଶିର ମାସର ଗୁରୁବାର ଦିନ ଲକ୍ଷ୍ମୀ ପୂଜା ଅନୁଷ୍ଠିତ ହୁଏ । ସେ ଦିନ ଓଡ଼ିଶାର ସବୁ ଜାତିର ଲୋକେ ଶୁଦ୍ଧପୂତ ଭାବେ ଲକ୍ଷ୍ମୀଙ୍କର ଆବାହନ କରିଥାନ୍ତି । ଏହି ଉତ୍ସବକୁ ମାଣବସା ବା ଧାନ ମାଣିକା ଓଷା ମଧ୍ୟ କୁହାଯାଏ । ସେଥିପାଇଁ 'ଲକ୍ଷ୍ମୀ ପୁରାଣ'ର ଅନ୍ୟ ନାମ ହେଉଛି ମାଣବସା ପୁରାଣ ବା ଧାନ ମାଣିକା । ଗୁରୁବାରରେ ପାଠ ହେଉଥିବାରୁ ଏହା 'ଗୁରୁବାର ବୋଲି', ପୁଣି ଲକ୍ଷ୍ମୀଙ୍କ କଷଣ ବର୍ଣ୍ଣିତ ହୋଇଥିବାରୁ ଏହା 'ଲକ୍ଷ୍ମୀ କଷଣ' । 'ଲକ୍ଷ୍ମୀ ପୁରାଣ'ର ମୂଳ ପାଠ ଠାରୁ କିଛି କିଛି ପରିବର୍ତ୍ତନ ମଧ୍ୟ ପରିଲକ୍ଷିତ ହୁଏ । ଏସବୁ ସତ୍ତ୍ୱେ ପୁରାଣ ପାଠ ପରମ୍ପରାକୁ ଅନୁସରଣ କରି ଲୋକେ ମାର୍ଗଶିର ଗୁରୁବାର ଦିନ 'ଲକ୍ଷ୍ମୀ ପୁରାଣ'କୁ ହିଁ ପାଠ କରିଥାନ୍ତି । ଦେବୀ ପୂଜାରେ ଏ ପର୍ଯ୍ୟନ୍ତ ସାରଳାଦାସଙ୍କ 'ଚଣ୍ଡୀପୁରାଣ' ସ୍ଥାନରେ ସଂସ୍କୃତରେ ରଚିତ 'ଦେବୀମାହାତ୍ମ୍ୟ' ପାଠକରି ଲୋକେ ଧର୍ମ ଅର୍ଜନ କରୁଥିବା ବେଳେ ଲକ୍ଷ୍ମୀ ପୂଜାରେ ଓଡ଼ିଆ 'ଲକ୍ଷ୍ମୀପୁରାଣ' ଜାତିକୁ ଯୁଗ ଯୁଗ ଧରି ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରଦାନ କରି ଆସିଛି । 'ଲକ୍ଷ୍ମୀ ପୁରାଣ'ର ଏହି ମହତ୍ତ୍ୱ ଯୋଗୁଁ ପୁରାଣକାର ପୀତାମ୍ବର ଦାସ 'ଲକ୍ଷ୍ମୀପୁରାଣ'କୁ ଅଷ୍ଟାଦଶ ପୁରାଣ ମଧ୍ୟରେ ଗଣନା କରିବା ପାଇଁ କୁଣ୍ଠାବୋଧ କରି ନାହାନ୍ତି ।



# ଉଦ୍ଧବ ଗୀତା

'ଉଦ୍ଧବଗୀତା' ହେଉଛି, 'ଶ୍ରୀମଦ୍ ଭାଗବଦ୍ ଗୀତା' ପରେ ବଳରାମ ଦାସଙ୍କର ଦ୍ୱିତୀୟ ଅନୁବାଦ ଗ୍ରନ୍ଥ । ମୂଳ ଭାଗବତରେ ଏହା ଦଶମସ୍କନ୍ଧର ଛୟାଳିଶି ଓ ଶତଚାଳିଶି ଅଧ୍ୟାୟ । ଏଥିରେ ଜ୍ଞାନ ଓ ପ୍ରେମ ଭକ୍ତିର ଏକ ତୁଳନାତ୍ମକ ଚିତ୍ର ପ୍ରଦତ୍ତ ହୋଇଛି । ସେଥିପାଇଁ କେହି କେହି ଏହାକୁ 'ଉପନିଷଦ ସାର ସଂଗ୍ରହ' କହିଥାନ୍ତି । ବୈଷ୍ଣବ ଧର୍ମର ଲୋକପ୍ରିୟତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଭାରତର ପ୍ରତି ଅଞ୍ଚଳରେ ପୂର୍ବରୁ ଲୋକପ୍ରିୟ ଥିବା ଜ୍ଞାନ ମାର୍ଗ ମଧ୍ୟରେ ସଂଘର୍ଷ ଉପସ୍ଥିତ ହେଲା । ସେଥିପାଇଁ ବୈଷ୍ଣବ କବିମାନେ ଭାଗବତର 'ଭ୍ରମର ଗୀତା' ପ୍ରସଙ୍ଗକୁ ଉପାଦେୟ ଭାବି ଏହା ଉପରେ ବହୁ ଗ୍ରନ୍ଥ ରଚନା କଲେ । ହିନ୍ଦୀ, ବଙ୍ଗଳା, ଓ ଓଡ଼ିଆ ସାହିତ୍ୟର ବହୁ କବି ଏହି ବିଷୟ ବସ୍ତୁକୁ ଗ୍ରହଣ କରି ନିଜ ଲେଖନୀକୁ ସାର୍ଥକ କରିଛନ୍ତି ।

ହିନ୍ଦୀ ସାହିତ୍ୟରେ ଏହି ପରଂପରାର ଆଦ୍ୟ ପ୍ରବର୍ତ୍ତକ ହେଉଛନ୍ତି ସୁର ଦାସ । ତାଙ୍କ ରଚିତ 'ଭ୍ରମର ଗୀତା' ହିନ୍ଦୀ ସାହିତ୍ୟର ଏକ ବିଶିଷ୍ଟ ଗ୍ରନ୍ଥ । ଏହି ବିଷୟବସ୍ତୁକୁ ଗ୍ରହଣ କରି ପରବର୍ତ୍ତୀ ଯୁଗରେ ନନ୍ଦ ଦାସ 'ଭଅଁର ଗୀତ' ଓ ରତ୍ନାକର 'ଉଦ୍ଧବ ଶତକ ରଚନା' କରିଥିଲେ । ଭକ୍ତି ଯୁଗରେ ଏହା ପ୍ରେମଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ ଯେପରି ଉପାଦାନ ପ୍ରଦାନ କରିଥିଲା, ରୀତି ଯୁଗରେ ଏହା ସେହିପରି ଶୃଙ୍ଗାର ରସର ବ୍ୟାଖ୍ୟାରେ ସାହାଯ୍ୟ କଲା । ଆଧୁନିକ ଯୁଗରେ ଭାରତେନ୍ଦୁ ହରିଶ୍ଚନ୍ଦ୍ର ରାଷ୍ଟ୍ରୀୟତା ଭାବର ପ୍ରତିପାଦନ ପାଇଁ ଏହାକୁ ଗ୍ରହଣ କଲେ ।

ଶ୍ରୀଚୈତନ୍ୟଙ୍କ ପରିକରମାନଙ୍କ ମଧ୍ୟରୁ ରୂପ ଗୋସ୍ୱାମୀ 'ଉଦ୍ଧବ ଦୂତ' ଶୀର୍ଷକ ସଂସ୍କୃତ ଗ୍ରନ୍ଥ ଲେଖି ବଙ୍ଗଦେଶରେ ଏହି ପରଂପରାର ସୂତ୍ରପାତ କଲେ । ପରବର୍ତ୍ତୀ ଯୁଗରେ ମାଧବ, ରାମ ସରକାର ଓ ରାମତନୁ ପ୍ରମୁଖ କବି 'ଉଦ୍ଧବସମ୍ବାଦ' ଶୀର୍ଷକ ଗ୍ରନ୍ଥମାନ ରଚନା କରି ଏହି ଧାରାକୁ ପରିପୁଷ୍ଟ କରିଥିଲେ ।

ଓଡ଼ିଆ ସାହିତ୍ୟରେ ବଳରାମ ଦାସ ହେଉଛନ୍ତି ଏହି ପରମ୍ପରାର ଆଦିକବି, ସେ ମୌଳିକ ଗ୍ରନ୍ଥ ରଚନା ନ କରି ଭାଗବତର ଓଡ଼ିଆ ଅନୁବାଦ ମାଧ୍ୟମରେ ଏହାର ପ୍ରଚାର କଲେ । ଜଗନ୍ନାଥ ଦାସ ଭାଗବତ ଅନୁବାଦ କଲାବେଳେ, ଦୀନକୃଷ୍ଣ ଦାସ 'ରସକଲ୍ଲୋଳ' ଓ ଭକ୍ତଚରଣ ଦାସ 'ମଥୁରା ମଙ୍ଗଳ' ରଚନା କଲାବେଳେ ଏହାକୁ ନିଜ ନିଜ ଗ୍ରନ୍ଥର ଅଂଶ ରୂପେ ଗ୍ରହଣ କରିଛନ୍ତି । ଦୀନକୃଷ୍ଣ, ଭୂପତି ପଣ୍ଡିତ, କୃଷ୍ଣ କର ପ୍ରଭୃତି କବି ଏହି ବିଷୟବସ୍ତୁକୁ ଗ୍ରହଣ କରି ଚଉତିଶା ରଚନା କରିଥିଲେ । ଦ୍ୱାରକା ଦାସଙ୍କ 'ଉଦ୍ଧବ ଚଉତିଶା' ବ୍ରହ୍ମଜ୍ଞାନ ମୂଳକ ।

ସମ୍ପୂର୍ଣ୍ଣ 'ଉଦ୍ଧବ ଗୀତା' ଏ ପର୍ଯ୍ୟନ୍ତ ପ୍ରକାଶ ଲାଭ କରି ନ ଥିଲେ ହେଁ ଓଡ଼ିଆ ସାହିତ୍ୟିକଙ୍କ ନିକଟରେ ଏହା ଆଦୌ ଅପରିଚିତ ନ ଥିଲା । ପ୍ରାଚୀନ ଯୁଗରେ ବୃନ୍ଦାବନ ଦାସ 'ରସବାରିଧି'ର ସପ୍ତଦଶ ଛାନ୍ଦ, ଓ ବିଶ୍ୱନାଥ ଖୁଣ୍ଟିଆ 'ବିଚିତ୍ର ରାମାୟଣ'ର ଏକତ୍ରିଂଶ ଛାନ୍ଦକୁ 'ଉଦ୍ଧବ ଗୀତା'ର ଦ୍ୱିତୀୟ ଅଧ୍ୟାୟ ବାଣୀରେ ଗାଇବା ପାଇଁ ନିର୍ଦ୍ଦେଶ ଦେଇ ଥିଲେ । ଆଧୁନିକ ଯୁଗରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ରଚିତ 'ବଳରାମ ଦାସ' ଶୀର୍ଷକ କବିତାର ପାଦ ଟୀକାରେ 'ଉଦ୍ଧବ ଗୀତା'ର ଉଲ୍ଲେଖ ଅଛି । ୧୯୬୫ ମସିହା 'କବିତା' ପତ୍ରିକାରେ ଏହି ଗ୍ରନ୍ଥର କିଛି ଅଂଶ ଆଲୋଚନା ସହ ପ୍ରକାଶିତ ହୋଇଥିଲା । ଏ ସବୁ ସତ୍ତ୍ୱେ ଓଡ଼ିଆ ସାହିତ୍ୟର ଇତିହାସକାର ମାନେ ଏ ଗ୍ରନ୍ଥକୁ ଗୁରୁତ୍ୱ ନ ଦେଇଥିବା ଆଶ୍ଚର୍ଯ୍ୟର କଥା ।

'ଉଦ୍ଧବ ଗୀତା' ଯେ 'ଶ୍ରୀମଦ୍ ଭାଗବତ ଗୀତା' ଓ 'ଜଗମୋହନ ରାମାୟଣ'ର ରଚୟିତା ବଳରାମ ଦାସଙ୍କର ରଚନା ଏହା ବହୁ ଆଭ୍ୟନ୍ତରୀଣ ପ୍ରମାଣ ଦ୍ୱାରା ସମର୍ଥୀତ ହୋଇଥାଏ । ଭାଷା, ଛାନ୍ଦ, ପ୍ରକାଶ ଭଙ୍ଗି ଓ ଅନୁବାଦଶୈଳୀ ସବୁଥିରେ ବଳରାମଙ୍କ ପ୍ରତିଭାର ସ୍ପଷ୍ଟ ମୁଦ୍ରାଙ୍କ ଦେଖିବାକୁ ମିଳେ । 'ଶ୍ରୀମଦ୍ ଭଗବଦ୍ ଗୀତା'ରେ କବି ଛଅଟି ରାଗ ବ୍ୟବହାର କରିଛନ୍ତି । ସେ ସବୁ ଯଥାକ୍ରମେ, (୧) ଭାରଥ ବୋଲି ବାଣୀରେ (୨) ଭାଷ୍ଟେକ ବୋଲି ବାଣୀ (୩) ଜଳକ୍ରୀଡ଼ା ବାଣୀ (୪) ତଣ୍ଡେକ ବାଣୀ (୫) ରୋଡ଼ା ବାଣୀ ଓ (୬) କଳସା ବାଣୀ । 'ଉଦ୍ଧବ ଗୀତା' ପାଞ୍ଚୋଟି ଅଧାୟରେ ବିଭକ୍ତ ହୋଇ ଥିବାରୁ ଏଥିରେ ରୋଡ଼ା ବାଣୀ ବ୍ୟତୀତ ଅନ୍ୟ ରାଗ ଗୁଡ଼ିକ ବ୍ୟବହୃତ । ପ୍ରଥମ ଅଧାୟ 'ଭରଥ ବୋଲି ବାଣୀ'ରେ ରଚିତ ହୋଇ ଥିଲେ ହେଁ ଏହାର ନାମ ବୋଧହୁଏ ଲିପିକାର ଭୁଲକ୍ରମେ ଛାଡ଼ି ଯାଇଛନ୍ତି । 'ଶ୍ରୀମଦ ଭଗବଦ୍ ଗୀତା'ର ପ୍ରତ୍ୟେକ ଅଧାୟରେ ଦୁଇଟି ବିଭାଗ ଦେଖିବାକୁ ମିଳେ - ପୀଢ଼ ବନ୍ଧ ଓ ଗୀତ । ଉଦ୍ଧବ ଗୀତାରେ ମଧ ଏହି ବିଭାଜନ ଅନୁସୃତ । କେବଳ ଦ୍ୱିତୀୟ ଅଧାୟରେ କବି ଗୀତ ସ୍ଥାନରେ ଆଭା (ଗାହା ବା ଗାଥା)ର ଉଲ୍ଲେଖ କରିଛନ୍ତି ।

ରାଗ ଓ ଅଧାୟ ବିଭାଗ ବ୍ୟତୀତ କେତେକ ପଂକ୍ତିରେ ସମାନତା ପରିଦୃଷ୍ଟ ହୁଏ ।

୧- 'ଶ୍ରୀମଦ୍ ଭଗବଦ୍ ଗୀତା' :
ଜଗନ୍ନାଥ ଠାକୁର ସଦୟା ମୋତେ କଲେ
ବିଷ୍ଣୁ ଭକ୍ତ ବଳରାମ ଲୋକେ ପ୍ରତେ ଗଲେ ।
'ଉଦ୍ଧବ ଗୀତା' :
କେବଳ ବିଷ୍ଣୁ ଭଗତି ସମସ୍ତେ ଯହୁଂ ବୋଇନ୍ତି

୨ - 'ଶ୍ରୀମଦ ଭଗବଦ୍ ଗୀତା' :
ତ୍ରୟୋଦଶ ଅଧ୍ୟାୟ କ୍ଷେତ୍ରଜ୍ଞ ପ୍ରସିଦ୍ଧ ।
ବଳରାମ ଦାସ ଗାଏ ।
'ଉଦ୍ଧବ ଗୀତା' :
ସାତ ଦିନି ତହିଂ ରାଉତ କାଢେଣି
୩ - 'ଶ୍ରୀମଦ୍ ଭଗବଦ୍ ଗୀତା'
ନୀଳଗିରି ଜଗନ୍ନାଥଙ୍କ ବାସ
ତେଣୁ ଏ ଗୀତା କଲଇଂ ପ୍ରକାଶ ।
'ଉଦ୍ଧବ ଗୀତା' :
ମୁହିଂ ବଳରାମ ଦାସ
ଏ ଗୀତ କଲି ପ୍ରକାଶ ।

'ଶ୍ରୀମଦ ଭଗବଦ୍ ଗୀତା' ପରି 'ଜଗମୋହନ ରାମାୟଣ' ସହ ଏହାର କେତେକ ସାଦୃଶ୍ୟ ପରିଲକ୍ଷିତ ହୁଏ । 'ଜଗମୋହନ ରାମାୟଣ'ରେ କବି ନିଜକୁ 'ଜଗନ୍ନାଥଙ୍କ ବେଟା' ରୂପେ ପରିଚିତ କରାଇ ଥିବା ପରି ଉଦ୍ଧବ ଗୀତାରେ ମଧ୍ୟ କହିଛନ୍ତି, -

ନୀଳଗିରି ଜଗନ୍ନାଥ ବେଟା ବଳରାମ ଦାସ
ଉଦ୍ଧବ ଗୀତା ଯେ ମୁହିଂ କଲଇଂ ପ୍ରକାଶ

ଜଗନ୍ନାଥଙ୍କ ବେଟା କହି ଗର୍ବ ଅନୁଭବ କରିବା କବି ବଳରାମଙ୍କର ଏକ ନିଜସ୍ୱ ଶୈଳୀ ଥିଲା । 'ଜଗମୋହନ ରାମାୟଣ' ଓ 'ଉଦ୍ଧବ ଗୀତା'ରେ ସେ ନିଜକୁ 'ଜଗନ୍ନାଥ ବେଟା' କହିବା ପରି ତାଙ୍କ ଘର ଭାଙ୍ଗୁଥିବା ବାରିଦାଧିପତି ଇନ୍ଦ୍ରଙ୍କ ପ୍ରତି ରୋଷ ପ୍ରକଟ କରି, କବି ଯେଉଁ କବିତା ରଚନା କରିଥିଲେ, ସେଥିରେ ମଧ୍ୟ ସେ ନିଜକୁ ମୁଁ ଶ୍ରୀ ଜଗନ୍ନାଥଙ୍କର ବେଟା, ବୋଲି କହିଛନ୍ତି ।

ପୂର୍ବେ ଯେ ଦିବା ନିଶି     ସାତ ଦିନ ବରଷି
ପ୍ରଭୁଙ୍କ ତୁଲେ ବାଦ କଲୁ
ବାର ଯୋଜନ ଗିରି     ବାମ କରେଣ ଧରି
ହାରିଣ ଶରଣ ପଶିଲୁ
ବାସେବ ହେ, ସେ ରୋଶେ ଭାଙ୍ଗୁ ଆମ୍ଭ ଘର
ଯେଡ଼େ ନ ଜାଣୁ ବାଇ ସଙ୍ଗେ ନ ପାରୁ ରହି
ଜଣାଇଲେ ପ୍ରଭୁଙ୍କ ଛାମୂର

ଗୁରୁ ପଞ୍ଚମୀ ବ୍ରତ      କରି ଯେ ଥିଲୁ ସତ୍ୟ
କରି ତା ପାଳି ନ ପାରିଲୁ
ଲକ୍ଷ୍ମୀଙ୍କ କୋପ ଭର      ଡରେଣ ଥରହର
ଜାଣୁତ ଯେମନ୍ତ ହୋଇଲୁ
ରାବଣ ପୁଅ ମେଘା      ଜିଣିଲା ତୋତେ କ୍ଷମା
ତେଣୁ ତା ନାମ ଇନ୍ଦ୍ରଜିତ
ତୋହର ପାଇଁ ହରି      ବେଗେ ତାହାନ୍ତ ମାରି
ସେ ଗୁଣ କରିଛୁ ଆମ୍ଭନ୍ତ ।
ପାରିଜାତେକ ଆଣୁ      ମୁଣ୍ଡ ତୋ ହାଣୁ ହାଣୁ
ସେ ବେଳେ ରଖିଲେ ତୋ ପ୍ରାଣ
ବେଳେକ ହେ ସହିବା      ପ୍ରଭୁଙ୍କୁ ନ କହିବା
ତୁହି ତ ସ୍ୱର୍ଗେ ଇନ୍ଦ୍ର ଗୋଟା
ଭଣେ ବଳରାମ ଦାସ      ତୁଟାଇବା ନୂଆ ଉଆସ
ମୁଁ ଶ୍ରୀ ଜଗନ୍ନାଥଙ୍କର ବେଟା ।

କେବଳ ଜଗନ୍ନାଥଙ୍କର ବେଟା ଭାବରେ ନୁହେଁ । ପ୍ରତି କଥାରେ ବିଶେଷ କରି ଗ୍ରନ୍ଥ ରଚନା କାଳରେ ସଙ୍କଟରେ ପଡ଼ିଲେ କବି ଜଗନ୍ନାଥଙ୍କର ସ୍ମରଣ କରୁଥିଲେ ଓ ତାଙ୍କ ଠାରୁ ଭରସା ପାଇ ନିଜକୁ ଗ୍ରନ୍ଥ ରଚନାରେ ନିୟୋଜିତ କରୁଥିଲେ । 'ଜଗମୋହନ ରାମାୟଣ'ରେ କବି ବାରମ୍ବାର ଏପରି ଅବସ୍ଥାର ସମ୍ମୁଖୀନ ହୋଇଛନ୍ତି । 'ଶ୍ରୀମଦ୍ ଭାଗବଦ୍ ଗୀତା' ଓ 'ଉଦ୍ଧବ ଗୀତା'ରେ ମଧ ଅନୁରୂପ ପରିବେଶ ସୃଷ୍ଟି ହୋଇଛି । ପ୍ରତ୍ୟେକ ସ୍ଥଳରେ କବି ଓ ଭଗବାନଙ୍କର କଥାବାର୍ତ୍ତା ମଧରେ ଆତ୍ମୀୟତା ପ୍ରକାଶ ପାଇଥିଲେ ହେଁ 'ଉଦ୍ଧବ ଗୀତା'ର ନାଟକୀୟତା ଅତ୍ୟନ୍ତ ହୃଦୟସ୍ପର୍ଶୀ :

ଶ୍ରୀ ଜଗନ୍ନାଥ ସୁନ୍ଦର ଶ୍ରୀମୁଖ ଧନ୍ୟ ବଳରାମ ଦାସ ଆନଇଂ ।
କର ପତ୍ର ଯୋଡ଼ି ବୋଲଇ ଭୋ ସ୍ୱାମୀ ତୁମେ ଯେ
ଗୋପେ ହୋଇ ଥିଲ କହ୍ନାଇଂ ।
କାଳେ ଯେ ମଥୁରାକୁ ଗଲେ ତହିଂ କଲ କେବଣ ବିଧାନ
ତାହା ମୋତେ ସଅପି କହିବାକୁ ଆଜ୍ଞା ହଉ ।
କହ ବୋଲି ବୋଇଲେ ଭଗବାନ ।

ଗୁଣ୍ଡିଚା ଯାତ୍ରା, ଜଗନ୍ନାଥଙ୍କର ସବୁଠାରୁ ବଡ଼ ପର୍ବ । ସେ ଦିନ ଜଗନ୍ନାଥ ଦର୍ଶନ କଲେ ବହୁ ପୁଣ୍ୟ ହୁଏ । କବି, ଭକ୍ତ, ସାଧକ, ସିଦ୍ଧ ଓ ସନ୍ଥ ମାନେ ସେ ଦିନ ନୀଳାଚଳରେ ସମବେତ ହୋଇ ଜୀବନ ଧନ୍ୟ କରନ୍ତି । ଭକ୍ତ ବଳରାମ ଗୁଣ୍ଡିଚା ଯାତ୍ରା ଦିନ ଜଗନ୍ନାଥ

ଦର୍ଶନ କରିବା ପାଇଁ ପୁରୀକୁ ଆସୁଥିବା ତାଙ୍କ 'ଜଗମୋହନ ରାମାୟଣ'ରୁ ଜଣାଯାଏ । ଏହି ଗୁଣ୍ଡିଚା ଯାତ୍ରାର ପୁଣ୍ୟ ଦିବସରେ କବି 'ଉଦ୍ଧବ ଗୀତା' ରଚନା କରି ଜଗନ୍ନାଥଙ୍କୁ ସମର୍ପଣ କରିଥିଲେ । ତାଙ୍କର ରଚିତ କେତେକ ପଂକ୍ତି ଏହି ଘଟଣାର ସାକ୍ଷ୍ୟ ପ୍ରଦାନ କରେ ।

କେବଳ ବିଷ୍ଣୁ ଭଗତି ସମସ୍ତେ ଯହୁଂ ବୋଲନ୍ତି
ମୁହିଁ ସେ କଥାକୁ ମତି ବଳାଇ ଥାଇ
ବାଲି ଖଣ୍ଡି ଦେବରାଜ ରଥରେ ରାଉତ ସଜ
ଧଉର୍ଯ୍ୟ ହୋଇଣ ମୁହିଂ ଏ ଗୀତ ଗାଇ ।

ଅନ୍ୟ ସ୍ଥଳରେ -

ଶ୍ରୀ ଜଗନ୍ନାଥ ଚଢ଼ିଣ ରଥ
ଗୁଣ୍ଡିଚା ଘରକୁ ଆଏ
ସାତ ଦିନ ତହିଂ ରାଉତ କାଛେଣି
ବଳରାମ ଦାସ ଗାଏ ।
ପାପ ହରିଲା ଦୁଃଖ ସରିଲା
ସୁମରି ଉଦ୍ଧବ ଗୀତା
ନୀଳଗିରି ଜଗନ୍ନାଥ ନୀଳ ଶ୍ରୀମୁଖଙ୍କର
ଲଲାଟେ ସୋଇରି ଚିତା ।।
ଶିରେଣ ଶ୍ୱେତ ଗୌଛି ନେତ
ପୀତବାସ ପରିହରଣ
ବାମେ ଯମଦାଢ଼ ମୁକୁଟ କୁଣ୍ଡଳ
ହୀରା ପଦେକ ଭୂଷଣ ।
କମଳା ବର ଶଙ୍ଖ ଚକ୍ରଧର
ଏ ରୂପ ହୃଦରେ ଧରି
ବଳରାମ ଦାସ ଆନନ୍ଦ ହୋଇଲା
ଉଦ୍ଧବ ଗୀତା ସୁମରି ।

ବଳରାମଙ୍କ ଆରାଧ ଦେବତା ଜଗନ୍ନାଥ ହେଉଛନ୍ତି ''ଅପାର କାଳର ବୁଢ଼ା ଦିଅଁ ଗୋଟି'' । ସେହି ହେଉଛନ୍ତି 'ଗୋପପୁରର କହ୍ନାଇ' । ଗୋପୀମାନଙ୍କର ଜୀବନ ।

ସେ ଗୋପୀମାନେ ନ ଭଜନ୍ତି ଆନେ
ମନ ପ୍ରାଣ ମୋତେ ଦ୍ୟନ୍ତି
ଇହଲୋକ ଧର୍ମ ଛାଡ଼ିଣ ସୁନ୍ଦେରୀ
ମୋ ଅର୍ଥେ ଦେହ ହରାନ୍ତି ।

କୃଷ୍ଣ ବିରହିଣୀ ଗୋପୀମାନଙ୍କୁ ସାନ୍ତ୍ୱନା ଦେବା ପାଇଁ ଉଦ୍ଧବ ଗୋପ ପୁରକୁ ଆଗମନ କରନ୍ତି । ଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା ହେଉଛି ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରା ପରି । ଗୋପୀମାନଙ୍କ ପରି ଏଠି ଲକ୍ଷ୍ମୀ ଜଗନ୍ନାଥଙ୍କ ବିରହରେ ବ୍ୟଥିତା । ଉଭୟ ଘଟଣାର ସଙ୍ଗତି ରକ୍ଷା କରି ଭକ୍ତ କବି ବଳରାମ 'ଉଦ୍ଧବ ଗୀତା' ରଚନା କରିବା ପାଇଁ ଗୁଣ୍ଡିଚା ଯାତ୍ରା ଦିନଟିକୁ ବାଛିଥିବା ପରି ମନେ ହୁଏ ।

ମୂଳ ଭାଗବତରେ ଦୁଇଟି ଅଧ୍ୟାୟ ଥିଲେହେଁ 'ଉଦ୍ଧବ ଗୀତା'ରେ ଏହା ପାଞ୍ଚ ଅଧ୍ୟାୟରେ ବିଭକ୍ତ । ଛୟାଳିଶି ଅଧ୍ୟାୟର ବିଷୟବସ୍ତୁ 'ଉଦ୍ଧବ ଗୀତା'ର ପ୍ରଥମ ଅଧ୍ୟାୟ । ଅଥଚ ସତଚାଳିଶି ଅଧ୍ୟାୟର ବିଷୟବସ୍ତୁକୁ କବି ବଳରାମ ନିମ୍ନ ଭାବେ ଚାରୋଟି ଅଧ୍ୟାୟରେ ପରିଣତ କରିଛନ୍ତି :

| 'ଉଦ୍ଧବ ଗୀତା' | ମୂଳ ଭାଗବତ |
|---|---|
| ଦ୍ୱିତୀୟ ଅଧ୍ୟାୟ - | ୧ - ୨୮ - ଶ୍ଳୋକ |
| ତୃତୀୟ ଅଧ୍ୟାୟ - | ୨୯ - ୩୮ - ଶ୍ଳୋକ |
| ଚତୁର୍ଥ ଅଧ୍ୟାୟ - | ୩୯ - ୫୫ - ଶ୍ଳୋକ |
| ପଞ୍ଚମ ଅଧ୍ୟାୟ - | ୫୬ - ୬୯ - ଶ୍ଳୋକ |

'ଉଦ୍ଧବ ଗୀତା' ମୂଳ ଭାଗବତକୁ ଅନୂଦିତ ହୋଇ ଥିଲେହେଁ ଏଥିରେ ବ୍ୟବହୃତ ଖାଣ୍ଟି ଓଡ଼ିଆ ଶବ୍ଦରାଜି ଏହାକୁ ମୌଳିକ ଗ୍ରନ୍ଥର ଗୌରବ ପ୍ରଦାନ କରେ । ପ୍ରତ୍ୟେକ ଶ୍ଳୋକର ଅନୁବାଦକୁ ପରୀକ୍ଷା କଲେ ଏହାହିଁ ପ୍ରମାଣିତ ହୁଏ ।

(୧) - ଖଗା ବୀତଫଳଂ ବୃକ୍ଷଂ ଭୁକ୍ତ୍ୱା ଚାତିଥୟୋ ଗୃହମ୍
ଫଳ ସରିଲେ ବୃକ୍ଷକୁ ତେଜନ୍ତି ପକ୍ଷୀ
ଭୁଞ୍ଜିଲେ ଅତିଥି ଯେହ୍ନେ ଗୃହନ୍ତ ଲେଛି ।

(୨) - ଶିଷ୍ୟୋ ବୃହସ୍ପତେଃ
ଓ - ଗୁରୁଙ୍କ ବଟୁ

(୩) - ଗୃହୀତ୍ୱା ପାଣିନା ପାଣିଂ
ଓ - ହସ୍ତ ଧରିଣ

ବଳରାମ କେବଳ ଆକ୍ଷରିକ ଅନୁବାଦ କରି ସନ୍ତୁଷ୍ଟ ନ ଥିଲେ । ବିଷୟ ବସ୍ତୁର ଆବଶ୍ୟକତା ଅନୁଯାୟୀ କେତେବେଳେ ସେ ମୂଳଗ୍ରନ୍ଥରୁ କିଛି ଅଂଶ ପରିତ୍ୟାଗ କରୁଥିଲେ ତ କେତେବେଳେ କେତେକ ପଂକ୍ତିରେ କିଛି ନୂଆ ତତ୍ତ୍ୱ ଯୋଗକରି ଅନୁବାଦକୁ ବିସ୍ତୃତ କରୁଥିଲେ । ମୂଳଗ୍ରନ୍ଥରୁ ପରିତ୍ୟାଗ କରିଥିବା କେତେକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଉଦ୍ଧବ ବର୍ଣ୍ଣନା କରିବାକୁ ଯାଇ ମୂଳ ଭାଗବତକାର 'ବୃଷ୍ଣୀନାଂ ପ୍ରବରୋ' ମନ୍ତ୍ରୀ, କୃଷ୍ଣସ୍ୟ ଦୟିତ ସଖା, ବୁଦ୍ଧି ସତ୍ତମ ପ୍ରଭୃତି ଗୁଣାବଳୀର ଉଲ୍ଲେଖ କରିଛନ୍ତି । ଅଥଚ ଅନୁବାଦରେ ବଳରାମ କେବଳ 'ତୁ ମୋ ବିଶ୍ୱାସ' ଓ 'ତୁ ସାଧୁ' କହିଛନ୍ତି । ସେହିପରି 'ପ୍ରପନ୍ନାର୍ତ୍ତିହରେ' ହରିଃ ସ୍ଥାନରେ ବଳରାମ କେବଳ 'ଦେବ ମୁରାରି' ରଖିଛନ୍ତି । ସେହିପରି ଛତଚାଳିଶି ଅଧ୍ୟାୟର ୩୭ ପଦକୁ ଅନୁବାଦ କଲାବେଳେ ଏଥିରେ ପ୍ରଯୁକ୍ତ ହୋଇଥିବା 'ଅଲବ୍ଧ ରାସଃ'କୁ 'ରାସ' ଶବ୍ଦକୁ ପରିତ୍ୟାଗ କରି କବି ଲେଖିଛନ୍ତି ।

ତୁମ୍ଭେ ଆମ୍ଭେ ଯେ ବନ ବୁଲୁ ଥାଇଂ
ଘରୁ ଯେଉଁ ଗୋପୀ ନ ପାରେ ଯାଇଂ ।

ସେହିପରି ୪୭ ପଦ ଅନୁବାଦ କଲାବେଳେ ପିଙ୍ଗଳାର ଉଲ୍ଲେଖ କରି ନାହାନ୍ତି । ମୂଳ ଭାଗବତରେ ଅଛି ''ପରଂ ସୌଖ୍ୟଂ ହି ନୈରାଶ୍ୟ ସ୍ୱୈରିଣ୍ୟ ପ୍ୟାହ ପିଙ୍ଗଳା'' ଅର୍ଥାତ୍ ସ୍ୱୈରିଣୀ ପିଙ୍ଗଳା କହିଥିଲା 'ନିରାଶା ହେଉଛି ପରମ ସୁଖ'କୁ କବି ବଳରାମ ''ଶୁଣି ଶୁଣି ନାହିଁ ଆଶା ବଡ଼ ଦୁଃଖ । ନିରାଶା ହୋଇଲେ ପରମ ସୁଖ'' ରୂପେ ଅନୁବାଦ କରି 'ପିଙ୍ଗଳା'ର ଉଲ୍ଲେଖ କରି ନାହାନ୍ତି । ପରିତ୍ୟାଗ କରିଥିବା ସବୁ ଅପେକ୍ଷା ଯୋଗ କରିଥିବା ପଂକ୍ତି ସବୁ ବଳରାମଙ୍କ ବ୍ୟକ୍ତିତ୍ୱ ଓ ଦର୍ଶନ ଆଲୋଚନା ପାଇଁ ବିଶେଷ ମହତ୍ୱପୂର୍ଣ୍ଣ । ଏହିସବୁ ପଂକ୍ତିରୁ ବଳରାମଙ୍କ ମନ କଥା ଅତି ସ୍ପଷ୍ଟ ହୋଇ ପ୍ରକାଶ ପାଏ ।

ଲକ୍ଷ୍ମୀ, ବ୍ରହ୍ମା, ଶିବ ଓ ଯୋଗୀମାନେ ଶ୍ରୀକୃଷ୍ଣଙ୍କର ଯେଉଁ ଚରଣାରବିନ୍ଦକୁ ଅନ୍ତଃକରଣରେ ଧ୍ୟାନ କରନ୍ତି, ଗୋପୀମାନେ ସେହି ଚରଣାବିନ୍ଦକୁ ରାସକାଳରେ ନିଜର ହୃଦୟ ଉପରେ ରଖି, ଆଲିଙ୍ଗନ କରି ପାପ ସବୁର ବିନାଶ କଲେ । (୪୬-୬୨) ବଳରାମ ସେହି ପାଦର ମହିମା ବର୍ଣ୍ଣନା କଲାବେଳେ ଲକ୍ଷ୍ମୀ, ବ୍ରହ୍ମା, ଶିବ ଓ ଯୋଗୀମାନଙ୍କ ସହ ବେଦ, ଗଙ୍ଗାନଦୀ, କାଳୀ, ବଳି ଅହିଲା, ଦୁନ୍ଦଭି, ଯାମଳା, ଶକଟା, ଜନେକ ଓ ହନୁମାନଙ୍କ କଥା କହି ପାଦ ମହିମାର ପରିସର ବୃଦ୍ଧି କରିଛନ୍ତି । ଏହା ବ୍ୟତୀତ,

ସାତ ଦ୍ୱୀପସାତ ସିନ୍ଧୁ ଘୋଟି,
ବ୍ରହ୍ମାଣ୍ଡ ଖପର ଗଲା ଫୁଟି ।
ଗୟାରେ ପ୍ରେତକୁ ମୋକ୍ଷ କରି
ପ୍ରଳୟକାଳେ ଆପଣେ ତୁମ୍ଭିଲା ।

କୁ ଯୋଗ କରି କବି ପାଦର ମହିମା ବର୍ଣ୍ଣନା କରିବା ସଂଗେ ସଂଗେ ନିଜର ପାଣ୍ଡିତ୍ୟ ଓ ବହୁ ଶାସ୍ତ୍ରଦର୍ଶୀତାର ପରିଚୟ ଦେଇଛନ୍ତି ।

ସେହିପରି 'ସର୍ବବ୍ୟାପୀ' ଭଗବାନଙ୍କ ସ୍ୱରୂପକୁ ଭଲ ଭାବରେ ବୁଝାଇବାକୁ ଯାଇ କବି - 'ଦୁଧରେ ଘୃତ କେଉଁଠାରେ ଥାଇବାରି ନୋହଇ' ଓ ପୁଷ୍ପରେ ଗନ୍ଧ ଓ ଶରୀରରେ ଜୀବର ତୁଳନା ଦେଇଛନ୍ତି ।

'ଭାବକୁ ନିକଟ ଅଭାବକୁ ଦୂର' ମୂଳ ଭାଗବତରଏହି ତତ୍ତ୍ୱକୁ ବଳରାମ ଓଡ଼ିଆ ମାନଙ୍କ ନିକଟରେ ଅତି ପରିଚିତ ଉପମା ସାହାଯ୍ୟରେ ଆହୁରି ସ୍ପଷ୍ଟ କରିବାକୁ ଚେଷ୍ଟା କରିଛନ୍ତି ।

ଧ୍ୱଜ ଦେଖିଲେ ପାଏ ପଡ଼ି ଶୋଇ ।
କଟିରେ ଥିଲେ ଓଳଗି ନୋହଇ ।
ତେହ୍ନେ ପରାଏ ଦୂରେଥିଲେ ପ୍ରୀତି ।
କଟିରେ ଥିଲେ ନୋହଇ ନ ଧୃତି ।

ଜୀବର ଆତ୍ମା ମାୟା ଓ ମୋହ ଦ୍ୱାରା ବଣା ହୋଇଥାଏ । ସାଧୁ ବ୍ୟକ୍ତିର ସ୍ପର୍ଶ ପାଇଲେ ମାୟା, ମୋହ ଦୂର ହୋଇ ଆତ୍ମା ନିର୍ମଳ ହୁଏ ।

ବଳରାମ ଏହାକୁ 'ଦର୍ପଣ ମାଜିଲେ କଳଙ୍କ ଗଲା ।' ସହ ତୁଳନା କରିଛନ୍ତି ।

ଶ୍ରୀକୃଷ୍ଣ ଘଟଣା ଚକ୍ରରେ ଗୋପ ପୁରକୁ ଆସିଥିଲେ । ଗୋପ ପୁରରେ ଗୋପୀମାନଙ୍କ ସହ କିଛି ଦିନ ଲୀଳା ଖେଳା କରି ପୁଣି ନିଜ ସ୍ଥାନକୁ ଫେରି ଗଲେ । ଏହି ଘଟଣାକୁ ସ୍ପଷ୍ଟ କରିବା ପାଇଁ କବି ବଳରାମ ଶ୍ରୀକୃଷ୍ଣଙ୍କ ପାଇଁ ପଣସ ଏବଂ ଗୋପୀଙ୍କ ପାଇଁ ଗୁଞ୍ଜୁ ଓ 'ଝିଙ୍କାରି'ର ତୁଳନା ଦେଇଛନ୍ତି ।

ଶ୍ରୀକୃଷ୍ଣଙ୍କ ପାଇଁ -
ଯୋଗେଣ ଗୁଞ୍ଜୁକା ଦୁଆରେ ଥିଲା,
ତାହାର ରଙ୍ଗ କି ମାଟିରେ ଗଲା ।
ସେହି ମତି ହରି ଅଇଲେ କାହୁଂ
ଶିରି ଅରଜିଣ ଗଲେ ଏ ଗାଉଂ ।
ଗୋପୀଙ୍କ ପାଇଁ
ଆମ୍ଭେ ଗୌଡୁଣି ବଣ ମଣିଷ ।
ଝିଙ୍କାରି ଆବୋରି ଥିଲା ପଣସ ।
କାଳେ ପାଚିଲା ଦେବତାକୁ ଗଲା
କୃଷ୍ଣ ଆମ୍ଭକୁ ସେହିମତି କଲା ।

ବୈଷ୍ଣବ ଧର୍ମର ପ୍ରଚାର ସଙ୍ଗେ ସଙ୍ଗେ ବିଷ୍ଣୁ ସବୁ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ରୂପେ ଓ ତାଙ୍କ ଭକ୍ତି ସବୁ ଦେବତାଙ୍କ ଭକ୍ତିଠାରୁ ଉତ୍ତମ ଭାବେ ଗଣିତ ହେଲା । ଏହି ଭକ୍ତିର ଅଧିକାରୀ ହେବା ପାଇଁ ସାଧକକୁ ସାଧୁ ସଂଗ କରି ସତ୍ୟ ଓ ଶାନ୍ତିର ବିଚାର କରିବାକୁ ହୁଏ । ବୈଷ୍ଣବ ଧର୍ମର ଏହିସବୁ ମୂଳତତ୍ତ୍ୱ ବଳରାମ ନିର୍ଦ୍ଦେଶ ଦେଇ କହିଛନ୍ତି-

ଆନ ଦିଅ ଗୁଡ଼ ଘିଅ ଶ୍ରୀହରି ଅମୃତ ।
ଅପାବନ ଲୋକ ସେ ନୋହଇ ବିଷ୍ଣୁଭକ୍ତ ।
ଏମନ୍ତ ସ୍ୱାମୀଙ୍କି ଯେ ଭଗତି ନ କରଇ ।
ଆନ ଦିଅ ସେବି ଅକାରଣେ ହେ ମରଇ ।

ଆଗତ କିଞ୍ଚିତ ସୁଖ ଦେଖି ଧାଇଂ ପଡ଼ି ।
ସତ ଛାଡ଼ି ମିଛକୁ ଶରଧା କରି ବଢ଼ି ।
ସବୁ ଭଗତିରୁ ବିଷ୍ଣୁ ଭଗତି ସେ ସାର ।
ସାଧୁ ସଂଗ ସତ ଶାନ୍ତି ବିଚାର ତାହାର ।

ଗୋପୀମାନଙ୍କର ଶିକ୍ଷା, ଦୀକ୍ଷା ବା କୌଣସି ପ୍ରକାର ସାଧନା ନ ଥିଲା । ବଣ ମଣିଷ ପରି ସେମାନେ ଜୀବନ ଅତିବାହିତ କରୁଥିଲେ । ସାଧୁ ସଂଗ ବା ସତ ଶାନ୍ତିର ବିଚାର କରିବା ତ ଦୂରର କଥା । ଏ ସବୁ ସତ୍ତ୍ୱେ ସେମାନେ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ଭକ୍ତ କିପରି ହେଲେ ? ସବୁ ବୈଷ୍ଣବଙ୍କ ପରି ବଳରାମ ଏହି ପ୍ରଶ୍ନ ପଚାରି ଯେଉଁ ଭାବେ ଏହାର ସମାଧାନ କରିଛନ୍ତି, ସେଥିରୁ ସେ ପ୍ରେମଭକ୍ତି ତତ୍ତ୍ୱକୁ ଗ୍ରହଣ କରିଥିବା ଅନୁମାନ କରାଯାଇପାରେ ।

ଗୋପୀମାନଙ୍କର ଏଥେ କଥାଯେତ ନାହିଂ
ଶ୍ରୀ ବାସୁଦେବଙ୍କ ଚିତ ବଳିଲା କିପାଇଁ ।
ସେ ସ୍ୱାମୀ ହିଂ ଏଡ଼େ କରି ଅନୁଗ୍ରହ କଲା
ଏ ସଂସାରେ ଏହାଙ୍କର ଜନମିଲା ଭଲା ।

ଭଗବାନଙ୍କର ଅହେତୁକ କୃପା ବିନା ଏ ସଂସାରରେ କୌଣସି ସାଧନା ସମ୍ଭବ ନୁହେଁ । ମଣିଷର ସବୁ ଯୋଗ, ଜ୍ଞାନ, ପାଣ୍ଡିତ୍ୟ ଭଗବାନଙ୍କ କୃପାବଳରେ ହିଁ ସାର୍ଥକ ହୋଇଥାଏ । ବଳରାମ ଗୋପୀମାନଙ୍କର ଶ୍ରେଷ୍ଠତ୍ୱ ବର୍ଣ୍ଣନା କଲାବେଳେ ବୈଷ୍ଣବ ଧର୍ମର ଏହି ତତ୍ତ୍ୱ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ଷୋଡ଼ଶ ଶତାବ୍ଦୀରେ ବୈଷ୍ଣବ ଧର୍ମର ପ୍ରସାର ସଂଗେ ସଂଗେ ସାଧକମାନେ ଯୋଗ, ଜ୍ଞାନ ଓ ପିଣ୍ଡ ସାଧନା ମାର୍ଗ ପରିତ୍ୟାଗ କରି ପ୍ରେମ ଓ ଭକ୍ତି ପଥର ପଥିକ ହେଲେ । ସାଧନା ମାର୍ଗ ପରିବର୍ତ୍ତନର ବହୁ ସଙ୍କେତ ଓଡ଼ିଆ ସାହିତ୍ୟର ଇତିହାସରୁ ମିଳିଥାଏ । ବୀରସିଂହ, ବାଉଳି, ଲୋହି ଦାସ ପ୍ରଭୃତି ସାଧକ ବୌଦ୍ଧ ମତ ପରିତ୍ୟାଗ କରି ଧର୍ମାନ୍ତର ଗ୍ରହଣ କରିଥିବା 'ଶୂନ୍ୟସଂହିତା'ରେ ବର୍ଣ୍ଣିତ । ସେହିପରି ବଳରାମ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ନିର୍ଗୁଣ ବ୍ରହ୍ମ ଉପାସନାର ମହତ୍ତ୍ୱ ପ୍ରଚାର କରିଥିଲେହେଁ 'ଉଦ୍ଧବ ଗୀତା'ରେ ପ୍ରେମ ଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ଏହାକୁ କବିଙ୍କ ଜୀବନ ଦର୍ଶନର କ୍ରମିକ ପରିଣତି ରୂପେ ଗ୍ରହଣ କରାଯାଇପାରେ । ବା କବିଙ୍କ ଜୀବନରେ ପ୍ରେମଭକ୍ତି ଓ ଜ୍ଞାନଯୋଗର ଯୁଗ୍ମଧାରା ପ୍ରବାହିତ ହେଉଥିବା କୁହାଯାଇପାରେ । 'ଉଦ୍ଧବ ଗୀତା'ରେ ପ୍ରତିପାଦିତ ତତ୍ତ୍ୱରୁ ଏହାର ସମାଧାନ ସୂତ୍ର ଖୋଜା ଯାଇପାରେ । ଏଥିରେ ଚିତ୍ରିତ ହୋଇଥିବା ଗୋପୀମାନେ ଶୁଦ୍ଧ ପ୍ରେମଭକ୍ତିର ପଥିକ ଏବଂ ଉଦ୍ଧବ ଜ୍ଞାନ ମାର୍ଗର, ଉଦ୍ଧବ ଗୋପୀମାନଙ୍କ ସମ୍ମୁଖରେ ଭଗବାନଙ୍କ ନିରାକାରତ୍ୱ ପ୍ରତିପାଦନ କଲାପରି, ଗୋପୀମାନେ ଶ୍ରୀକୃଷ୍ଣଙ୍କ ସହ ନିଜର ଆତ୍ମୀୟତା ବର୍ଣ୍ଣନା କରି ପ୍ରେମଭକ୍ତିର ଉତ୍କର୍ଷ

ପ୍ରଦର୍ଶନ କରିଛନ୍ତି । ପରିଶେଷରେ ଉଦ୍ଧବ ଗୋପୀମାନଙ୍କ ଭକ୍ତି ମୋହ ମାୟାକୁ ପରିତ୍ୟାଗ କରି ନିର୍ମଳ ଭକ୍ତିଭାବର ଅଧିକାରୀ ହୋଇଛନ୍ତି । ଏଥିରେ ଗୋପୀମାନେ ଯେପରି ଉପକୃତ, ଉଦ୍ଧବ ମଧ୍ୟ ସେହିପରି । ଗୋପୀମାନଙ୍କ ଭକ୍ତିସତ୍ତା ଦର୍ଶନରେ ଉଦ୍ଧବ କହିଛନ୍ତି,

ଏ ଗୋପୀଙ୍କ ପାଦ ଧୂଳିକି ମୋର ନମସ୍କାର
ଧନ୍ୟ ଧନ୍ୟ ବୋଲି ପ୍ରଶଂସଇ ସେ ଅପାର ।
ଅଧର୍ମ ହୋଇଲେ ତ ଏହାଙ୍କ ନାହିଁ ଆନ
ଏହାଙ୍କୁହିଁ ଏଡ଼େ ଦୟା କଲେ ଭଗବାନ ।

ସେହିପରି ଉଦ୍ଧବ ସର୍ବବ୍ୟାପି ଭଗବାନଙ୍କର ମହିମା ପ୍ରଖ୍ୟାପନ କଲାପରେ ଗୋପୀମାନଙ୍କ ଆତ୍ମା ନିର୍ମଳ ହୋଇ ଯାଇଛି :

ମୋହୋ ବାଧାଏ ବଣା ହୋଇଥିଲେ ।
ଏହା ଶୁଣିଣ ଚେତନା ପାଇଲେ ।
ଦର୍ପଣ ମାଜିଲେ କଳଙ୍କ ଗଲା ।
ଉଦ୍ଧବ ଗୋପୀଙ୍କି ତେମନ୍ତ କଲା ।
ନିର୍ମଳ ଆତ୍ମାରେ ଦେଖିଲେ ହରି ।
ଆନନ୍ଦ ହୋଇ ଗୋପୀ ତୁଷ୍ଟି କରି ।

ବଳରାମ ଜ୍ଞାନ ଓ ଭକ୍ତି ମାର୍ଗ ମଧ୍ୟରେ ଭାଗବତକୁ ଅନୁସରଣ କରି ଯେଉଁ ସମନ୍ୱୟତା ପ୍ରତିଷ୍ଠା କଲେ ଏହା ପରବର୍ତ୍ତୀ କାଳରେ ରକ୍ଷିତ ହୋଇପାରିଲା ନାହିଁ । ପ୍ରେମ ଭକ୍ତିର ପ୍ରଭାବରେ ଆସି କବିମାନେ ଜ୍ଞାନଭକ୍ତି ଠାରୁ ପ୍ରେମଭକ୍ତିର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଲାଗିଲେ । ହିନ୍ଦି ସାହିତ୍ୟର ବିଶିଷ୍ଟ କବି ସୁରଦାସ, ନନ୍ଦ ଦାସ ଓ ରତ୍ନାକର ଦାସ ପ୍ରଭୃତି ଗୋପୀମାନଙ୍କ ମୁଖରେ ମଧୁ କରକୁ ଯେଉଁ ପରିହାସ ବାଣୀ ଶୁଣାଇଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ପ୍ରାୟ ଦେଖିବାକୁ ମିଳେ ନାହିଁ ।
କବି ବଳରାମ ଯଦି ଜ୍ଞାନଭକ୍ତିକୁ ପରିତ୍ୟାଗ କରି ପ୍ରେମଭକ୍ତି ପଥକୁ ଗ୍ରହଣ କରଥାନ୍ତେ, ତା ହେଲେ ସେ ମଧ୍ୟ ପ୍ରେମଭକ୍ତିର ମହତ୍ତ୍ୱ ପ୍ରଚାର ପାଇଁ 'ଉଦ୍ଧବ ଗୀତା' ପରି ପ୍ରସଙ୍ଗକୁ ଉପଯୋଗୀ କରିଥାନ୍ତେ । ଅଥଚ ସେ ତାହା କରିନାହାନ୍ତି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ହରିନାମର ମହିମା ଓ ବଣ ମଣିଷ ପରି ଜୀବନ ଯାପନ କରୁଥିବା ଗଉଡୁଣିମାନଙ୍କ ଭକ୍ତି ଭାବନାରେ କବି ମୁଗ୍ଧ ହୋଇଥିଲେହେଁ ଜ୍ଞାନଭକ୍ତିର ମହିମା ତାଙ୍କ ହୃଦୟରୁ ସମ୍ପୂର୍ଣ୍ଣ ଭାବେ ଅପସୃତ ହୋଇପାରି ନ ଥିଲା । ତେବେ ବି 'ଉଦ୍ଧବ ଗୀତା'ର ଶେଷାଂଶରେ ଶ୍ରୀହରିଙ୍କ ଶ୍ରେଷ୍ଠତ୍ୱ ପ୍ରଖ୍ୟାପନ କରି ସେ ଯେଉଁ କେତେକ ପଂକ୍ତି ସଂଯୋଜିତ କରିଛନ୍ତି । ସେଥିରୁ ତାଙ୍କ ଭକ୍ତିମତ୍ତାର ସ୍ପଷ୍ଟ ଚିତ୍ର ଆଙ୍କି ହୋଇଯାଏ ।

ବଳରାମ ରାମ କଥାର ପ୍ରଚାର ପାଇଁ 'ରାମାୟଣ' ସଦୃଶ ବିରାଟକାୟ ଗ୍ରନ୍ଥ ରଚନା କରିଥିଲେହେଁ, ବୋଧହୁଏ ପରବର୍ତ୍ତୀ ଯୁଗରେ ସେ କୃଷ୍ଣ କଥାର ପ୍ରଚାର ପାଇଁ

ମନୋନିବେଶ କରିଥିବା 'ଉଦ୍ଧବ ଗୀତା' ଓ ଆଉ କେତେକ କ୍ଷୁଦ୍ର ରଚନାରୁ ପ୍ରତିପାଦିତ ହୁଏ । ନିମ୍ନରେ ବଳରାମଙ୍କ ଭଣିତା ଥିବା କୃଷ୍ଣକଥା ସମ୍ବନ୍ଧିତ ଏକ କ୍ଷୁଦ୍ର ରଚନା ସନ୍ନିବେଶିତ ହୋଇଛି ।

ରାଧେ ଗୋ
ହସ୍ତରେ ଦୟଣା ମୁଣ୍ଡରେ ଅୟଣା
କାନ୍ଧରେ ପତନୀ ଶାଢ଼ୀ
ସର୍ବ ସଖୀ ଘେନି ଚଳେ ଚନ୍ଦ୍ରାବଳୀ
ଯେସନେ ସିନ୍ଧୁ ଦୁଲାଳୀ ଗୋ
ରାଧେ ତୁ
ଯମୁନା ନ ଯା ଗାଧୋଇ
ଯମୁନାର ପାଣି ବାସନ୍ଦ ହୋଇଛି
ଘଟ ଘେନୁଛି ମାଧୋଇ ଗୋ ।
ନାକେ ନାକଚଣା ଗୋଡ଼ରେ ପାହୁଡ଼
ହସ୍ତରେ ସୁବର୍ଣ୍ଣ ବାହି ଗୋ ।
ଡାଳିମ୍ବ ନେତକୁ ଉଠାଣି ବୟେସ
ନେଉଟି ନ ଚାହୁଁ ରାହି ଗୋ ।
ଆଜର ସ୍ନାହାନ କୂପ ଜଳେ ସାର
ଯମୁନା ନ କର ଆଶ
ଘଟ ଦାନ ଦେଲେ ସୁଖେ ଗାଧୋଇବ
ଭଣେ ବଳରାମ ଦାସ ।

ଓଡ଼ିଆ ସାହିତ୍ୟରେ ମୁଖ୍ୟତଃ ତିନୋଟି ଧାରା ପ୍ରବାହିତ - (୧) ବ୍ରହ୍ମଜ୍ଞାନ ମୂଳକ ଗ୍ରନ୍ଥ, (୨) ରାମ କଥା ମୂଳକ ଓ (୩) କୃଷ୍ଣ କଥା ସମ୍ବନ୍ଧିତ ରଚନା । ବଳରାମ 'ପରଚେ ଚୂଡ଼ାମଣି' 'ଅମର କୋଷ ଗୀତା', 'ବିରାଟ ଗୀତା' ଓ 'ବ୍ରହ୍ମାଣ୍ଡ ଭୂଗୋଳ' ପ୍ରଭୃତି ରଚନା କରି ନିଜ ସାଧନା ମାର୍ଗର ପରିଚୟ ଦେଇଥିବା ବେଳେ 'ଜଗମୋହନ ରାମାୟଣ' ଓ 'ଉଦ୍ଧବ ଗୀତା' ଲେଖି ନିଜକୁ ରାମ ତଥା କୃଷ୍ଣଙ୍କ ଭକ୍ତ ଭାବରେ ପ୍ରତିପାଦିତ କରିଥିଲେ । ସେ ଗଦ୍ୟ ଓ ପଦ୍ୟ ଉଭୟ ଶୈଳୀରେ ଲେଖିବା ପରି 'କୋଇଲି ଚଉତିଶା' ଓ ଅନ୍ୟାନ୍ୟ କ୍ଷୁଦ୍ର ରଚନାରୁ ଆରମ୍ଭ କରି ଗୀତା ଓ ପୁରାଣ ପରି ବିରାଟକାୟ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ସେ ସଂସ୍କୃତରୁ ଅନୁବାଦ କରିବାରେ ଯେତିକି ଦକ୍ଷ ମୌଳିକ ଗ୍ରନ୍ଥ ରଚନାରେ ସେତିକି ନିପୁଣ । ବିଭିନ୍ନ ଭାବେ ସାହିତ୍ୟକୁ ସମୃଦ୍ଧ କରିବାରେ ବଳରାମଙ୍କ ଦାନ ଅତୁଳନୀୟ ।

●

# ବ୍ରହ୍ମାଣ୍ଡ ଭୂଗୋଳର ଆବିଷ୍କାର

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବହୁ ବଳରାମ ଦାସ ଥିବା ସୁବିଦିତ । ସେଥିରୁ କେବଳ ଦୁଇଜଣଙ୍କୁ ଆମ୍ଭେ ଜାଣିଛୁ । ସମାଲୋଚକମାନେ ଏମାନଙ୍କୁ ବୃଦ୍ଧ ଓ ତରୁଣ ବା ପ୍ରଥମ ଓ ଦ୍ୱିତୀୟ କହିଛନ୍ତି । କେବଳ ବଳରାମ ନୁହନ୍ତି ପଞ୍ଚସଖା ବୋଲାଉଥିବା ଷୋଡ଼ଶ ଶତାବ୍ଦୀର ପାଞ୍ଚଜଣ ସାଧକଙ୍କର ଏହି ସମସ୍ୟା । ଏହାର ଦୁଇଟି କାରଣ । ପ୍ରଥମତଃ ହେଉଛି ନାମରେ ସାଦୃଶ୍ୟ । ସେଥିରେ ପୁଣି ବଳରାମ ଓ ଜଗନ୍ନାଥଙ୍କ ପରି ନାମ ବୈଷ୍ଣବ ଧର୍ମ ପ୍ରସାର ଫଳରେ ଏତେ ଲୋକପ୍ରିୟ ହୋଇଗଲା ଯେ, ଷୋଡ଼ଶ ଶତାବ୍ଦୀରେ ଚୈତନ୍ୟଙ୍କ ଆଗମନ ଯୋଗୁଁ ପୁରୀ କ୍ଷେତ୍ରରେ ବୈଷ୍ଣବ ଭକ୍ତମାନଙ୍କର ଯେଉଁ ସମାବେଶ ହୋଇଥିଲା, ସେଥିରେ ଉକ୍ତ ନାମର ବହୁ ବ୍ୟକ୍ତି ଦେଖିବାକୁ ମିଳିଲେ । ବଳରାମ ଦାସ କହିଲେ, 'ଜଗମୋହନ ରାମାୟଣ' କବି ବଳରାମ କି କହ୍ନେଇ ଖୁଣ୍ଟିଆଙ୍କ ପୁଅ ବଳରାମ କି ନିତ୍ୟାନନ୍ଦଙ୍କ ଶିଷ୍ୟ ବଳରାମ ଜାଣିବା କଷ୍ଟକର ହେଲା । ଦେବକୀ ନନ୍ଦନ ବୈଷ୍ଣବ ବନ୍ଦନା ରଚନା କଲାବେଳେ ଏହି ଅସୁବିଧାର ସମ୍ମୁଖୀନ ହୋଇଥିଲେ । ସେଥିପାଇଁ ବିଭିନ୍ନ ବଳରାମଙ୍କୁ ଅଲଗା କରି ଦେଖାଇବା ପାଇଁ, ସେ କାହାରିକୁ ସଙ୍ଗୀତକାର ଆଖ୍ୟା ଦେଲେ ତ କାହାକୁ ଓଡ଼ିଆ କହି ସମ୍ବୋଧନ କଲେ । ଦେବକୀ ନନ୍ଦନଙ୍କ ବ୍ୟକ୍ତିଗତ ପରିଚୟ ଯୋଗୁଁ ଯାହା ସହଜ ଥିଲା, ପରବର୍ତ୍ତୀ ଯୁଗରେ କେବଳ ବଳରାମ ଦାସଙ୍କ ଭଣିତାରୁ ସବୁ ବଳରାମଙ୍କୁ ଅଲଗା କରି ଦେଖିବା ସମ୍ଭବ ହେଲା ନାହିଁ । ସେଥିପାଇଁ ବଳରାମ ଦାସଙ୍କ ଭଣିତାରୁ ବହୁ ପରବର୍ତ୍ତୀ ରଚନା ଷୋଡ଼ଶ ଶତାବ୍ଦୀର ଗ୍ରନ୍ଥରୂପେ ପରିଗଣିତ ହେଲେ ।

ଦ୍ୱିତୀୟ କାରଣ ହେଉଛି କବିଙ୍କର ପ୍ରସିଦ୍ଧି । କୌଣସି କବି ବା ସାଧକ ସମାଜରେ ପ୍ରତିଷ୍ଠିତ ହୋଇଯିବା ପରେ ତାଙ୍କର ପରବର୍ତ୍ତୀ ଶିଷ୍ୟ ଓ ଅନୁଧାୟୀମାନେ ସେଇ କବିଙ୍କ ନାଁ ଦେଇ ଗ୍ରନ୍ଥ ରଚନା କରି, ତାଙ୍କରି ନାଁରେ ଗ୍ରନ୍ଥକୁ ଚଳେଇନେବା, ଏ ପ୍ରବୃତ୍ତି କେବଳ ଓଡ଼ିଶା ନୁହେଁ, ଓଡ଼ଶା ବାହାରେ ମଧ୍ୟ ଦେଖାଯାଇଥାଏ । ସଂସ୍କୃତ କବି କାଳିଦାସ ବଙ୍ଗଳା କବି ଚଣ୍ଡୀଦାସ, ମୈଥିଳୀ କବି ବିଦ୍ୟାପତିଙ୍କ ଭଣିତା ଦେଇ ପରବର୍ତ୍ତୀ ବହୁ କବି ପ୍ରସିଦ୍ଧି ଲାଭ କରିଥିବା ଇତିହାସରୁ ଜାଣିହୁଏ । ଓଡ଼ିଶାରେ ଜୟଦେବ, ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଦୀନକୃଷ୍ଣ ଏପରିକି ଉପେନ୍ଦ୍ର ମଧ୍ୟ ସେମାନଙ୍କ ଲୋକପ୍ରିୟତା ଯୋଗୁଁ ବହୁ ଜୟଦେବ, ବଳରାମ, ଜଗନ୍ନାଥଙ୍କୁ ଜନ୍ମ ଦେଇଛନ୍ତି ।

କେବଳ କବି ନୁହନ୍ତି, କବିଙ୍କ ରଚିତ ପ୍ରସିଦ୍ଧ ଗ୍ରନ୍ଥସବୁ ମଧ୍ୟ ଏହି ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ବହୁଥର ଆତ୍ମପ୍ରକାଶ କରିଛନ୍ତି । 'ଗୀତଗୋବିନ୍ଦ'ର ଅନୁକରଣରେ

'ଅଭିନବ ଗୀତଗୋବିନ୍ଦ', 'ଅମରକୋଷ' ସ୍ଥାନରେ 'ଅମରକୋଷ ଗୀତା', 'ସପ୍ତାଙ୍ଗ ଯୋଗ' ଜାଗାରେ 'ସପ୍ତାଙ୍ଗ ଯୋଗ ଧାରଣ' ବା 'ସପ୍ତାଙ୍ଗ ଯୋଗସାର ଟୀକା', 'ଗୁପ୍ତଗୀତା' ପାଇଁ 'ଗୁପ୍ତଗୀତା', 'ଅଣାକାର ସଂହିତା' ବଦଳରେ 'ଅଣାକାର ସଂହିତା', ଓଡ଼ିଆ 'ଶୂନ୍ୟ ସଂହିତା'କୁ ଅନୁସରଣ କରି ସଂସ୍କୃତ ଭାଷାରେ 'ଶୂନ୍ୟ ସଂହିତା'ର ରଚନା ଏହାର ପରିଚାୟକ। ବଳରାମଙ୍କ ରଚିତ 'ବ୍ରହ୍ମାଣ୍ଡ ଭୂଗୋଳ' ଏହିପରି ଗୋଟିଏ ଗ୍ରନ୍ଥ। ଏହି ଗ୍ରନ୍ଥର ପ୍ରସିଦ୍ଧି ଯୋଗୁଁ ଅନ୍ତତଃ ଜଣେ ବଳରାମ, ଦୁଇଜଣ ଜଗନ୍ନାଥ ଓ ଜଣେ ନୃପତି ଭୁଜ ଦାସ, ନିଜ ରଚିତ ଗ୍ରନ୍ଥର ନାଁ ଦେଇଛନ୍ତି 'ଭୂଗୋଳ'। କେବଳ ଗ୍ରନ୍ଥର ନାଁ ନୁହେଁ, ବିଷୟବସ୍ତୁର ବର୍ଣ୍ଣନାରେ, ସେମାନେ ପ୍ରଥମ ରଚୟିତାଙ୍କ ବ୍ୟାଖ୍ୟା ପଦ୍ଧତିକୁ ଅନୁସରଣ କରିଛନ୍ତି।

ପୋଥିଗଦାରୁ 'ବ୍ରହ୍ମାଣ୍ଡ ଭୂଗୋଳ'ର ଯେଉଁ ପ୍ରତିଲିପିଟି ଆବିଷ୍କୃତ ହୋଇ ପ୍ରକାଶିତ ହେଲା, ସେଥିରେ "କହଇ ବଳରାମ ଦାସ, ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ" ବା "ଶୁଣି ଅର୍ଜ୍ଜୁନ ହେଲେ ତୋଷ, କହଇ ବଳରାମ ଦାସ" ପ୍ରଭୃତି ପଦ ଦେଖି ଷୋଡ଼ଶ ଶତାବ୍ଦୀରେ ପ୍ରସିଦ୍ଧି ଲାଭ କରିଥିବା ବଳରାମଙ୍କ ରଚନା ରୂପେ ଗଣନା କରିନେବା ଅତି ସହଜ ଓ ସ୍ୱାଭାବିକ। ସେଥିପାଇଁ ଓଡ଼ିଆ ସାହିତ୍ୟର ଇତିହାସ ଲେଖକ ପଣ୍ଡିତ ବିନାୟକ, ପଣ୍ଡିତ ସୂର୍ଯ୍ୟନାରାୟଣ ଏବଂ ପଣ୍ଡିତ ନୀଳକଣ୍ଠ ଷୋଡ଼ଶ ଶତାବ୍ଦୀର ରଚନାରୂପେ ଏହାର ବିଚାର କରିଛନ୍ତି। ପଣ୍ଡିତ ନୀଳକଣ୍ଠ ବଳରାମଙ୍କ ଭଣିତା ଥିବା ବହୁ ଗ୍ରନ୍ଥକୁ ଅପ୍ରାମାଣିକ ରଚନା ରୂପେ ସନ୍ଦେହ କରୁଥିଲେ ହେଁ, 'ବ୍ରହ୍ମାଣ୍ଡ ଭୂଗୋଳ' ଭଳି ଖଣ୍ଡେ ଅର୍ଦ୍ଧ ଗ୍ରନ୍ଥ ଲେଖିବା ଅସମ୍ଭବ ବୋଲି ମତ ଦେଇଛନ୍ତି। ଏ ବିଷୟରେ ପଣ୍ଡିତ ସୂର୍ଯ୍ୟନାରାୟଣଙ୍କ କଳ୍ପନା ଅତ୍ୟନ୍ତ କୌତୂହଳୋଦ୍ଦୀପକ। ତାଙ୍କ ମତରେ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ଘନିଷ୍ଠ ବନ୍ଧୁତ୍ୱର ଫଳ ସ୍ୱରୂପ ଏହାର ସୃଷ୍ଟି। ଜଣେ ପ୍ରତ୍ୟକ୍ଷଦର୍ଶୀ ଭକ୍ତ ଲେଖିଛନ୍ତି, "ବଳରାମ ଦାସ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଠାରୁ ପ୍ରତିଦିନ ଭକ୍ତିତତ୍ତ୍ୱ ଓ ଭାଗବତ ବ୍ୟାଖ୍ୟା ଶୁଣୁଥିଲେ। ଦୁହିଁଙ୍କ ଭିତରେ ବନ୍ଧୁତ୍ୱ ଥିବାରୁ ସେ ଅତବଡ଼ୀଙ୍କଠାରୁ ସ୍ୱକୃତ ଭାଗବତର ବହୁ ପଦର ବ୍ୟାଖ୍ୟା ଶୁଣିଥିଲେ। ପୁଣି ସେ ସାଧକ ଓ ଭକ୍ତଥିବାରୁ ଜଗନ୍ନାଥ ଦାସଙ୍କର ଭାଗବତ ବୁଝିବାରେ କଷ୍ଟବୋଧ କରି ନ ଥିଲେ।"

ବଳରାମ ଦାସଙ୍କ ଭଣିତା ସତ୍ତ୍ୱେ ମୃତ୍ୟୁଞ୍ଜୟ ରଥ ଏଥିରେ ବେଦାନ୍ତ ତତ୍ତ୍ୱର ଆଲୋଚନା ଦେଖି ଏହାକୁ ଦ୍ୱିତୀୟ ବଳରାମଙ୍କ ରଚନା ରୂପେ ଗ୍ରହଣ କରିଛନ୍ତି। ଶ୍ରୀ ସୁରେନ୍ଦ୍ର ମହାନ୍ତି ପ୍ରେମଭକ୍ତିରେ ମତ୍ତ ହେଉଥିବା ବଳରାମଙ୍କ ଭକ୍ତ ହୃଦୟର ସଙ୍କେତ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ନଦେଖି ଏହି ଦୁଇ ବ୍ୟକ୍ତିତ୍ୱ ମଧ୍ୟରେ ଥିବା ଅସଙ୍ଗତି ପ୍ରତି ପାଠକମାନଙ୍କ ଦୃଷ୍ଟି ଆକୃଷ୍ଟ କରିଛନ୍ତି। କାରଣ ଯାହା ହେଉନା କାହିଁକି ଷୋଡ଼ଶ ଶତାବ୍ଦୀର ବଳରାମ ଦାସଙ୍କ ରଚିତ ଗ୍ରନ୍ଥରୂପେ ଏହାର ପ୍ରାମାଣିକତା ସମ୍ପର୍କରେ ସନ୍ଦେହ ମୂଳରୂପ

ସମ୍ବନ୍ଧରେ କୌଣସି ସଙ୍କେତ ନାହିଁ। ପ୍ରସ୍ତୁତ ପ୍ରବନ୍ଧରେ ମିଳୁଥିବା ଚାରୋଟି 'ବ୍ରହ୍ମାଣ୍ଡ ଭୂଗୋଳ'ର ଆଲୋଚନା କରାଯାଇଛି। ନିମ୍ନ ଆଲୋଚନାରୁ 'ବ୍ରହ୍ମାଣ୍ଡ ଭୂଗୋଳ'ର ପ୍ରକୃତ ସ୍ୱରୂପ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ବଳରାମଙ୍କ ସାଧନା ପଦ୍ଧତି ସମ୍ବନ୍ଧରେ ବହୁ ନୂତନ ତଥ୍ୟ ମିଳିବ ବୋଲି ଆଶା।

ମନମୋହନ ପୁସ୍ତକାଳୟ କର୍ତ୍ତୃକ ୧୯୫୦ରେ ପ୍ରକାଶିତ 'ବ୍ରହ୍ମାଣ୍ଡ ଭୂଗୋଳ'ର ସଂଶୋଧିତ ଅଷ୍ଟମ ସଂସ୍କରଣରେ ୪ ଅଧ୍ୟାୟ ପ୍ରକାଶିତ ଗ୍ରନ୍ଥକୁ ପୋଥି ସହ ମିଳାଇ ପରୀକ୍ଷା କଲେ ବହୁ ପାର୍ଥକ୍ୟ ପରିଦୃଷ୍ଟ ହୁଏ। ବୀର ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କ ବିଜେ ଶୁଭ ରାଜ୍ୟେ ସମସ୍ତ ୨୨ ଅଙ୍କ ୧୩୦୬ ସାଲ କୁମ୍ଭ ୧୬ ଦିନ ମାଘ ଶୁକ୍ଳ ତ୍ରୟୋଦଶୀ ଶୁକ୍ରବାର ବେଳ ଦଶଘଡ଼ି ସମୟେ ଲେଖା ବଢ଼ିବାର ପୋଥିରେ ଅଧ୍ୟାୟ ସଂଖ୍ୟା ୮୬। ଅର୍ଥାତ୍ ପ୍ରକାଶିତ ଗ୍ରନ୍ଥଠାରୁ ଦୁଇ ଅଧ୍ୟାୟ ବେଶି। ସେହିପରି ସିଂଭୂମିର ପୋଡ଼ାହାଟ ରାଜା ଅର୍ଜ୍ଜୁନ ସିଂହଙ୍କ ରାଜତ୍ୱ କାଳରେ ଲିଖିତ ପୋଥିରେ ମୋଟେ ୬୬ ଅଧ୍ୟାୟ। ଏହିପରି ଅନ୍ୟ ପୋଥିର ଅନ୍ୟରୂପ ମିଳିବାର ସମ୍ଭାବନା। ଯେପରି ଜଣାପଡୁଛି ଅଧ୍ୟାୟ ସଂଖ୍ୟା ଧିରେ ଧିରେ ବୃଦ୍ଧି ପାଇ ଗ୍ରନ୍ଥର କଳେବରକୁ ପୁଷ୍ଟ କରିଛି। ପ୍ରକାଶିତ ଗ୍ରନ୍ଥ ଏହାର ପ୍ରାମାଣିକ ରୂପ ନୁହେଁ, ଭାଷା ଓ ବିଷୟବସ୍ତୁ ଦୃଷ୍ଟିରୁ ମଧ୍ୟ ଏଥିରେ ଅନେକ ଅଦଳ ବଦଳ ହୋଇଛି। ନିମ୍ନରେ ପ୍ରଦତ୍ତ ଉଦାହରଣରୁ ଏହା ସ୍ପଷ୍ଟ ହେବ।

ପ୍ରଥମ ପୋଥିର ପ୍ରଥମ ଅଧ୍ୟାୟରେ ପ୍ରକାଶିତ ଗ୍ରନ୍ଥର ପ୍ରଥମ ସାତପଦ ଅର୍ଥାତ୍ ଜଗନ୍ନାଥଙ୍କ ବନ୍ଦନା ନାହିଁ। ତେଣୁ ବହିର ୩୭ ପଦ ସ୍ଥଳେ ପୋଥିରେ ୩୦ ପଦ। ବହିର ୩୬ ପଦଟି ହେଉଛି-

ନାମରୁ ଭାଗବତ ହେଲା
ତେଣୁ ଦ୍ୱିଗୁଣ ବୋଲାଇଲା।

ପୋଥିରେ ଦ୍ୱିଗୁଣ ସ୍ଥାନରେ 'ନିର୍ଗୁଣ' ପାଠ ଗୃହୀତ। ବହିର ୪ର୍ଥ ଅଧ୍ୟାୟ ପୋଥିରେ ନାହିଁ। ପଞ୍ଚମ ଅଧ୍ୟାୟର ପ୍ରଥମ ଦଶ ପଦ ମଧ୍ୟ ପୋଥି ପାଠରେ ମିଳେ ନାହିଁ। ବହିରେ ୬ଷ୍ଠ ଅଧ୍ୟାୟର ପାଠ ହେଉଛି-

ଏକାଦଶ ଇନ୍ଦ୍ରିୟ କଲା
ଦ୍ୱାଦଶ ବାୟୁ ସୃଷ୍ଟ ହେଲା।
ଦ୍ୱାଦଶସ୍କନ୍ଧ ଯେ ଏମନ୍ତେ
ଅର୍ଜ୍ଜୁନ କହିଲି ମୁଁ ତୋତେ।

ପୋଥିରେ ଏହାର ଅନ୍ୟ ରୂପ-

ଏକା ଦଶମ ସ୍କନ୍ଧ ଯାହାକହି
ଯେକାଦଶ ଇନ୍ଦ୍ରି ବୋଲାଇ।

ଦ୍ୱାଦଶ ସ୍କନ୍ଧ ଏବେ ଶୁଣ
ପବନ ସୂତ୍ର ଏ ପ୍ରମାଣ ।
ଏମନ୍ତେ ବାର ସ୍କନ୍ଧ କହି
ଶୁଣ ଅର୍ଜ୍ଜୁନ ମନ ଦେଇ ।

କୌଣସି ଗୋଟିଏ ପୋଥିର ପାଠ ପ୍ରମାଣିତ ନ ହେଲେ ହେଁ ଉପରୋକ୍ତ ତୁଳନାରୁ ପ୍ରକାଶିତ ପୁସ୍ତକରେ ବହୁ ଅସ୍ପଷ୍ଟତା ଥିବା ଜାଣି ହୁଏ ।

ଦ୍ୱିତୀୟ 'ବ୍ରହ୍ମାଣ୍ଡ ଭୂଗୋଳ'ର ରଚୟିତା ଜଣେ ଜଗନ୍ନାଥ ଦାସ । ଏହାର ଗୋଟିଏ ଅସମ୍ପୂର୍ଣ୍ଣ ପ୍ରତିଲିପି ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃକ ସଂଗୃହୀତ । ଏଥିରେ ଛ'ଟି ଅଧ୍ୟାୟ ।

ତୃତୀୟ 'ବ୍ରହ୍ମାଣ୍ଡ ଭୂଗୋଳ'ର ରଚୟିତା ହେଉଛନ୍ତି ଆଉଜଣେ ଜଗନ୍ନାଥ ଦାସ । ଏହା ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ଭଣ୍ଡାରରେ ସଂରକ୍ଷିତ । ଅଧ୍ୟାୟ ପରିବର୍ତ୍ତେ ଏଥିରେ ଖ୍ୟାଦି ବ୍ୟବହୃତ ହୋଇଛି । ଗ୍ରନ୍ଥଟି ଅସମ୍ପୂର୍ଣ୍ଣ । ଦ୍ୱିତୀୟ ଖ୍ୟାଦିରୁ ଆରମ୍ଭ ହୋଇ ୩୮ ଖ୍ୟାଦିର ବାଇଶି ପଦ ପର୍ଯ୍ୟନ୍ତ ଏଥିରେ ଅଛି । ପରିକଳ୍ପନାରୁ ଜଣାଯାଏ ଯେ, ଏହାର ଲେଖକ ଏକାଦଶ ସ୍କନ୍ଧ ଭାଗବତର ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଏହି କ୍ରମରେ ବିଭିନ୍ନ ଅଧ୍ୟାୟରୁ ପଦ ସଂଗ୍ରହ କରି ଏହାର ବ୍ୟାଖ୍ୟା କରିଛନ୍ତି । ଏଥିରେ ଲେଖକ ନିଜର ଉଲ୍ଲେଖ କରି ଲେଖିଛନ୍ତି-

କହଇ ଜଗନ୍ନାଥ ଦାସ
ବ୍ରହ୍ମାଣ୍ଡ ଟୀକା ସାର ରସ ।

(ସପ୍ତଦଶ ଖ୍ୟାଦି)

ଏହାର ଲେଖନକାର ବଳରାମ ଦାସ ବା ବଳଭଦ୍ର ଦାସ ଗ୍ରନ୍ଥରେ ନିଜ ନାମକୁ ଲେଖକଙ୍କ ପଛରେ ସଂଯୋଜିତ କରି ବେଳେବେଳେ ଆତ୍ମପ୍ରକାଶ କରିଛନ୍ତି ।

ସେ କାଳ ପଙ୍କଜ ଚରଣ
ଜଗନ୍ନାଥ ଦାସ ଶରଣ ।
ସୁଜନେ ନଘେନିମା ଦୋଷ
ମୁଁ ତୁମ୍ଭ ଦାସଙ୍କର ଦାସ ।
ମୁଁ ହୀନ ଦାସ ବଳରାମ
ମୋତେ ଉଦ୍ଧାର ଘନଶ୍ୟାମ ।

(ଅଷ୍ଟାଦଶ ଖ୍ୟାଦି)

ଅନ୍ୟ ସ୍ଥଳରେ ଲେଖନକାର ବଳଭଦ୍ର ଦାସ -

କହଇ ଜଗନ୍ନାଥ ଦାସ
ସେ ପାଦେ ରଖ ପୀତବାସ ।

ଯେ ଚିର ତୃଷିତ କାତରେ
ଗୋବିନ୍ଦ ପାଦ ଗଙ୍ଗା ନୀରେ ।
ସୁଜନ ନ ଧରିବ ଦୋଷ
ଲେଖିଲେ ବଳଭଦ୍ର ଦାସ ।

(ବତ୍ରିଂଶ ଖ୍ୟାଦି)

ଅନ୍ୟ ଗୋଟିଏ ସ୍ଥାନରେ ଲେଖକ 'ଦାସ ଜଗନ୍ନାଥ' ନ ହୋଇ 'ବିପ୍ର ଜଗନ୍ନାଥ' ହୋଇଛନ୍ତି-

''ବୋଲଇ ବିପ୍ର ଜଗନ୍ନାଥ ।
ସୁଜନେ ନଧର ମୋ ଦୋଷ ।।
ମୁଁ ହୀନ ବଳରାମ ଦାସ ।
ମୋତେ ଉଦ୍ଧର ପୀତବାସ ।।
ମୁଁ ମୂଢ଼ ଅଧମ ଅଟଇ ।
ତୁମ୍ଭ ଭଜନ ମୋର ନାହିଁ ।।
ଏ ଯେ ମୋହର ମାୟାଜାଲ ।
କିଣିତେ କାଟ ଆଦିମୂଳ ।।
ଲେଖିଲେ ବଳରାମ ଦାସ ।
ବ୍ରହ୍ମାଣ୍ଡ ଭୂଗୋଳର ରସ ।।

(ଷଡ଼ବିଂଶ ଖ୍ୟାଦି)

ଚତୁର୍ଥ 'ବ୍ରହ୍ମାଣ୍ଡ ଭୂଗୋଳ' ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କଦ୍ୱାରା ତିଗିରିଆରୁ ସଂଗୃହୀତ ହୋଇଥିଲା । ଏହାର ମୂଳଲିପି ବିଶ୍ୱଭାରତୀର ପୋଥି ଭଣ୍ଡାରରେ ଅଛି । ଏଥିରେ ଚବିଶ ଅଧ୍ୟାୟ । ଏହାର ଲେଖକ ବଳରାମ ଦାସ ନିଜର ପରିଚୟ ପ୍ରଦାନ କରି ଲେଖିଛନ୍ତି-

ନିର୍ଗୁଣ ଅର୍ଥ ଏ ବିଚାର ।
ଭଣେ ସମନାଥ କୁମର ।।

(ଷଷ୍ଠ ଅଧ୍ୟାୟ)

କହଇ ସମନାଥ ସୁତ,
ବ୍ରହ୍ମାଣ୍ଡ ଭୂଗୋଳର ଅର୍ଥ ।।

(ଦଶମ ଅଧ୍ୟାୟ)

କହଇ ସମନାଥ ସୁତ ।
ଉଧର ମୋତେ ପଦ୍ମ ନେତ୍ର ।।

(ପଞ୍ଚଦଶ ଅଧ୍ୟାୟ)

ଏଥିରେ କବି ନିଜକୁ ସମନାଥ ସୁତ ବା ସମନାଥ କୁମର ରୂପେ ପରିଚିତ କରାଇ ଥିବାରୁ ପ୍ରକାଶିତ 'ବ୍ରହ୍ମାଣ୍ଡ ଭୂଗୋଳ'ର ରଚୟିତା ବଳରାମଙ୍କଠାରୁ ସେ ଯେ ସ୍ୱତନ୍ତ୍ର ଏହା ଜଣାଯାଏ । 'ଜଗମୋହନ ରାମାୟଣ'ର କବି ବଳରାମ ଦାସଙ୍କ ପିତା ମଧ୍ୟ ସୋମନାଥ ମହାପାତ୍ର । ସମନାଥ ଓ ସୋମନାଥ ମହାପାତ୍ରଙ୍କୁ ଏକ ଓ ଅଭିନ୍ନ ରୂପେ ଗ୍ରହଣ କଲେ 'ଜଗମୋହନ ରାମାୟଣ'ର ପ୍ରସିଦ୍ଧ କବି ବଳରାମ ଦାସଙ୍କୁ 'ବ୍ରହ୍ମାଣ୍ଡ ଭୂଗୋଳ'ର ରଚୟିତା ରୂପେ ଗ୍ରହଣ କରାଯାଇ ପାରିବ । ଗ୍ରନ୍ଥରେ ପ୍ରଯୁକ୍ତ ଭାଷା ତଥା ରଚନା ଶୈଳୀଦ୍ୱାରା ଏହି ଅନୁମାନ ସମର୍ଥିତ ହୁଏ । ନିମ୍ନରେ ଗ୍ରନ୍ଥ ମଧ୍ୟରୁ କେତୋଟି ପ୍ରାଚୀନ ପ୍ରୟୋଗର ଉଦାହରଣ ଦିଆଯାଉଛି :

(୧) "ଦିବୀଙ୍କ ଯେଥୁ ଉପୁଜଇ ।"

(୨) ହିଁ ର ଇ ରେ ରୂପାନ୍ତର -
"ତ୍ରୀୟ ମାତ୍ରାରୁ ତ୍ରୀ ନାମଇ ।
ପିତାର ବୀର୍ଯ୍ୟ ପାଷାଣଇ ।"

(୩) ମଧ୍ୟମ ପୁରୁଷର ବର୍ତ୍ତମାନ କାଳରେ 'ସି' ପ୍ରୟୋଗ - "ଶୁଣସି ପଣ୍ଡୁର ନନ୍ଦନ" । ସିଂଅସି ।

(୪) ଅଧିକରଣ କାରକରେ "ହିଂ" - "ପତି ତା ଦ୍ୱାରକା ହିଂ କାନ୍ଦି" ।

(୫) ଯେଣ୍ଣେ - ତେଣ୍ଣେ : "ଭସ୍ମ ଭିତରେ ଅଗ୍ନି ଯେଣ୍ଣେ । ... ରୂପ ତ୍ରିକୂଟରେ ତେଣ୍ଣେ ।

(୬) ଯେହି- "ଅନାଦି ମାୟା ଶକ୍ତି ଯେହି । ନ ଶୁଣିମା ବନେ ଯେହି" ।

(୭) ୟେହି:- ସେହି:- "ୟେହି ସେହି ହୋୟେ ଲେଖାଇ ।

(୮) ଯହିଂ- "ଯହିଂ ତୁମ୍ଭ ଶ୍ରୀଚରଣ ପୁଛଇ ।"

(୯) ତହିଂ- "ଲେଖା ଲେଖନ ତହିଂ ନାହିଂ ।"

(୧୦) ଏଣ- (ତୃତୀୟାରେ ଏଣ ପ୍ରୟୋଗ):
"ଯୋଗେଣ ଜିଣିବୁ ଦେହକୁ" ।

(୧୧) ଏକ (ସ୍ୱାର୍ଥେ କ ପ୍ରୟୋଗ):
"ନାମ ବୋଲାଇଲେକ ବାରି"

ଏହା ବ୍ୟତୀତ ଛଡ଼, ଫଟାଏ, ଶାସ୍ତ୍ର, ଶିଷ, ବାନ୍ଧିତ ଓ ସାହେର ପ୍ରଭୃତି ଶବ୍ଦ ଗ୍ରନ୍ଥ ମଧ୍ୟରେ ପ୍ରାଚୀନତାର ସ୍ମାରକ ରୂପେ ବ୍ୟବହୃତ ।

ଏସବୁ ପ୍ରମାଣ ବଳରେ ସମନାଥ ସୁତ ବଳରାମ ଦାସଙ୍କ 'ବ୍ରହ୍ମାଣ୍ଡ ଭୂଗୋଳ'କୁ ଷୋଡ଼ଶ ଶତାବ୍ଦୀର ରଚନା ରୂପେ ଗ୍ରହଣ କରାଯାଇପାରେ । ଏହି ଗ୍ରନ୍ଥର ପ୍ରସିଦ୍ଧି ଯୋଗୁଁ ପରବର୍ତ୍ତୀ ଯୁଗର ଲେଖକମାନେ 'ବ୍ରହ୍ମାଣ୍ଡ ଭୂଗୋଳ' ନାଁ ଦେଇ ଗ୍ରନ୍ଥ ଲେଖି

ପ୍ରଚାର କରିଛନ୍ତି । ଚାରୋଟିଯାକ ଗ୍ରନ୍ଥର ତୁଳନାତ୍ମକ ଆଲୋଚନାରୁ ଏହାହିଁ ପ୍ରମାଣିତ ହୁଏ ।

ଏସବୁ ଗ୍ରନ୍ଥର ତୁଳନାରୁ କେତୋଟି ଉଲ୍ଲେଖଯୋଗ୍ୟ ସମାନତା ଦେଖିବାକୁ ମିଳେ । ପ୍ରଥମ ହେଉଛି ବ୍ୟାଖ୍ୟା ପଦ୍ଧତି । ସବୁ ଗ୍ରନ୍ଥକାର ନବାକ୍ଷରୀ ବୃତ୍ତକୁ ଗ୍ରହଣ କରିଛନ୍ତି । ଜଗନ୍ନାଥ ଦାସଙ୍କର ଏକାଦଶ ସ୍କନ୍ଧ ସମସ୍ତଙ୍କର ଆଦର୍ଶ । ଗ୍ରନ୍ଥର ଅଧ୍ୟାୟ ସଂଖ୍ୟା ଅନୁଯାୟୀ 'ଭାଗବତ'ର ପଦ ନିର୍ବାଚନରେ ସମାନତା ନ ଥିଲେହେଁ କେତେକ ବିଶିଷ୍ଟ ପଦର ବ୍ୟାଖ୍ୟା ସବୁ ଗ୍ରନ୍ଥରେ ରହିଛି । ଦ୍ୱିତୀୟ ହେଉଛି ସେମାନଙ୍କ ଉଦ୍ଦେଶ୍ୟର ସମାନତା । ସମସ୍ତେ ପିଣ୍ଡକୁ ବ୍ରହ୍ମାଣ୍ଡ ସହ ତୁଳନା କରିଛନ୍ତି । 'ଭାଗବତ'ର ବିଭିନ୍ନ ପଦକୁ ସେମାନେ କାୟା ଯୋଗର ତତ୍ତ୍ୱ ବୁଝାଇବା ପାଇଁ ବ୍ୟବହାର କରିଛନ୍ତି । ସେମାନଙ୍କ ବ୍ୟାଖ୍ୟା ପଦ୍ଧତିର ଗୋଟିଏ ଉଦାହରଣ ନିମ୍ନରେ ପ୍ରଦତ୍ତ ହୋଇଛି-

କଶ୍ୟପ ଋଷି ଯଜ୍ଞମେଳା
ଷାଠି ସହସ୍ର ବାଳଖିଲ୍ୟା ।

(୫ମ ଅଧ୍ୟାୟ)

ଏହି ପଦର ଅର୍ଥ 'ସମନାଥ ସୁତ ବଳରାମ ଦାସ' ତିନି ଭାବରେ କରିଛନ୍ତି:
ପ୍ରଥମ ଅର୍ଥ-

ପୂର୍ବେ କଶ୍ୟପ ଋଷି ଥିଲେ
ଗଙ୍ଗା କୂଳରେ ତପ କଲେ ।
ଉର୍ବଶୀ ସ୍ନାନ କରି ଯାଇ
ଋଷି ଦେଖିଣ ମୋହ ହୋଇ ।
ତକ୍ଷଣେ ବିନ୍ଦୁ ଉଚ୍ଛୁଳିଲା
ଗଙ୍ଗା ବାଲିରେ ସେ ପଡ଼ିଲା ।
ବାଳକ ଯବ ପ୍ରମାଣରେ
ଜନ୍ମିଲେ ସେ ବିନ୍ଦୁ ରେଣୁରେ ।
ଷାଠୀଯେ ସହସ୍ର ବାଳୁତ
ସମସ୍ତ ହୋଇ ଉର୍ଦ୍ଧ୍ୱରେତ ।
ଋଷି ତାହାଙ୍କୁ ମନ୍ତ୍ର ଦେଲେ
ଯଜ୍ଞକୁ କାଠ ଆଣ ବୋଲେ ।
ଋଷିଙ୍କ ଆଜ୍ଞାରେ ବାଳୁତ
ଗମନ୍ତି ଉର୍ଦ୍ଧ୍ୱ ବନପଥ ।
ଯେମନ୍ତେ ତନୟେ ଗମନ୍ତି

ବନସ୍ତୁ କାଠ ସେ ବହନ୍ତି ।
ଯେକର ଦିନେ ବହୁବଳା
ଆଣନ୍ତେ ବଡ଼ କାଠ ଭେଳା ।
ଶୀବତ୍ସ ନାମ ଯେ ବୋଲାଇ
ଗଙ୍ଗା ତାଙ୍କ ପାହୁଁ ଝରଇ ।
ସେ ବତ୍ସ ଜଳରେ ବୁଡ଼ିଲେ
ଆରତେ କୃଷ୍ଣ ସୁମରିଲେ ।
ତକ୍ଷଣେ ଦିବ୍ୟ ମୂର୍ତ୍ତି ଧରି
ବାଳୁତ ସଙ୍କଟୁ ଉଦ୍ଧରି ।
ତାହାଙ୍କୁ ବର ଯାଚି ଦେଲେ
ଗୋପରେ ଗୋପୀ ହୁଏ ଭଲେ ।

ଦ୍ୱିତୀୟ ଅର୍ଥ-

ଯେନେ ବଇଶାଖ ମାସରେ
ଯଜ୍ଞ କରନ୍ତି ଗଙ୍ଗାକୂଳେ ।
ଗଙ୍ଗା ରେଣୁ ତପତି ବେଳ
ଚାଲନ୍ତି ସେ ରେଣୁର ବାଳ ।
ସେ ବତ୍ସ ବାଳୁତ ସମସ୍ତ
ପାଦକୁ ଲାଗିଲା ତପତ ।
ସମସ୍ତେ ଯେକ ମୁଖ ହେଲେ
ଆରତେ ମତେ ସୁମରିଲେ ।
ମୋ ପାଦପଦ୍ମ ଛତ୍ରକାର
ଛାୟା କରଇ ଆକାଶର ।
ତେବେ ସମସ୍ତେ ଶୀତଳରେ
ଗମିଲେ ଏ ଗଙ୍ଗା ବାଲିରେ ।

ତୃତୀୟ ଅର୍ଥ-

କାୟା ଯେ କଶ୍ୟପ ବୋଲାଇ
ବାଳଖିଲ୍ୟା ଦଶ ଦ୍ୱାର ରହି ।
ଯେ ଦେହ କାଠ ଯେ ବୋଲାଇ
ଦ୍ୱାରମାନଙ୍କେ ଶବ୍ଦ ବହି ।
ଯେ ଦିନ ଅନ୍ତକାଳ ହୋଇ

ସେ ଦିନ ଯକ୍ଷ ସେ ରହଇ ।
ସକଳ ଦ୍ୱାରକୁ ଛାଡ଼ିଲେ
ଯେକର ବାଟେ ବହିଗଲେ ।
ବିଂଶାଶୟେ ଆଙ୍ଗୁଳ କହି
ସେ କାଠ ଏଡ଼େ ଲମ୍ୱ ହୋଇ ।
ସେ ଦିନ ଉର୍ଦ୍ଧ୍ୱେ ସ୍ଥାନ କଲେ
ଶୂନ୍ୟ ବନ୍ଧ ପାଦେ ଗମିଲେ ।
ତୁ ବୋଲୁ ଶାଠୀୟେ ସହସ୍ର
କେମନ୍ତେ ବାଳେକ ବିଶେଷ ।
ଦକ୍ଷିଣ ନାସା ଦ୍ୱାରେ ପାର୍ଥ
କୋଡ଼ିଏ ସସ୍ର ଦ୍ୱାର ତତ୍ତ୍ୱ ।
ବାମ ନାସାରେ ହେ ଅର୍ଜ୍ଜୁନ
ଚାଳିଶ ସସ୍ର ଦ୍ୱାର ଯେନ ।
ଯେମନ୍ତେ ଷାଠୀୟେ ସହସ୍ର
ଗମିଲେ ସର୍ବେ ଉର୍ଦ୍ଧ୍ୱ ଦେଶ ।
ସେ ଉର୍ଦ୍ଧ୍ୱ ଦେଶ ବନ୍ଧ ପାଦ
ତହିଂରେ ସର୍ବେ ହେଲେ ଭେଦ ।

ବଳରାମ ଦାସଙ୍କ ରଚିତ ପ୍ରକାଶିତ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଏଥିରୁ ଦୁଇଟି ଅର୍ଥ ଗୃହୀତ । ପ୍ରଥମ ଅର୍ଥର ଭାଷା ପ୍ରାୟ ଏକାପରି । ତୁଳନା ପାଇଁ କେତୋଟି ପଦ ନିମ୍ନରେ ଉଦ୍ଧୃତ :

କଶ୍ୟପ ଋଷି ପୂର୍ବେ ଥିଲା,
ଗଙ୍ଗା କୂଳରେ ତପ ଗଲା ।

× × × ×

ତକ୍ଷଣେ ବିନ୍ଦୁ ଉଚ୍ଛୁଳିଲା
ସେ ବିନ୍ଦୁ ବାଲିରେ ପଡ଼ିଲା ।
ଷାଠିଏ ସହସ୍ର ବାଲିରେ
ବାଳକ ଯବ ପ୍ରମାଣରେ ।

ଏହି ଅର୍ଥରେ ଶେଷ ପଦ ଅର୍ଥାତ୍,

ତାହାକୁ ବର ଯାଚି ଦେଲେ
ଗୋପରେ ଗୋପୀ ହୁଅ ଭଲେ ।

ଏଥିରେ ନାହିଁ । ତୃତୀୟ ଅର୍ଥଟି ଭିନ୍ନ ରୂପରେ ପ୍ରକାଶ ପାଇଛି -

କାୟା ଯେ କଶ୍ୟପ ବୋଲାଇ -
ବାଳଖିଲ୍ୟା ପ୍ରକୃତି ହୋଇ ।
ରାଧାଙ୍କ ବକ୍ଷ ପାଦ ସାର
ରାଆ ଶବଦ ବେନି କର ।
ଧାଧା ଶବଦଟି ବାହାରେ
ମାଆ ଶବଦଟି ବିହରେ ।
ରାଆ ଯେ ଅମରେ ମିଳଇ
ମଅଟି ନିରାକାର କହି ।

ଜଗନ୍ନାଥ ଦାସ (୧ମ)ଙ୍କ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଏହି ବ୍ୟାଖ୍ୟାରୁ କିଛି ଲୁପ୍ତ, କିଛି ବର୍ଦ୍ଧିତ ଓ କିଛି ପରିବର୍ତ୍ତିତ ହୋଇ ପ୍ରକାଶ ପାଇଛି । ସ୍ନାନରତା ଉର୍ବଶୀଙ୍କ ରୂପରେ କଶ୍ୟପ ଋଷି ବିମୋହିତ ହୋଇ ଷାଠିଏ ସହସ୍ର ଶିଷ୍ୟଙ୍କ ଜନ୍ମର କାରଣ ହେବା ଏଥିରେ ସନ୍ଦେହ ନାହିଁ । "ତାହାଙ୍କୁ ବର ଯାଚି ଦେଲେ, ଗୋପରେ ଗୋପୀ ହୁଅ ଭଲେ" ପରିବର୍ତ୍ତିତ ହୋଇଛି । ଏଇଠି ଆଉ ଗୋଟିଏ ପ୍ରଶ୍ନର ଆରମ୍ଭ । "ଷାଠିଏ ସହସ୍ର ହୋଇଲେ, କେମନ୍ତେ ଷାଠି ସସ୍ର ହେଲେ" । ଏହକୁ ବୁଝାଇ କବି କହିଛନ୍ତି, "ଏଥିରୁ ଷୋଳ ସସ୍ର ଗୋପୀ, ଷୋଳ ସସ୍ର ଗୋପାଳ, ଷୋଳ ସସ୍ର ଗାବ ଓ ବାର ସସ୍ର ବଛା । ଏପରି ଷାଠିଏ ସସ୍ର" । କାୟାରେ ଏହି ପଦକୁ ଭେଦାଇ କବି ନିମ୍ନମତେ ବ୍ୟାଖ୍ୟା କରନ୍ତି-

କଶ୍ୟପ କାୟା ଯେ ବୋଲାଇ,
ମୁଁ ନିରାକାରରେ ମଜ୍ଜଇ ।
ରାଧାଟି ବକ୍ଷ ପାଦ ଜଳେ,
ରାଆ ଶବଦେ ନିମଜ୍ଜିଲେ ।
ରାଆ ଯେ ରାମକୁ ଭଜଇ,
ମୁଁ ନିରାକାରରେ ମଜ୍ଜଇ ।

ଜଗନ୍ନାଥ ଦାସ (୨ୟ) ମଧ୍ୟ ଦୁଇଟି ଭିନ୍ନ ସ୍ଥାନରେ ଦୁଇଟି ଅର୍ଥର ବ୍ୟାଖ୍ୟା କରିଛନ୍ତି । ଏଥିରେ ଥିବା ପ୍ରଥମ ଅର୍ଥ ହେଉଛି-

ପୂର୍ବେ କଶ୍ୟପ ଋଷି ଥିଲେ,
ଗଙ୍ଗା କୂଳରେ ତପ କଲେ ।
ଉର୍ବଶୀ ସ୍ନାନ କରି ଯାଇ,
ମୁନି ଦେଖିଣ ମୋହ ପାଇ ।

ତକ୍ଷଣେ ବିନ୍ଦୁ ଉଚ୍ଛୁଳିଲା,
ଗଙ୍ଗା ବାଲିରେଣ ପଡ଼ିଲା ।
ଷାଠିଏ ସହସ୍ର ବାଲିରେ,
ବାଳିକ ଯିବ ପ୍ରମାଣରେ ।
ଏକ ଦିନକେ ବହୁ ମେଳା,
ଆଣନ୍ତି ବହୁ କାଷ୍ଠ ଗୋଲା ।
ଶ୍ରୀବତ୍ସ ନାମ ଯେ ବୋଲାଇ,
ଗଙ୍ଗା ତାଙ୍କ ପାଦୁ ଝରଇ ।
ସେ ବକ୍ଷ ଜଳରେ ପଡ଼ିଲେ,
ସେଠାରୁ ଉଦ୍ଧରି ଧଇଲେ ।
ବୋଇନ୍ତି ପ୍ରଭୁ ଜଗନ୍ନାଥ,
ବ୍ରହ୍ମାଣ୍ଡ ଭୂଗୋଳ ଚରିତ୍ର ।
ତାହାକୁ ଯାଚି ବର ଦେଲେ,
ଗୋପରେ ଗୋପୀ ହୁଅ ଭଲେ ।
ପୂର୍ବର ଶାପ୍ୟ ସେ ପାଇଲେ,
ଯେବେ ଗୋପରେ ଗୋପୀ ହେଲେ ।

(ଷୋଡ଼ଶ ଖ୍ୟାଦି)

ଜଗନ୍ନାଥ ଦାସ (୨ୟ) ଦ୍ୱିତୀୟ ଅର୍ଥକୁ ଏହାପରେ ନ ଦେଇ ଅନ୍ୟ ପ୍ରସଙ୍ଗରେ ଦେଇଛନ୍ତି । ଦ୍ୱାଦଶ ଖ୍ୟାଦିରେ ସେ ଏହାର ବର୍ଣ୍ଣନା କରି ଲେଖିଛନ୍ତି-

କଶ୍ୟପ କାୟା ଯେ ବୋଲାଇ,
ବାଳଖିଲ୍ୟାଟି ତାର କହି ।
ଅଙ୍ଗରେ ବଳ୍ପ ପାଦ ସାର,
ଭାବ ଶବଦ ସେ ନିଜର ।
ଆୟା ଶବଦଟି ବାହାରେ,
ଉମ ଶବଦ ବେନି କରେ ।

ଏହି ତୁଳନାରୁ ଦେଖାଯିବ ଯେ, ସମନାଥ ସୁତ ବଳରାମ ଦାସଙ୍କ ରଚିତ "ବ୍ରହ୍ମାଣ୍ଡ ଭୂଗୋଳ" ସମସ୍ତଙ୍କର ଆଦର୍ଶ । ଦ୍ୱିତୀୟ ଅର୍ଥଟିକୁ ଅନ୍ୟମାନେ ପରିହାର କରିଥିଲେ ହେଁ ଏବଂ ତୃତୀୟ ରୂପଟିକୁ ଅନ୍ୟମାନେ ଭିନ୍ନରୂପେ ବ୍ୟାଖ୍ୟା କରିଥିଲେ ହେଁ ଉର୍ବଶୀ ଉପାଖ୍ୟାନକୁ ପ୍ରାୟ ସମସ୍ତେ ନକଲ କରିଛନ୍ତି । ଅନ୍ୟାନ୍ୟ ପଦ ବ୍ୟାଖ୍ୟାରେ ମଧ୍ୟ ବହୁ ସମାନତା ଦେଖିବାକୁ ମିଳେ । ତେବେ ପ୍ରଥମ ବଳରାମଙ୍କ ମୌଳିକତା ଓ

ବ୍ୟାଖ୍ୟାର ପ୍ରାଞ୍ଜଳତା ଏମାନଙ୍କ ପାଖରେ ନାହିଁ । ଏମାନେ ଭାଗବତରୁ ଅପେକ୍ଷାକୃତ ଅଧିକ ପଦର ବ୍ୟାଖ୍ୟା କରିଥିଲେହେଁ କେବଳ ଗୋଟିଏ ତତ୍ତ୍ୱକୁ ଦୋହରେଇଛନ୍ତି । ବଳରାମ ଦାସ (୧ମ) ବ୍ୟାଖ୍ୟାର ଯେଉଁ ପରମ୍ପରା ସୃଷ୍ଟି କରିଗଲେ, ଏମାନେ ତାକୁ ରକ୍ଷା କରି ଲୋକପ୍ରିୟ କରିବାରେ ଯେ ଯଥେଷ୍ଟ ସାହାଯ୍ୟ କରିଛନ୍ତି ଏଥିରେ ସନ୍ଦେହ ନାହିଁ ।

ଜଗନ୍ନାଥ ଦାସଙ୍କ 'ଭାଗବତ'ରୁ ପଦ ଗ୍ରହଣ କରି ବ୍ୟାଖ୍ୟା କରିବାରେ ସମନାଥ ଦାସଙ୍କ ପୁଅ ବଳରାମ ଦାସ ଥିଲେ ପ୍ରଥମ ପଥ ପ୍ରଦର୍ଶକ । ସେଥିପାଇଁ ନିମ୍ନରେ ତାଙ୍କ 'ବ୍ରହ୍ମାଣ୍ଡ ଭୂଗୋଳ'ର ସବିଶେଷ ଆଲୋଚନା କରାଯାଇ କବିଙ୍କ ଜୀବନ ଦର୍ଶନ ଉପରେ ଆଲୋକପାତ କରିବା ପାଇଁ ଚେଷ୍ଟା କରାଯାଇଛି ।

ବଳରାମ ଦାସ ଦେହବିଧି ତତ୍ତ୍ୱକୁ ବୁଝାଇବା ପାଇଁ ଏହି ଗ୍ରନ୍ଥର ପରିକଳ୍ପନା କରିଛନ୍ତି ଓ ଏହାର ନାମ ଦେଇଛନ୍ତି 'ବ୍ରହ୍ମାଣ୍ଡ ଭୂଗୋଳ' । ଦେହ ହେଉଛି ବ୍ରହ୍ମାଣ୍ଡ । ଏହି ଗ୍ରନ୍ଥର ଚବିଶିଟି ଅଧ୍ୟାୟରେ କବି ନିମ୍ନୋକ୍ତ ବିଷୟବସ୍ତୁର ଆଲୋଚନା କରିଛନ୍ତି ।

ପ୍ରଥମ ଅଧ୍ୟାୟ:- ଉଲଟ ବୃକ୍ଷର ବିଧାନ ।

ଦ୍ୱିତୀୟ ଅଧ୍ୟାୟ:- ଭାଗବତ ଓ ଅନ୍ୟାନ୍ୟ ଶାସ୍ତ୍ରର ସୃଷ୍ଟି ।

ତୃତୀୟ ଅଧ୍ୟାୟ:- ଷୋଳ ନାମ ।

ଚତୁର୍ଥ ଅଧ୍ୟାୟ:- ଗାୟତ୍ରୀ ମନ୍ତ୍ର ।

ପଞ୍ଚମ ଅଧ୍ୟାୟ:- ଭାଗବତ ପଦ -

"ରସଙ୍କ ମଧ୍ୟେ ଭୂମିରସ । ସର୍ବ ସଂହରଣେ ଆକାଶ" ।

ଷଷ୍ଠ ଅଧ୍ୟାୟ:- ଭାଗବତ ପଦ ।

ସପ୍ତମ ଅଧ୍ୟାୟ:- ରତ୍ନ ପାଦୁକାର ଚରିତ୍ର ।

ଅଷ୍ଟମ ଅଧ୍ୟାୟ:- ଭାଗବତ ପଦ-

"ଏଷଡ଼ ଚକ୍ର ଭେଦି ସ୍ୱରେ
ଶବଦ ଦ୍ୱାଦଶ ପ୍ରକାରେ ।

ନବମ ଅଧ୍ୟାୟ:- ଭାଗବତ ପଦ-

"କଶ୍ୟପ ଋଷି ଯଜ୍ଞମେଳା,
ଷାଠି ସହସ୍ର ବାଳଖିଲ୍ୟା ।"

ଦଶମ ଅଧ୍ୟାୟ:- ଭାଗବତ ପାଠ- ବିଦେହ ରାଜନ ।

ଏକାଦଶ ଅଧ୍ୟାୟ:- ଭାଗବତ ପାଠ- ବିଦେହ ରାଜନ ।

ଦ୍ୱାଦଶ ଅଧ୍ୟାୟ:- ଜ୍ଞାନ ତତ୍ତ୍ୱ ।

ତ୍ରୟୋଦଶ ଅଧ୍ୟାୟ:- ଭାଗବତ ପଦ-

"ସୁରେନ୍ଦ୍ର କୀରୀଟ ଅପ୍ରତ,
ତୋ ପାଦ ରେଣୁରେ ଭୂଷିତ।"

ଚତୁର୍ଦ୍ଦଶ ଅଧ୍ୟାୟ:- ଭାଗବତ ପଦ-

"ବ୍ରହ୍ମାଣ୍ଡ ଫାଟି ପାଦ ତଳେ,
ଗଙ୍ଗା ପଡ଼ିଲା ଅନ୍ତାଳେ।"

ପଞ୍ଚଦଶ ଅଧ୍ୟାୟ:- ଭାଗବତ ପଦ-

"ଅଜାତପରି ଘୋରବନେ,
ମାତା ଛୋଡ଼ଇ ଅନୁକ୍ଷଣେ।"

ଷୋଡ଼ଶ ଅଧ୍ୟାୟ:- କୂର୍ମ ପୁରାଣ ପଦ।

ସପ୍ତଦଶ ଅଧ୍ୟାୟ:- ଜ୍ଞାନ ତତ୍ତ୍ୱ।

ଅଷ୍ଟାଦଶ ଅଧ୍ୟାୟ:- ଭାଗବତ ପଦ-

"ତ୍ରିନବ ଏକାଦଶ ଦିନେ,
ନଶୁଣି ତୁମ୍ଭର ବଚନେ।"

ଉନବିଂଶ ଅଧ୍ୟାୟ:- ଦେହରେ ପବନର ସ୍ଥିତି-

"ଦେଖ ଏ ଯେତେ ନଦ ନଦୀ
ପ୍ରବାହେ ମିଳନ୍ତି ଜଳଧି।" (ପୃ- ୧୦୦)

ବିଂଶ ଅଧ୍ୟାୟ:- ଜ୍ୟୋତି ଦରଶନ।

ଏକବିଂଶ ଅଧ୍ୟାୟ:- ଭାଗବତ ପଦ-

"ମନିଷ୍ୟ ମୁଣ୍ଡେ ମୃତ୍ୟୁବସେ,
ଆମ୍ଭାକୁ ଅନୁକ୍ଷଣେ ଗ୍ରାସେ"।

ଦ୍ୱାବିଂଶ ଅଧ୍ୟାୟ:- ଭାଗବତ ପଦ-

ତ୍ରୟୋବିଂଶ ଅଧ୍ୟାୟ:- ଭାଗବତ ପଦ-

"ନମଇ ନୃସିଂହ ଚରଣ,
ଅନାଦି ପରମ କାରଣ"।

ଚତୁର୍ବିଂଶ ଅଧ୍ୟାୟ- ଭାଗବତ ପଦ-

"ଅଣିମା ଆଦି ଅଷ୍ଟନିଧି
ମୁକ୍ତି ଲକ୍ଷଣ ଯେ ପ୍ରସିଦ୍ଧି।"

ଗ୍ରନ୍ଥର ଉପରୋକ୍ତ ବିଭାଗରୁ ଜଣାପଡ଼ିବ ଯେ, କବି ଗ୍ରନ୍ଥର ୨୪ ଅଧ୍ୟାୟ ମଧ୍ୟରୁ ୧୫ଟି ଅଧ୍ୟାୟରେ ଜଗନ୍ନାଥ ଦାସଙ୍କ ଭାଗବତରୁ ପଦ ଗ୍ରହଣ କରି ସେ ସବୁର ବ୍ୟାଖ୍ୟା

କରିଛନ୍ତି । ଭାଗବତକୁ ବ୍ରହ୍ମାଣ୍ଡରୂପେ ପରିକଳ୍ପନା କରିଥିବାର କୌଣସି ସୂଚନା ଏଥିରେ ନାହିଁ । ଜଗନ୍ନାଥଙ୍କ ଭାଗବତରୁ ପଦ ଗ୍ରହଣ କରି ବ୍ୟାଖ୍ୟା କରିଥବାରୁ ଏହି ଗ୍ରନ୍ଥ ଯେ ଭାଗବତର ପରେ ରଚିତ ଏହା ସ୍ପଷ୍ଟ । 'ଜଗନ୍ନାଥ ଚରିତାମୃତ'ର ବିବରଣୀ ଉପରେ ବିଶ୍ୱାସ କଲେ ଜଗନ୍ନାଥ ଦାସଙ୍କ ରଚନାକାଳ ହେଉଛି, ୧୫୧୬ ରୁ ୧୫୧୭ ଖ୍ରୀଷ୍ଟାବ୍ଦ । ଚୈତନ୍ୟଙ୍କ ଆଗମନ ପରେ ଏହି ଗ୍ରନ୍ଥର ଲୋକପ୍ରିୟତା ବହୁ ଭାବେ ବୃଦ୍ଧି ପାଇଥିବା ଅନୁମେୟ । ବଳରାମ ଦାସ ଜ୍ଞାନଯୋଗ, ବିଶେଷକରି ଦେହବିଧି ତତ୍ତ୍ୱ ଉପରେ ବିଶ୍ୱାସ କରୁଥିବାରୁ 'ଭାଗବତ'ର କେତୋଟି ପଦକୁ ସେହି ଦୃଷ୍ଟିରୁ ବ୍ୟାଖ୍ୟା କରିଛନ୍ତି । ଏଥିରେ ଲେଖକଙ୍କର ଉଦ୍ଦେଶ୍ୟ ଅତି ସ୍ପଷ୍ଟ । 'ଭାଗବତ'ର ପ୍ରତିପାଦିତ ତତ୍ତ୍ୱ, ତାଙ୍କ ଆଚରିତ ଦେହବିଧି ତତ୍ତ୍ୱଠାରୁ ସ୍ୱତନ୍ତ୍ର ନୁହେଁ । ଏଥିରେ ବହୁ ସାଦୃଶ୍ୟ ଅଛି । ବରଂ 'ଭାଗବତ'ର ଏକାଦଶ ସ୍କନ୍ଧ ହେଉଛି ଦେହବିଧି ତତ୍ତ୍ୱର ଏକ ବ୍ୟାଖ୍ୟା ଗ୍ରନ୍ଥ । ନିଜ ପଥର ସହଯାତ୍ରୀମାନଙ୍କ ଆଗରେ ଏହା ହିଁ ଦେଖାଇବା ଥିଲା ତାଙ୍କର ଉଦ୍ଦେଶ୍ୟ । ସେଥିପାଇଁ ସେ 'ଭାଗବତ'ରୁ କେତୋଟି ପଦ ଉଦ୍ଧାର କରି ରଚନା କଲେ 'ବ୍ରହ୍ମାଣ୍ଡ ଭୂଗୋଳ' ।

ଜଗନ୍ନାଥ ଦାସଙ୍କ 'ଭାଗବତ'ରୁ ପଦ ଗ୍ରହଣ କରି ବ୍ୟାଖ୍ୟା କରିବାର ଉଦ୍ଦେଶ୍ୟ ଯାହା ଥାଉନା କାହିଁକି ସେ ଯେ 'ଭାଗବତ' ସହିତ ଘନିଷ୍ଠଭାବେ ପରିଚିତ ଥିଲେ, ଏହା ହିଁ ପ୍ରମାଣିତ ହୁଏ । ଦିବାକର ଦାସ ଓ ଜଗନ୍ନାଥ ଦାସଙ୍କର ଜଣେ ଶିଷ୍ୟଙ୍କ ବର୍ଣ୍ଣିତ ବିବରଣୀ ଅନୁଯାୟୀ ବଳରାମ ଦାସ ଥିଲେ ଜଗନ୍ନାଥ ଦାସଙ୍କ ଗୁରୁ । ଅତିବଡ଼ୀ ସମ୍ପ୍ରଦାୟରେ ଏହି ଗୁରୁ ପରମ୍ପରା ହିଁ ମାନ୍ୟ । ତେବେ ବି ଏଥିରେ ସନ୍ଦେହ କରିବା ପାଇଁ ବହୁ କାରଣ ଅଛି । ପ୍ରଥମ ହେଉଛି, ଚୈତନ୍ୟଙ୍କର କୌଣସି ଶିଷ୍ୟ ନ ଥିଲେ । ଦେବକୀନନ୍ଦନ ଗୌରି ଦାସ ପଣ୍ଡିତଙ୍କୁ 'ପ୍ରଭୁର ଆଜ୍ଞାକାରୀ' ଭାବେ ବର୍ଣ୍ଣନା କରିଛନ୍ତି । ବୃନ୍ଦାବନ ଦାସଙ୍କ ଅନୁଯାୟୀ ସେ ଥିଲେ, 'ନିତ୍ୟାନନ୍ଦ ପ୍ରିୟପାତ୍ର' । ବୈଷ୍ଣବ ଗ୍ରନ୍ଥରେ ମିଳୁଥିବା ଦୁଇଜଣ ହୃଦୟାନନ୍ଦଙ୍କ ମଧ୍ୟରୁ କେହି ଗୌରୀ ଦାସଙ୍କର ଶିଷ୍ୟ ନ ଥିଲେ । ଏଥିରୁ ଜଣେ ଥିଲେ ଗଦାଧରଙ୍କ ଶିଷ୍ୟ । 'ଭକ୍ତି ରତ୍ନାକର'ରେ ଉଲ୍ଲିଖିତ ହୋଇଥିବା ହୃଦୟାନନ୍ଦଙ୍କର କୌଣସି ଗୁରୁପରମ୍ପରା ଏପର୍ଯ୍ୟନ୍ତ ମିଳିନାହିଁ । ଗୌରୀ ଦାସ ପଣ୍ଡିତ ଶିଷ୍ୟ ହୃଦୟ ଚୈତନ୍ୟଙ୍କୁ ଦିବାକାର ଦାସ ହୃଦୟାନନ୍ଦ କହିଥିବା ଅନୁମାନ କରାଯାଇପାରେ । ଓଡ଼ିଶାରେ ଶ୍ୟାମାନନ୍ଦ ଥିଲେ 'ହୃଦୟଚୈତନ୍ୟ'ଙ୍କର ଶିଷ୍ୟ । ଏ ସବୁ ବିବରଣୀକୁ ଅନୁଧ୍ୟାନ କରି ଦିବାକର ଦାସଙ୍କ ପ୍ରଦତ୍ତ ଗୁରୁପରମ୍ପରାକୁ ହୁଏତ କେହି ଅବିଶ୍ୱାସ କରିପାରନ୍ତି । ତେବେ 'ବ୍ରହ୍ମାଣ୍ଡ ଭୂଗୋଳ'ରୁ ଏତିକି ମାତ୍ର ପ୍ରମାଣିତ ହୁଏ ଯେ, ବଳରାମ ଦାସ ସେ ସମୟରେ ବୈଷ୍ଣବ ସମାଜରେ ପୂଜ୍ୟ ଜଗନ୍ନାଥ ଦାସ ଓ ତାଙ୍କ ପ୍ରଣୀତ 'ଭାଗବତ'ର ପ୍ରତିଷ୍ଠାରେ ଅନୁପ୍ରାଣିତ ହୋଇ ଏଥିରୁ କେତୋଟି ପଦକୁ ନିଜ ଗ୍ରନ୍ଥରେ ଗ୍ରହଣ କରି ବ୍ୟାଖ୍ୟା କରିଥିଲେ । ପ୍ରତ୍ୟକ୍ଷ ପ୍ରମାଣ ନ ଥିଲେ ହେଁ ପରୋକ୍ଷ ପ୍ରମାଣ ବଳରେ ଏହି

ଦୁଇ ମହାପୁରୁଷଙ୍କ ମଧ୍ୟରେ ଆନ୍ତରିକତା ଥିବା ଅନୁମାନ କରାଯାଇପାରେ ।

'ବ୍ରହ୍ମାଣ୍ଡ ଭୂଗୋଳ'ର ବର୍ଣ୍ଣନାରୁ ବଳରାମ ଦାସଙ୍କ ଆଚରିତ ସାଧନା ମାର୍ଗ ସମ୍ପର୍କରେ ବହୁ ମୂଲ୍ୟବାନ ସଂକେତ ମିଳେ । ବଳରାମ ଦାସ ଥିଲେ ଜ୍ଞାନମାର୍ଗର ପଥିକ । ସେ ସାଧକମାନଙ୍କର ବାହ୍ୟାଚାର ପ୍ରତି ଅତିଶୟ ଘୃଣାଭାବ ପ୍ରକାଶ କରିଛନ୍ତି । ତାଙ୍କ ମତରେ ଜ୍ଞାନ କହିଲେ, ପୋଥି ଜ୍ଞାନ ନ ଥିଲା । ଯେଉଁମାନେ ସାକ୍ଷୀ ଶବଦ ଶିଖି, ଦୁହା ବା ଦୋହା ବୋଲି, ଶ୍ଳୋକ ସ୍ତୁତି ପଢ଼ି, ଗୀତା କବିତା ଓ ଯନ୍ତ୍ର ଜାଣି ଜନସାଧାରଣଙ୍କ ସମ୍ମୁଖରେ ନିଜ ପାଣ୍ଡିତ୍ୟର ପ୍ରଦର୍ଶନ କରନ୍ତି ସେମାନେ ପ୍ରକୃତ ଜ୍ଞାନୀ ନୁହନ୍ତି । ବେଶ, ଭୂଷଣ ମଧ୍ୟ ଜ୍ଞାନୀର ପରିଚାୟକ ନୁହେଁ । ଲୋକଙ୍କୁ ଭଣ୍ଡାଇବା ପାଇଁ ସେମାନେ ବିଭିନ୍ନ ବେଶ ଧାରଣ କରି ସଂସାରରେ ବୁଲୁଥାନ୍ତି । କେହି ମାଳା ତିଳକ ଧାରଣ କରି ବୈଷ୍ଣବ ବେଶ ପିନ୍ଧି, କେହି ଜଟା ବାନ୍ଧି, କେହି ବିଭୂତି ବିଲୋପନ କରି, କେହି କପିଳ ବାସ ପିନ୍ଧି, କେହି ନିଶୋହା ରହି ନିଜକୁ ଜ୍ଞାନୀ ବୋଲି କହି ହୁଅନ୍ତି । ସାଧକ ପାଇଁ ଏ ସବୁ ବାହ୍ୟାଚାର ଅର୍ଥହୀନ । ଫଳାହାର, ବ୍ରତ ବାର ନିୟମ, ତୀର୍ଥ ଭ୍ରମଣ, ସାଗର ସ୍ନାନ କିମ୍ବା ବନବାସ ମଧ୍ୟ ଭଣ୍ଡାମିର ଲକ୍ଷଣ । ଏସବୁ ମିଥ୍ୟା । ଲୋକଙ୍କୁ ଠକିବାର ଗୋଟିଏ ଗୋଟିଏ ଉପାୟ । ସଂସାରରେ ଏକମାତ୍ର ସତ୍ୟ ହେଉଛି ତ୍ରିକୁଟ ସ୍ଥିତ ନିର୍ଗୁଣ ଭଗବାନ । ଭସ୍ମ ଭିତରେ ଅଗ୍ନି ପରି, ପାଣିରେ ଦେହର ପ୍ରତିବିମ୍ବ ପରି, ଦର୍ପଣରେ ମୁଖ ଦିଶିବା ପରି ବ୍ରହ୍ମଦୀପ୍ତ ଶରୀରରେ ଏହି ତ୍ରିକୁଟସ୍ଥିତ ଭଗବାନ ଆତ୍ମପ୍ରକାଶ କରନ୍ତି । ତାଙ୍କରି ଜ୍ଞାନ ହେଉଛି ପ୍ରକୃତ ଜ୍ଞାନ । ଏହି ଜ୍ଞାନ ମାର୍ଗର ପଥିକ ହେବାକୁ ହେଲେ ସାଧକକୁ ଦେହବିଧି ତତ୍ତ୍ୱ ଜାଣିବା ଆବଶ୍ୟକ । ଷଡ଼ଚକ୍ର ସାଧନା ଓ ନିଶ୍ୱାସ ପ୍ରଶ୍ୱାସର ନିୟନ୍ତ୍ରଣ ଉପରେ ଏହା ପ୍ରତିଷ୍ଠିତ ।

'ଜଗମୋହନ ରାମାୟଣ'ର ଉତ୍ତର କାଣ୍ଡରେ ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ ଜ୍ଞାନଯୋଗର ଯେଉଁ ବ୍ୟାଖ୍ୟା ଶୁଣାଇଛନ୍ତି, ତାହା 'ବ୍ରହ୍ମାଣ୍ଡ ଭୂଗୋଳ'ରେ ପ୍ରତିପାଦିତ ମାର୍ଗଠାରୁ ସ୍ୱତନ୍ତ୍ର ନୁହେଁ । ଲକ୍ଷ୍ମଣଙ୍କ ମତରେ, ଜ୍ଞାନଯୋଗ ସାଧନା କଲେ ମଣିଷ ଦେହ ଘେନି ପର ପୁରକୁ ଯାଏ । ଦଇବୀ ମାୟାରୁ ଉଦାସ କରି ଜୀବକୁ ପରମହଂସ ପାଖରେ ଖଟାଇବା ଏହାର ଉଦ୍ଦେଶ୍ୟ । ଶୂନ୍ୟ ମଧ୍ୟରେ ଶୂନ୍ୟର ସ୍ଥିତି । ଏହା ଦର୍ପଣର କାନ୍ତି ପୁଣି ଅଗ୍ନିର ଜ୍ୟୋତ୍ସ୍ନା ସଦୃଶ୍ୟ । ଶରୀରରେ ଥିବା ବ୍ରହ୍ମ ପୁରୁଷକୁ ଚିହ୍ନିବା ପ୍ରତ୍ୟେକ ସାଧକର ଲକ୍ଷ୍ୟ ହେବା ଉଚିତ । ଏହାହିଁ ହେଉଛି ଆତ୍ମପରଚେ ଯୋଗ । ଆତ୍ମାକୁ ଚିହ୍ନିଲେ ବ୍ରହ୍ମାଣ୍ଡକୁ ଚିହ୍ନିବା ସହଜ ହୋଇଯାଏ । କବିଙ୍କ ଭାଷାରେ, "ଆତ୍ମା ପରଚେ ହୋଇଲେ ନ ଛାଡ଼ଇ ପିଣ୍ଡ, ଆପକୁ ଆପ ଚିହ୍ନିଲେ ଚିହ୍ନିଲ ବ୍ରହ୍ମାଣ୍ଡ" । 'ବ୍ରହ୍ମାଣ୍ଡ ଭୂଗୋଳ'ର ବ୍ୟାଖ୍ୟାରେ ଏହି ତତ୍ତ୍ୱ ନିହିତ । ଏହାହିଁ ହେଉଛି ବଳରାମ ଦାସଙ୍କ ସାଧନ ମାର୍ଗ ।

ମଣିଷ ଦେହରେ ଜ୍ଞାନ ଅଛି, ଅଜ୍ଞାନ ବି ଅଛି । ଜନ୍ମକାଳରେ ସେ ଅଷ୍ଟନିଧିକୁ ସାଙ୍ଗରେ ଧରି ଆସିଥାଏ । ଏହା ହେଉଛି ମୁକ୍ତିର ଲକ୍ଷଣ । 'ଭାଗବତ'ରେ ଏହାକୁ ଭକ୍ତି ଲକ୍ଷଣ କୁହାଯାଇଛି । ଶରୀରରେ ଏହି ଅଷ୍ଟନିଧି ଚାରି ସ୍ଥାନରେ ରହିଛି । ଯେଉଁ ଜିହ୍ୱା ଭଗବାନଙ୍କ ନାମାମୃତ ପାନ କରେ ସେହି ପୁଣି ସଂସାରରେ ଭୋଗ ଲାଳସାରେ ଲିପ୍ତ ହୁଏ । ନାସା ବାସନା ଓ ଗନ୍ଧ ଉଭୟ ଆଘ୍ରାଣ କରେ । ଚକ୍ଷୁ ଭଗବାନଙ୍କ ଦର୍ଶନର ସୌଭାଗ୍ୟ ପ୍ରାପ୍ତ ହୁଏ । ପୁଣି ସେହି ଚକ୍ଷୁ ଦ୍ୱାରା ସଂସାରରେ ଯାବତୀୟ କୁମାର୍ଗରେ ମଣିଷ ପଥଭ୍ରଷ୍ଟ ହୁଏ । ସେହିପରି କର୍ଣ୍ଣ ମଧ୍ୟ ଦୁଇଟି ନିଧିର ଆଶ୍ରୟସ୍ଥଳ । ଏହା ଭଗବାନଙ୍କ ନାମ ଶ୍ରବଣ କରେ ପୁଣି ଜଗତରେ ଖରାପ କଥା ବି ଶୁଣେ । ଏହି ସବୁ ଇନ୍ଦ୍ରିୟକୁ ଖରାପ କଥାରୁ ମୁକ୍ତ କରି ଭଲ ବାଟକୁ ଆଣି ପାରିଲେ ସାଧକର ପଥ ସୁଗମ ହୁଏ ଓ ସେ ନିଜକୁ ଭଗବାନଙ୍କ ନାମ ଜପ, ଭଗବାନଙ୍କ ରୂପ ଦର୍ଶନ ଓ ଭଗବାନଙ୍କ କଥା ଶ୍ରବଣରେ ନିଯୁକ୍ତ କରେ । ''ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ'' ପଦକୁ ବ୍ୟାଖ୍ୟା କରି ବଳରାମ ଦାସ କୁହନ୍ତି, ଅନାଦି ହେଉଛି ମାୟା ଶକ୍ତି । ଅଶେଷ ବ୍ରହ୍ମାଣ୍ଡର ସ୍ରଷ୍ଟା ନିଜର ମାୟା ବଳରେ ଭକ୍ତି ପଥକୁ ନିରୋଧ କରି ରଖେ । ସେଥିପାଇଁ କବି କହିଛନ୍ତି ''ସେ ଯେବେ ପଥ ନ ଛାଡ଼ିବ, ଭଗତ କି ରୂପେ ଗମିବ'' । ତେଣୁ ସାଧକକୁ ଅଜ୍ଞାନ ବା ମାୟାରୁ ନିଜକୁ ମୁକ୍ତ କରି ଭଗବାନଙ୍କ ଆଶ୍ରା ନେବା ଉଚିତ । ଭକ୍ତ ବା ସାଧକର ଅବସ୍ଥାକୁ କବି ତିନୋଟି ଦୃଷ୍ଟାନ୍ତ ଦେଇ ବୁଝାଇଛନ୍ତି । ଅଜାତପକ୍ଷୀ, ଗୋବତ୍ସ ଓ ପତିବ୍ରତା ନାରୀ । ଅଜାତପକ୍ଷୀ ହେଉଛି ଉଡ଼ି ନ ପାରୁଥିବା ପକ୍ଷୀଶାବକ । ମାତା ଓ ପିତା ଖାଦ୍ୟ ଅନ୍ୱେଷଣରେ ବହୁ ଦୂରକୁ ଯାଇ ଫେରିବାରେ ବିଳମ୍ବ ହେଲେ ପକ୍ଷୀଶାବକର ଉତ୍କଣ୍ଠା ବୃଦ୍ଧି ପାଏ; କିନ୍ତୁ ଉଡ଼ିବା ଶକ୍ତି ନଥିବାରୁ ସେ ସେଇ ବସାରେ ଅପେକ୍ଷା କରିବାକୁ ବାଧ ହୁଏ । ଭକ୍ତର ଅବସ୍ଥା ସେହିପରି । ଉଡ଼ିବା ଶକ୍ତି ତା'ର ନାହିଁ । ସେ ନିରାଶ୍ରୟ । ଭଗବାନଙ୍କ ଅହେତୁକ କୃପା ହିଁ ତା ଜୀବନ ପଥର ଏକମାତ୍ର ସମ୍ବଳ । ଅଜାତପକ୍ଷୀ ମାତାକୁ ଅବିରତ ଧ୍ୟାନ କରିବା ପରି ଭକ୍ତ ନିଜର ପାଣ୍ଡିତ୍ୟ, ଅହମିକା, ବିଷୟ ଲାଳସା ତ୍ୟାଗ କରି ଭଗବାନଙ୍କ ପାଦତଳେ ନିଜକୁ ସମର୍ପଣ କରି ଭାଗବତ ଚିନ୍ତାରେ ଆତ୍ମନିୟୋଗ କଲେ ସେ ପ୍ରକୃତ ପଥର ସନ୍ଧାନ ପାଏ । 'ଭାଗବତ'ରେ ମଧ୍ୟ ଅଛି, ''ବିଷ୍ଣୁ ଚରଣେ ଚିତ୍ତ ଜଡ଼ି, ଭଜ ତୁ ସର୍ବ ଧର୍ମ ଏଡ଼ି'' । (ପୃ-୧୦୬) କ୍ଷୁଧାର୍ଥୀ ବାଛୁରୀର ଏକମାତ୍ର ଆଶ୍ରା ହେଉଛି ମାଆର ଥନ । ସେ ତା' ପାଇଁ ବିକଳ । ଭକ୍ତ ମଧ୍ୟ ଏକଥା ଜାଣି ରଖିବା ଉଚିତ୍ ଯେ ଭଗବାନ ହେଉଛନ୍ତି ଏକମାତ୍ର ଆଶ୍ରୟ । 'ଭାଗବତ'ରେ ଶ୍ରୀକୃଷ୍ଣ ଭକ୍ତ ଉଦ୍ଧବକୁ ଉପଦେଶ ଦେଇ କହିଛନ୍ତି-

ଏଣୁ ମୁଁ ପରମ ଆଶ୍ରୟ,
ସର୍ବ ଜଗତ ମୋର ଦେହ ।

ସମସ୍ତ ଗତି ମୁକ୍ତି ସାର,
ମୁଁ ଜୀବ ଆତ୍ମାର ଗୋଚର ।

ବଳରାମ ଦାସଙ୍କ ତୃତୀୟ ଦୃଷ୍ଟାନ୍ତ ହେଉଛି ପତିବ୍ରତା ନାରୀର ସ୍ୱାମୀ-ସେବା । ସ୍ୱାମୀ ତା ଜୀବନର ଏକମାତ୍ର ଧ୍ୟେୟ । ସଂସାରର ସମସ୍ତ ବିଷୟବାସନା ତାକୁ ଯେତିକି ସୁଖ ଦେଇ ନ ପାରେ ସ୍ୱାମୀର ପାଦ ସେବାରୁ ସେ ତା' ଠାରୁ ବଳି ସୁଖ ପାଏ । ତା' ପ୍ରେମର ନିବିଡ଼ତା, ଆନ୍ତରିକତା ଓ ସେବା ଭାବକୁ ଭକ୍ତ ଅନୁକରଣ କରି ଭଗବାନଙ୍କୁ ଲାଭ କରେ । ପତିବ୍ରତା ନାରୀ ପାଇଁ ତା'ର ସ୍ୱାମୀ ହେଉଛି ଏକମାତ୍ର ହର୍ତ୍ତାକର୍ତ୍ତା । ସେହି ହେଉଛି ଏକମାତ୍ର ଗତି । ସେହି ହେଉଛି ତା' ଆତ୍ମାର ଅଧୀଶ୍ୱର । ତା' ଅନ୍ତର ଓ ବାହାର ସ୍ୱାମୀ ଭାବନାରେ ପରିପୂର୍ଣ୍ଣ । ଭଗବାନ ହେଉଛନ୍ତି ଏ ଜଗତର ପତି । 'ମୁଁ ସର୍ବପତି ହୋ ଉଦ୍ଧବ' । ଭଗବାନ ମଧ୍ୟ କହିଛନ୍ତି-

ସଂସାରରେ ହର୍ତ୍ତା କର୍ତ୍ତା ମୁହିଁ,
ମୋ ବିନୁ ଆନ ଗତି ନାହିଁ ।
ମୁଁ ସର୍ବ ଆତ୍ମା ଅଧୀଶ୍ୱର,
ମୋହର ନାହିଁ ପରାପର ।

ପତିବ୍ରତା ନାରୀ ପରି ଭକ୍ତ ନିଜର ମନ, ବଚନ, କର୍ତ୍ତବ୍ୟ ସମସ୍ତଙ୍କର ପତି ଭଗବାନଙ୍କ ଠାରେ ଅର୍ପଣ କରିବା ଉଚିତ । 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଭକ୍ତର ସାଧନା ମାର୍ଗ ରୂପେ ଯୋଗ, ଜ୍ଞାନ ଓ ଭକ୍ତି ଆଲୋଚିତ । ଯୋଗ ହେଉଛି ସାତ୍ତ୍ୱିକ ଜ୍ଞାନ ବା ଭଗବଦ୍ ଜ୍ଞାନ ଲାଭର ଉପାୟ । ମନୁଷ୍ୟର ମନକୁ ରଜ, ତମ ଗୁଣରୁ ମୁକ୍ତ କରି ସାତ୍ତ୍ୱିକ ଗୁଣଯୁକ୍ତ ବା ନିର୍ଗୁଣ କରିବାକୁ ହେଲେ ଯୋଗର ଅଭ୍ୟାସ ଆବଶ୍ୟକ । ବିଦେହ ନୃପବର ଉପାଖ୍ୟାନକୁ ଦୃଷ୍ଟାନ୍ତ ଦେଇ ଏହିକଥା ହିଁ କୁହାଯାଇଛି । ଯୋଗଦ୍ୱାରା ସାଧକ ଦେହକୁ ଜିଣି ଜ୍ୟୋତି ପୁରରେ ପ୍ରବେଶଲାଭ କରେ । ସେଠି ଜ୍ଞାନ ପ୍ରଦୀପ ଜଳି ଉଠେ । ସେହି ପ୍ରଦୀପରେ ପ୍ରପଞ୍ଚ ଦେହ ନାଶ ହୁଏ ଓ ଭକ୍ତ ଭଗବାନଙ୍କ ଦର୍ଶନ ଲାଭ କରେ । ଜଗନ୍ନାଥ ଦାସଙ୍କ ଏକାଦଶ ସ୍କନ୍ଧ ମଧ୍ୟରେ ଜ୍ଞାନ ଓ ଯୋଗକୁ ଭକ୍ତିମାର୍ଗର ସାଧନ ପଥ ରୂପେ ଗ୍ରହଣ କରାଯାଇଛି । ଯେଉଁ ସାଧକମାନେ ଅଷ୍ଟାଦଶ ସିଦ୍ଧି ଲାଭ ଆଶାରେ ଯୋଗ ପଥର ଆଶ୍ରୟ ନିଅନ୍ତି ସେମାନଙ୍କ ଦିନ ବ୍ୟର୍ଥରେ କଟିଯାଏ । ସେଥିପାଇଁ ଜ୍ଞାନ ଓ ଯୋଗକୁ ଭକ୍ତିମୁଖୀ କରିବା ଉଚିତ । ତା' ହେଲେ ଅଳ୍ପ ଦିନରେ ସିଦ୍ଧି ମିଳେ । ଭାଗବତ କହିଛି-

ଏ ଅଷ୍ଟାଦଶ ସିଦ୍ଧି ଯେତେ
କିଣିତେ ସାଧନ୍ତି ମୋ ଭକ୍ତେ ।

ମୋ ନାମ ଶ୍ରବଣ କୀର୍ତ୍ତନେ
ସାଧ କରନ୍ତି ଅଳ୍ପଦିନେ ।

ପୁଣି କୁହାଯାଇଛି-

ଭକତି ମାର୍ଗେ ଜ୍ଞାନ ଯୋଗେ
ଜ୍ଞାନୀ ଲଭନ୍ତି ସିଦ୍ଧି ବେଗେ ।

ବୈଷ୍ଣବ ପୂର୍ବାଚାର୍ଯ୍ୟମାନଙ୍କ ମତରେ, ଜ୍ଞାନ ଓ ଯୋଗମିଶ୍ରା ଭକ୍ତି ଶୁଦ୍ଧ ଭକ୍ତି ନୁହେଁ । ସେମାନେ ବୈଷ୍ଣବଧର୍ମକୁ ଦୁଇ ଭାଗରେ ବିଭକ୍ତ କରନ୍ତି । ପ୍ରଥମ ହେଉଛି ଶୁଦ୍ଧ ବୈଷ୍ଣବ ଧର୍ମ ଓ ଅନ୍ୟଟି ହେଉଛି ବିଦ୍ଧ ବୈଷ୍ଣବ ଧର୍ମ । ଶୁଦ୍ଧ ବୈଷ୍ଣବ ଧର୍ମ ତତ୍ତ୍ୱ ଦୃଷ୍ଟିରୁ ଏକ ଓ ଅଭିନ୍ନ ହେଲେହେଁ ରସ ଭେଦରେ ଏହା ଚାରି ପ୍ରକାର । (୧) ଦାସ୍ୟଗତ, (୨) ସଖ୍ୟଗତ, (୩) ବାତ୍ସଲ୍ୟଗତ, (୪) ମଧୁରରସଗତ । ବିଦ୍ଧ ବୈଷ୍ଣବ ଧର୍ମକୁ ସେମାନେ ଦୁଇ ଭାଗରେ ବିଭକ୍ତ କରନ୍ତି । (୧) କର୍ମବିଦ୍ଧ ବୈଷ୍ଣବ ଧର୍ମ, ଓ (୨) ଜ୍ଞାନ ବିଦ୍ଧ ବୈଷ୍ଣବ ଧର୍ମ । କର୍ମବିଦ୍ଧ ବୈଷ୍ଣବ ଧର୍ମରେ କର୍ମ ଓ କର୍ମାଙ୍ଗର ପ୍ରାଧାନ୍ୟ ସ୍ୱୀକୃତ । ଏଥିରେ ଉପାସନା, ଭଜନ ଓ ସାଧନ ସବୁ କର୍ମାଙ୍ଗ । ଏପରିକି ବିଷ୍ଣୁ କର୍ମର ଅଧୀନ । ବିଷ୍ଣୁଙ୍କର ଅଧୀନ କର୍ମ ନୁହେଁ । ଏମାନଙ୍କୁ ସ୍ମାର୍ତ୍ତ ମତର ବୈଷ୍ଣବ କୁହାଯାଇଥାଏ । ଜ୍ଞାନ ବୈଷ୍ଣବ ଧର୍ମରେ ଅଜ୍ଞେୟ ଓ ନିର୍ବିଶେଷ ବ୍ରହ୍ମତତ୍ତ୍ୱ ହିଁ ସର୍ବୋଚ୍ଚ ତତ୍ତ୍ୱ । ଏମାନେ ସୂର୍ଯ୍ୟ, ଗଣେଶ, ଶକ୍ତି ଓ ଶିବ ବିଷ୍ଣୁର ଉପାସନା କରନ୍ତି । ଅନେକ ସମୟରେ ଏମାନଙ୍କର ଦୀକ୍ଷା ଓ ପୂଜା ରାଧାକୃଷ୍ଣ ବିଷୟକ ମଧ୍ୟ ହୁଏ । ଏମାନଙ୍କ ମତରେ, ଜ୍ଞାନ ପୂର୍ଣ୍ଣ ହେଲେ ସାକାର ଉପାସ୍ୟ ଦୂର ହୋଇଯା'ନ୍ତି ।

ବଳରାମ ଦାସଙ୍କ ଉପାସନା ମାର୍ଗ ଆପତତଃ ଜ୍ଞାନମିଶ୍ରିତ ଜଣାଯାଉଥିଲେ ହେଁ, ଶୁଦ୍ଧ ବୈଷ୍ଣବମାନଙ୍କ କଥିତ ଜ୍ଞାନ ମାର୍ଗଠାରୁ ଏହା ସ୍ୱତନ୍ତ୍ର । ଏଥିରେ ନିର୍ବିଶେଷ ବ୍ରହ୍ମର ସନ୍ଧାନ ପାଇଁ ସାଧକକୁ ପ୍ରସ୍ତୁତ ହେବାକୁ ହୁଏ; କିନ୍ତୁ ଏହି ନିର୍ବିଶେଷ ବ୍ରହ୍ମ ହେଉଛନ୍ତି ସ୍ୱୟଂ ଭଗବାନ ଓ କୃଷ୍ଣ । ସାଧନ ମାର୍ଗ ରୂପେ ଏଥିରେ ଭଜନ, କୀର୍ତ୍ତନ, ନାମ ଜପ, ପଦସେବା, ଆତ୍ମସମର୍ପଣ ପ୍ରଭୃତି ଯେପରି ମାନ୍ୟ, ଯୋଗ ସାଧନ ମଧ୍ୟ ସେହିପରି ସ୍ୱୀକୃତ । ଶୁଦ୍ଧ ବୈଷ୍ଣବଙ୍କ ପରି ଏଥିରେ ଭକ୍ତି ମୁଖ୍ୟ । ଜ୍ଞାନ, କର୍ମ ଓ ଯୋଗ ଗୌଣ । ବଳରାମ ଦାସ ଅଷ୍ଟାଦଶ ପୁରାଣ, ଛତିଶ ସ୍ମୃତି, ମନ୍ତ୍ର, ଯନ୍ତ୍ର, ବେଦଶାସ୍ତ୍ରର ଅଧ୍ୟୟନକୁ ଜ୍ଞାନ କହିନାହାନ୍ତି । ଯାଗ ଓ ଯଜ୍ଞଦ୍ୱାରା ନିର୍ବିକଳ୍ପ ବ୍ରହ୍ମର ସନ୍ଧାନ ମଧ୍ୟ ଅସମ୍ଭବ । ସେହି 'ଅଣାକାର ଶୂନ୍ୟ ଭୂଇଂ'ରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ସ୍ଥାନ ମଧ୍ୟ ନାହିଁ । ତେଣୁ ବଳରାମ ଦାସ ଜ୍ଞାନ ଓ ଯୋଗର ଆଲୋଚନା କଲାବେଳେ ଭକ୍ତିମୁଖୀ ଜ୍ଞାନ ଓ ଯୋଗର କଥା କହନ୍ତି । ତେଣୁ ଜ୍ଞାନ, ଯୋଗ ଓ ଭକ୍ତି ସମନ୍ୱିତ ସାଧନା ମାର୍ଗ ହେଉଛି ବଳରାମ

ଦାସଙ୍କ ଆଚରିତ ଧର୍ମ । ସେ ଶୁଦ୍ଧ ହୁଅନ୍ତୁ ବା ବିଦ୍ଧ ହୁଅନ୍ତୁ, କୃଷ୍ଣ ଚରିତର ଶ୍ରବଣ ଓ କୀର୍ତ୍ତନ ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ଆଶା । 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଏହାର ବହୁ ସୂଚନା ବିଦ୍ୟମାନ । କବି କହିଛନ୍ତି-

ଭଣଇ ବଳରାମ ଦାସ
କୃଷ୍ଣ ଚରିତ ମୋର ଆଶ ।

ପୁଣି,

କହଇ ବଳରାମ ଦାସ
ଜନ୍ମେ ଜନ୍ମେ ମୁଁ କୃଷ୍ଣ ଦାସ ।

କେବଳ ଶ୍ରୀକୃଷ୍ଣ ନୁହନ୍ତି, ଶ୍ରୀକୃଷ୍ଣଙ୍କର ଭୃତ୍ୟ ମଧ୍ୟ କବିଙ୍କର ଆରାଧ୍ୟ ।

ବୋଲଇ ବଳରାମ ଦାସ
କୃଷ୍ଣର ଭୃତ୍ୟ ପାଦେ ଆଶ ।

'ବ୍ରହ୍ମାଣ୍ଡ ଭୂଗୋଳ'ରେ ଜ୍ଞାନ ଓ ଯୋଗର ବିସ୍ତୃତ ଆଲୋଚନା ଦେଖି ଯେ କୌଣସି ଗୌଡ଼ୀୟ ବୈଷ୍ଣବ କବିଙ୍କୁ ଜ୍ଞାନ ବିଦ୍ଧ ବୈଷ୍ଣବର ଆଖ୍ୟା ଦେବେ ଏହା ନିସନ୍ଦେହ; କିନ୍ତୁ କବି ଦେହବିଧି ତତ୍ତ୍ୱ ଓ ପରମାର୍ଥ ବିଚାରକୁ ସମାନ ମହତ୍ତ୍ୱ ପ୍ରଦାନ କରିଛନ୍ତି । ତାଙ୍କ ମତରେ, ସାଧକ ମାଳା ତିଳକ ଧାରୀ ବୈଷ୍ଣବ ହେଉ, ନିର୍ଗୁଣପନ୍ଥୀ ହେଉ ବା ନାଥପନ୍ଥୀ ଯୋଗୀ ହେଉ, ତାହାର ଅନ୍ତଃଶୁଦ୍ଧି ଆବଶ୍ୟକ । କେବଳ ଭେକ ପିନ୍ଧିଲେ ସାଧନା ହୁଏ ନାହିଁ । ନିର୍ବିକଳ୍ପ ବ୍ରହ୍ମ ବା ଭଗବାନଙ୍କର ଦର୍ଶନ ଲାଭ କଲେ ସାଧକ ଭକ୍ତରେ ପରିଣତ ହୁଏ । ଏହା ହିଁ ଥିଲା ବଳରାମ ଦାସଙ୍କ ଆଚରିତ ସାଧନ ମାର୍ଗ । ଜଗନ୍ନାଥ ଦାସଙ୍କ ଭାଗବତରୁ ଦୃଷ୍ଟାନ୍ତ ଦେଇ ସେ ଏହି ମତର ବ୍ୟାଖ୍ୟା କରିଛନ୍ତି ।



# ବେଦାନ୍ତସାର ଗୁପ୍ତଗୀତା

ବଳରାମ ଦାସ ତଥା ତାଙ୍କର ସମସାମୟିକ ଅନ୍ୟାନ୍ୟ ଚାରିଜଣ ମହାପୁରୁଷ ଓଡ଼ିଆ ସାହିତ୍ୟର ଏକ ଗୌରବମୟ ସମୟର ପ୍ରତିନିଧିତ୍ୱ କରୁଥିଲେ ହେଁ, ସେମାନଙ୍କ ନାଁରେ ଚଳୁଥିବା ଗ୍ରନ୍ଥମାନଙ୍କ ମଧ୍ୟରୁ କେଉଁଟି ନକଲି କହିବା କଷ୍ଟକର । ସନ୍ଥ-ସାହିତ୍ୟର ପ୍ରଧାନ ଅସୁବିଧା ହେଉଛି ଯେ, ଯୁଗ ଯୁଗ ଧରି ସେମାନଙ୍କର ଆଜ୍ଞା, ବାଣୀ, ବୋଲି ଓ ଉପଦେଶ ଏକପ୍ରକାର ଭାଷା ଓ ଛନ୍ଦମାଧ୍ୟମରେ ଗୁରୁ-ଶିଷ୍ୟ ପରମ୍ପରାରେ ଚଳିଆସୁଛି । ସେ ସବୁରେ ସମାନତା ଏତେ ବେଶି ଯେ, ଗୁରୁଙ୍କ ରଚନାରୁ ଶିଷ୍ୟଙ୍କ ରଚନାକୁ ବାରି ହୁଏ ନାହିଁ । ପୁଣି ଶିଷ୍ୟ ସବୁବେଳେ ନିଜ ରଚିତ ଗ୍ରନ୍ଥକୁ ଗୁରୁଙ୍କ ନାଁରେ ଭଣିତା କରି ବା ଗୁରୁଙ୍କ ବାଣୀ ବୋଲି କହି ନିଜ ଶିଷ୍ୟସଂପ୍ରଦାୟରେ ଚଳାଇଥାନ୍ତି । ବଳରାମ ଦାସ ଓ ତାଙ୍କର ସମସାମୟିକ ଅନ୍ୟ ଚାରି ପ୍ରସିଦ୍ଧ କବିଙ୍କ ନାଁରେ ଏହିପରି ବହୁଗ୍ରନ୍ଥ ଅତି ଚତୁରତାର ସହିତ ଚଳେଇ ଦେବାର ପ୍ରଚେଷ୍ଟା ହୋଇଛି । କିନ୍ତୁ ଷୋଡ଼ଶ ଶତାବ୍ଦୀର ପଞ୍ଚସଖାଙ୍କ ରଚନାର ବୈଶିଷ୍ଟ୍ୟ ସବୁକୁ ଥରେ କଳନା କରିପାରିଲେ ପାର୍ଥକ୍ୟ ବୁଝିବାରେ ବିଶେଷ କଷ୍ଟ ହୁଏ ନାହିଁ । ବଳରାମ ଦାସଙ୍କର 'ଶ୍ରୀମଦ୍ ଭାଗବଦ୍ ଗୀତା', 'ଉଦ୍ଧବଗୀତା', 'ଛତ୍ରିଶଗୁପ୍ତ ଗୀତା'ର ପ୍ରଥମ ଅଧ୍ୟାୟ ଓ ସର୍ବୋପରି 'ଜଗମୋହନ ରାମାୟଣ'ରେ ସେ ଯୁଗର ପ୍ରବଳ ବିଶ୍ୱାସ, ବଳିଷ୍ଠ ବ୍ୟକ୍ତିତ୍ୱ ଓ ଉଦାର ଭାବନା ଯେଉଁ ଭାବରେ ଆତ୍ମପ୍ରକାଶ କରିଛି, ତାହା ପରବର୍ତ୍ତୀ ସାହିତ୍ୟରେ ଦୁର୍ଲ୍ଲଭ । ପରବର୍ତ୍ତୀ ଯୁଗର ଓଡ଼ିଆ ସାହିତ୍ୟରେ ଯେଉଁମାନେ ଓଡ଼ିଶାରେ ସନ୍ଥବାଣୀର ପ୍ରଚାର କରିଛନ୍ତି, ସେମାନଙ୍କ ପାଖରେ ନା ଅଛି ଭାଷା ନା ଅଛି ଭାବ । କେବଳ ଓଡ଼ିଶା ନୁହେଁ, ଭାରତବର୍ଷର ସବୁ ଅଞ୍ଚଳରେ ଜଣେ, ଦୁଇଜଣ ଆଦିକବିଙ୍କୁ ବାଦ୍ ଦେଲେ ଅନ୍ୟମାନେ କେବଳ ଭାବବାହକର କାର୍ଯ୍ୟ କରିଛନ୍ତି । ଗୋଟିଏ କଥାକୁ ସହଜଭାବରେ ବୁଝାଇ ନ'ପାରି ଅଦ୍ଭୁତ ବୁଦ୍ଧି-ପ୍ରୟୋଗଦ୍ୱାରା ପ୍ରକାଶ କରିଛନ୍ତି । ଥରକରେ କହି ନ'ପାରି ବାରମ୍ବାର କହିଛନ୍ତି, ସରଳ ଭାବରେ ନ କହି ବକ୍ରବାଣୀର ପ୍ରୟୋଗ କରିଛନ୍ତି । ମହାପୁରୁଷଙ୍କ ଜୀବନ-ଚିତ୍ରଣରେ ମଧ୍ୟ ସେମାନେ ଭକ୍ତର ହୃଦୟ-ସ୍ପନ୍ଦନ ଓ ସହଜ ଭାବାବେଗକୁ ନ' ଦେଖି ତାଙ୍କ ଅଲୌକିକତାର ଚିତ୍ରଣ କରି ନିଜର ଶିଷ୍ୟସଂପ୍ରଦାୟକୁ ଆଶ୍ଚର୍ଯ୍ୟ ଚକିତ କରି ରଖିଛନ୍ତି ।

ଉତ୍ତର ଭାରତୀୟ ସନ୍ଥ ପରମ୍ପରାଠାରୁ ଉତ୍କଳର ସନ୍ଥ ପରମ୍ପରାର ଇତିହାସ ସ୍ୱତନ୍ତ୍ର । ବଳରାମ ଦାସ, ଜଗନ୍ନାଥ ଦାସଙ୍କୁ କବୀର, ନାନକ, ଦାଦୁଙ୍କ ପରି ସନ୍ଥ କହି ବିଚାର କଲେ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ପ୍ରତିଭା ପ୍ରତି ଅନାଦର ପ୍ରକାଶ ପାଏ । କବୀର ଇତ୍ୟାଦି ଅଶିକ୍ଷିତ ଗୋଷ୍ଠୀର ପ୍ରତିନିଧିତ୍ୱ କରୁଥିଲେ । ସେମାନଙ୍କ

ସମ୍ମୁଖରେ ଦ୍ବିଜ-ଜାତି ନ ଥାଇ ଥିଲେ ବିଭିନ୍ନ ଇତର ଜାତି । ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ କଥା ଭିନ୍ନ । ସେମାନେ ଯେ କେବଳ ସଂସ୍କୃତରେ ପଣ୍ଡିତ ଥିଲେ ତାହା ନୁହେଁ, ପୁରୀରେ ରାଜପରିବାର ନିକଟରେ ରହିବା ଫଳରେ ସମସାମୟିକ ଦିଗ୍‌ବିଜୟୀ ପଣ୍ଡିତମାନଙ୍କର ସାନ୍ନିଧ ପାଇବାର ସୁବିଧା ସେମାନଙ୍କର ଥିଲା । ତେଣୁ କବୀରଙ୍କ ଲେଖାରେ ବ୍ରାହ୍ମଣ ବା ବେଦବିରୋଧୀ ଭାବନା ଯେତେ ତୀବ୍ର ବଳରାମ ଓ ଜଗନ୍ନାଥଙ୍କ ଗ୍ରନ୍ଥାଦିରେ ତାହା ନାହିଁ । ସେମାନେ କେବଳ କେତେକ ଇତର ଜାତିର ପ୍ରତିନିଧିତ୍ୱ କରୁ ନ ଥିଲେ । ସେମାନଙ୍କ ସମ୍ମୁଖରେ ଥିଲେ ସ୍ୱାଧୀନ ଓଡ଼ିଆ ସାମ୍ରାଜ୍ୟର ସ୍ୱାଧୀନ ନାଗରିକ । ଜାତି ବିଚାର ନ କରି ସେମାନେ ସମସ୍ତଙ୍କୁ ନିଜର ଅନୁଗାମୀ କରୁଥିଲେ । ସେତେବେଳେ ଏ ସୌଭାଗ୍ୟ କେବଳ ଓଡ଼ିଆ କବିମାନଙ୍କୁ ପ୍ରାପ୍ତ ଥିଲା । ସମଗ୍ର ଭାରତବର୍ଷରେ ସେମାନେ ହିଁ କେବଳ ସ୍ୱାଧୀନ ଭାବରେ ସ୍ୱାଧୀନ-ଭାବଧାରା ପ୍ରଚାର ପାଇଁ ସୁବିଧା ପାଇଥିଲେ । ପଞ୍ଚସଖା ଯୁଗର ଏ ବୈଶିଷ୍ଟ୍ୟକୁ ଦୃଷ୍ଟିରେ ରଖି ପଞ୍ଚସଖାଙ୍କ ନାଁରେ ଚଳୁଥିବା ଗ୍ରନ୍ଥ ସବୁର ଆଲୋଚନା କଲେ ଭଲ ଓ ଭେଲ ସହଜରେ ଜାଣି ହୋଇଯାଏ । 'ବେଦାନ୍ତସାର ଗୁପ୍ତ ଗୀତା' ଏହିପରି ଗୋଟିଏ ବିବାଦା-ସ୍ପଦ ଗ୍ରନ୍ଥ ।

'ବେଦାନ୍ତସାର ଗୁପ୍ତ ଗୀତା'କୁ ମୂଳ କରି ଆଲୋଚନା ଆରମ୍ଭ କରିବାର ଉଦ୍ଦେଶ୍ୟ ହେଉଛି ଯେ, ଏହି ଗ୍ରନ୍ଥର କତିପୟ ଉକ୍ତିକୁ ପ୍ରାମାଣିକରୂପେ ଗ୍ରହଣ କରି ଓ ତା' ଉପରେ ନିର୍ଭର କରି ଡକ୍ଟର ଆର୍ତ୍ତବଲ୍ଲଭ ଓ ପଣ୍ଡିତ ସୂର୍ଯ୍ୟନାରାୟଣ ପ୍ରଭୃତି ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ବଳରାମ ଦାସଙ୍କ କାଳ ନିର୍ଦ୍ଧାରଣ କରିଛନ୍ତି । ଆଲୋଚିତ ଅଂଶଟିର ସାର ନେଉଛି, ପ୍ରତାପରୁଦ୍ର ଦେବଙ୍କର ସପ୍ତଦଶ ଅଙ୍କ ମକର ମାସ ଶୁକ୍ଳପକ୍ଷ ଏକାଦଶୀ ଗୁରୁବାର ଦିନ (୧୫୧୦ ଜାନୁଆରୀ) ମୁକ୍ତିମଣ୍ଡପରେ ପଣ୍ଡିତମାନଙ୍କର ଏକ ସଭା ହୁଏ । ସେହି ସଭାରେ ବଳଭଦ୍ର ରାଜଗୁରୁ ଓ ପୁରନ୍ଦର ପୁରୋହିତ ପ୍ରଣବର ଜନ୍ମ ସମ୍ବନ୍ଧରେ ବ୍ରାହ୍ମଣବେଶୀ କ୍ଷୁଦ୍ର ବଳରାମ ସେମାନଙ୍କର ଶଙ୍କା ସମାଧାନ ପାଇଁ ଚେଷ୍ଟା କରନ୍ତି । ବ୍ରାହ୍ମଣମାନେ ଛଦ୍ମବେଶୀ ବଳରାମଙ୍କୁ ଚିହ୍ନିପାରି,

ତୁ ସୋମନାଥ ଶୂଦ୍ର ସୁତ
ତୁ' କହୁ ବେଦାନ୍ତ ଚରିତ ।
ତୁ' ଛାର ହୀନ ମୂଢ଼ ଜନ
ତୁ' କହୁ ବେଦାନ୍ତ ବିଧାନ ।

ଏହିପରି ଗାଳି ଦିଅନ୍ତି ଓ ଅପରାଧୀ ବଳରାମଙ୍କୁ ରାଜାଙ୍କ ସମ୍ମୁଖରେ ବିଚାର ପାଇଁ ଉପସ୍ଥିତ କରାନ୍ତି । ରାଜା ମଧ୍ୟ ବଳରାମଙ୍କୁ ଶୂଦ୍ର, ଅଜ୍ଞାନ ଓ ମୂର୍ଖରୂପେ ତିରସ୍କାର କରିଛନ୍ତି । ଅପମାନିତ, ତିରସ୍କୃତ ବଳରାମ ଏହି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାପାଇଁ ତାଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କର ଆଶ୍ରୟ ନିଅନ୍ତି । ଜଗନ୍ନାଥଙ୍କର କୃପାବଳରୁ ପରଦିନ

ପ୍ରଭାତରେ ବ୍ରାହ୍ମଣମାନଙ୍କଦ୍ୱାରା ଆନୀତ ହୋଇଥିବା ପୁରୀ ସହରର ଜନୈକ ମୂର୍ଖ, ମଉନ, ଜଡ଼ା, ବାଇ ଓ ଭିକ୍ଷୁକ ବଳରାମଙ୍କ କର ସ୍ପର୍ଶରେ ବେଦାନ୍ତ ବ୍ୟାଖ୍ୟା କରିବାକୁ ସମର୍ଥ ହୁଏ । ବଳରାମଙ୍କର ଏହି ଅଲୌକିକ ପ୍ରତିଭା ସ୍ୱଚକ୍ଷୁରେ ସନ୍ଦର୍ଶନ କରି ପ୍ରତାପରୁଦ୍ର କବିଙ୍କୁ ଶୁଦ୍ରମୁନିରୂପେ ସଂବୋଧନ କରନ୍ତି ଓ ତାଙ୍କର ଚରଣ ଧରି ବେଦାନ୍ତ ବ୍ୟାଖ୍ୟା କରିବାକୁ ଅନୁରୋଧ କରନ୍ତି । ବ୍ରାହ୍ମଣମାନେ ମଧ ସେମାନଙ୍କ ଅପରାଧ ବୁଝିପାରି ବଳରାମଙ୍କ କର ଧରି ତାଙ୍କଠାରୁ ବେଦାନ୍ତ ଶୁଣିବାପାଇଁ ଅନୁରୋଧ କରିଛନ୍ତି । ଏହିଗ୍ରନ୍ଥ ଚବିଶ ଅଧ୍ୟାୟରୁ ଜଣାଯାଏ ଯେ, ଚୈତନ୍ୟଙ୍କୁ ଗୁରୁରୂପେ ଗ୍ରହଣ କରିଥିବା ପ୍ରତାପରୁଦ୍ର, ବଳରାମଙ୍କଠାରୁ ବେଦାନ୍ତର ବିଶଦ ବ୍ୟାଖ୍ୟା ଶ୍ରବଣ କରି, ତାଙ୍କୁ ପରମଗୁରୁରୂପେ ବରଣ କରନ୍ତି ।

ଏହି ପ୍ରସଙ୍ଗର ପ୍ରାମାଣିକତା ବିଚାର କରିବା ପୂର୍ବରୁ ଗ୍ରନ୍ଥର ଆକାର ସମ୍ବନ୍ଧରେ ମିଳୁଥିବା ଉପାଦାନକୁ ବିଶ୍ଳେଷଣ କରିନେବା ଆବଶ୍ୟକ । ଗୋବିନ୍ଦ ରଥଙ୍କ ପ୍ରକାଶିତ 'ବେ.ସା.ଗୁ. ଗୀତା' ବତିଶ ଅଧ୍ୟାୟ । ଅଥଚ ବହୁ ପ୍ରାଚୀନ ପୋଥିରେ କେବଳ ଆଦ୍ୟ ସତର ଅଧ୍ୟାୟ ଦେଖିବାକୁ ମିଳେ । ତେଣୁ ଏହା ସ୍ୱାଭାବିକ ଯେ, ପ୍ରଥମେ ସତର ଅଧ୍ୟାୟ ଲେଖା ହୋଇଥିଲା ଓ ପରେ ଅବଶିଷ୍ଟ ଅଂଶ ଯୋଗ କରାଯାଇଛି । ଗ୍ରନ୍ଥ ସମ୍ବନ୍ଧରେ ଏ କଥା ମାନିନେବା ପରେ ଚୈତନ୍ୟ, ବଳରାମ ଓ ପ୍ରତାପରୁଦ୍ରଙ୍କ ସମ୍ପର୍କରେ ଥିବା ଉକ୍ତି ଆପେ ଆପେ ଉଭେଇଯାଏ । ଅନ୍ୟଭାବରେ ମଧ ଏହି ଉକ୍ତିର ଅପ୍ରାମାଣିକତା ପ୍ରମାଣ କରି ହୁଏ ।

କବି କର୍ଣ୍ଣପୁରଙ୍କ ରଚିତ 'ଚୈତନ୍ୟଚନ୍ଦ୍ରୋଦୟ' ନାଟକ, ବୃନ୍ଦାବନ ଦାସଙ୍କ 'ଚୈତନ୍ୟ ଭାଗବତ' ଓ କୃଷ୍ଣ ଦାସ କବିରାଜଙ୍କ 'ଚୈତନ୍ୟଚରିତାମୃତ'ରେ ପ୍ରଦତ୍ତ ବିବରଣୀ ଉପରେ ନିର୍ଭର କରି ଡକ୍ଟର ସୁଶୀଲ କୁମାର ଦେ, ବିମାନବିହାରୀ ମଜୁମଦାର, ଡକ୍ଟର ହରେକୃଷ୍ଣ ମହତାବ ଓ ପ୍ରଭାତ ମୁଖାର୍ଜୀ ପ୍ରମୁଖ ସମାଲୋଚକଗଣ କହନ୍ତି ଯେ, ଚୈତନ୍ୟ ଖ୍ରୀ: ୧୫୧୦, ଫେବୃୟାରୀ ମାର୍ଚ୍ଚ (ଫାଲ୍‌ଗୁନ) ମାସରେ ପ୍ରଥମଥର ପାଇଁ ଓଡ଼ିଶା ଆଗମନ କରନ୍ତି । ପୁରୀରେ ସେ କିଛିକାଳ ('ଚୈତନ୍ୟଚରିତାମୃତ' ଅନୁଯାୟୀ ତିନିମାସ, 'ଚୈତନ୍ୟଚନ୍ଦ୍ରୋଦୟ' ନାଟକ ମତରେ ଅଠରଦିନ) ଅବସ୍ଥାନ କରିବା ପରେ ଦାକ୍ଷିଣାତ୍ୟକୁ ତୀର୍ଥ ଭ୍ରମଣ ଉଦ୍ଦେଶ୍ୟରେ ଯାଇ ପ୍ରାୟ ଦୁଇବର୍ଷ ପରେ ଅର୍ଥାତ୍ ୧୫୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ପୁନର୍ବାର ଆସନ୍ତି । ସେମାନେ ଅନୁମାନ କରନ୍ତି ଯେ, ପ୍ରତାପରୁଦ୍ର ଦେବ ୧୫୧୨ ଖ୍ରୀଷ୍ଟାବ୍ଦ ପରେ ଚୈତନ୍ୟଙ୍କ ସଂପର୍କରେ ଆସିଥିବେ ।

'ଚୈତନ୍ୟ-ଭାଗବତ'ର ଲେଖକ ବୃନ୍ଦାବନ ଦାସ ମଧ କହନ୍ତି ଯେ ଚୈତନ୍ୟଙ୍କ ପ୍ରଥମ ଆଗମନ ସମୟରେ ପ୍ରତାପରୁଦ୍ର ବିଜୟନଗର ସହ ଯୁଦ୍ଧ ପାଇଁ ଦାକ୍ଷିଣାତ୍ୟକୁ ଯାଇଥିଲେ ।

ଯୁଦ୍ଧ ରସେ ଗିୟାଛେନ ବିଜୟନଗରେ
ଅତଏବ ପ୍ରଭୁ ନା ଦେଖିଲେନ ସେଇବାରେ ।

(ଚୈ. ଭା. ୩.୩. ୪୧୨)

ତେଣୁ ୧୫୧୦ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସରେ ଚୈତନ୍ୟଙ୍କୁ ଗୁରୁରୂପେ ସ୍ୱୀକାର କରିବା ଉକ୍ତି କେବଳ ଯେ ଅପ୍ରାମାଣିକ ତାହା ନୁହେଁ, ପରବର୍ତ୍ତୀ କଳ୍ପନା ।

'ବେଦାନ୍ତସାର ଗୁପ୍ତଗୀତା'ରେ ଥିବା ଗଳ୍ପ ଅଳ୍ପ ପରିବର୍ତ୍ତିତ ହୋଇ 'ଗୀତାବକାଶ' ଓ 'ବ୍ରହ୍ମ ଗୀତା' (ଅଷ୍ଟମ ଅଧ୍ୟାୟ) ପ୍ରଭୃତି ଗ୍ରନ୍ଥରେ ମଧ ଦେଖିବାକୁ ମିଳିଥାଏ । ଏକପ୍ରକାର ଘଟଣା ବାରମ୍ବାର ଜଣକ ଜୀବନରେ ହେବା ଓ ସେ ସବୁକୁ ବିଭିନ୍ନ ଭାବରେ ନିଜ ଗ୍ରନ୍ଥରେ ଲିପିବଦ୍ଧ କରିବା ପ୍ରବୃତ୍ତିକୁ ଠିକ୍‌ଭାବେ ବୁଝି ହୁଏ ନାହିଁ । ଏହାର ଏକମାତ୍ର ଉତ୍ତର ହେଉଛି, ପରବର୍ତ୍ତୀ ଯୁଗରେ ବଳରାମ ଦାସଙ୍କର ପ୍ରତିଷ୍ଠାର ସୁଯୋଗ ନେଇ ତାଙ୍କର ଅନୁପନ୍ଥୀମାନେ ନିଜର ଅନୁଗାମୀମାନଙ୍କର ସମ୍ମୁଖରେ ମହାପୁରୁଷଙ୍କର ଅଲୌକିକତା ପ୍ରଚାର କରିଛନ୍ତି । କେବଳ ବଳରାମ ଦାସ ନୁହଁନ୍ତି ଭାରତର ବହୁ ସନ୍ଥଙ୍କ ସମ୍ବନ୍ଧରେ ଏହିପରି କିମ୍ବଦନ୍ତୀ ଅଛି । ସନ୍ଥ ଜ୍ଞାନେଶ୍ୱର ବ୍ରାହ୍ମଣମାନଙ୍କ ଅନୁରୋଧରେ ନିଜର ସାଧନାର ପରୀକ୍ଷା ଦେବାକୁ ଯାଇ ଗୋଟିଏ ମଇଁଷି ମୁଣ୍ଡରେ ହାତ ରଖି, ତା' ମୁଖରୁ ବେଦ ପାଠ କରାଇଥିଲେ । ଜୀବଗୋସ୍ୱାମୀ କହନ୍ତି ଯେ, ରୂପ ଓ ସନାତନଙ୍କ ଭକ୍ତିରେ ତନ୍ମୟ ହୋଇ ନିଜେ ଶ୍ରୀକୃଷ୍ଣ ବାଳଗୋପାଳ ରୂପ ଧାରଣ କରି ପ୍ରତିଦିନ କ୍ଷୀର ଆଣି ଦେଇଯାନ୍ତି । 'ଚୈତନ୍ୟ ଚରିତାମୃତ'ର ଲେଖକ କୃଷ୍ଣଦାସ କବିରାଜ ଚୈତନ୍ୟଙ୍କ ସମ୍ବନ୍ଧରେ ବହୁ ଅଲୌକିକ ଘଟଣାର ଉଲ୍ଲେଖ କରିଛନ୍ତି । ବଳରାମ ଦାସଙ୍କ ଅଲୌକିକତା ଅନ୍ୟ ବହୁ ଗ୍ରନ୍ଥରେ ପ୍ରଚାରିତ ହୋଇଛି । 'ପଣସଚୋରୀ', 'ବଟ ଅବକାଶ', 'ଭାବ ସମୁଦ୍ର' ଏହାର ଉଦାହରଣ ।

ଐତିହାସିକ ଦୃଷ୍ଟିରୁ ପ୍ରସଙ୍ଗଟିର ମୂଲ୍ୟ ହେଉଛି ଯେ, ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କ ପୁରୀ ଆଗମନ ପରେ ଚୈତନ୍ୟ ଓ ବାସୁଦେବ ସାର୍ବଭୌମଙ୍କ ମଧ୍ୟରେ ବାରଦିନ ବ୍ୟାପୀ ବେଦାନ୍ତ ଆଲୋଚନା ହୁଏ, ଓ ଶେଷରେ ବାସୁଦେବ ସାର୍ବଭୌମ ପରାସ୍ତ ହୋଇ ଚୈତନ୍ୟଙ୍କର ଶିଷ୍ୟତ୍ୱ ସ୍ୱୀକାର କରନ୍ତି । ଏହି ଘଟଣା ସେ ସମୟର ଭକ୍ତ-ମଣ୍ଡଳୀରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ସ୍ୱାଭାବିକ । ପରବର୍ତ୍ତୀ ଯୁଗରେ ବଳରାମଙ୍କୁ ବେଦ-ବେଦାନ୍ତ-ପାରଙ୍ଗମ ମହାପୁରୁଷ ରୂପେ ଚିତ୍ରିତ କରିବାକୁ ଲାଳାୟିତ ଥିବା ଭକ୍ତମାନେ ଚୈତନ୍ୟଙ୍କ ଶ୍ରେଷ୍ଠତ୍ୱ ପ୍ରମାଣ କରୁଥିବା ଗଳ୍ପକୁ ବଳରାମଙ୍କ ପାଇଁ ପ୍ରୟୋଗ କରନ୍ତି ।

ନେଲୋର ଓ ସିଂହାଚଳମ୍‌ରୁ ମିଳୁଥିବା ପ୍ରତାପରୁଦ୍ରଙ୍କ ବିଭିନ୍ନ ଶିଳାଲେଖରୁ ଜଣାଯାଏ ଯେ, ସେ ୧୫୧୦ ଖ୍ରୀଷ୍ଟାବ୍ଦ ଜାନୁୟାରୀ, ଅକ୍ଟୋବର ଓ ନଭେମ୍ବର ମାସରେ

ଏହିସବୁ ଅଞ୍ଚଳରେ ଶିଳାଲେଖମାନ ଉତ୍କୀର୍ଣ୍ଣ କରିଥିଲେ । ଐତିହାସିକ ପ୍ରଭାତ ମୁଖାର୍ଜୀ ଅନୁମାନ କରନ୍ତି ଯେ, ବିଜୟନଗର ରାଜାଙ୍କ ଆକ୍ରମଣରୁ ନିଜ ଦେଶକୁ ନିରାପଦ ରଖିବା ପାଇଁ ପ୍ରତାପରୁଦ୍ର ୧୫୧୦ ଖ୍ରୀଷ୍ଟାବ୍ଦରେ (ଜାନୁୟାରୀ ଠାରୁ ଡିସେମ୍ବର) ପର୍ଯ୍ୟନ୍ତ ନିଜ ରାଜ୍ୟର ଦାକ୍ଷିଣାତ୍ୟ ସୀମାରେ ଅବସ୍ଥାନ କରୁଥିଲେ । ତେଣୁ ୧୫୧୦ ଖ୍ରୀଷ୍ଟାବ୍ଦ ଜାନୁୟାରୀରେ ପୁରୀରେ ରହି ବଳରାମଙ୍କ ଠାରୁ ବେଦାନ୍ତ ଶୁଣିବା ପରବର୍ତ୍ତୀ କଳ୍ପନା ବ୍ୟତୀତ ଆଉ କିଛି ହୋଇ ନ ପାରେ ।

ଏହି ପ୍ରସଙ୍ଗରୁ ଆଉ ଦୁଇଟି ଉଲ୍ଲେଖର ଆଲୋଚନା କରାଯାଇପାରେ । ପ୍ରଥମ ହେଉଛି ମୁକ୍ତିମଣ୍ଡପର ସୃଷ୍ଟି । ଡକ୍ଟର ମହତାବଙ୍କ ମତରେ ପ୍ରତାପରୁଦ୍ର ମୁକ୍ତିମଣ୍ଡପର ପ୍ରତିଷ୍ଠା କରିଥିଲେ ହେଁ ଏହାର ବ୍ୟବସ୍ଥିତ ରୂପ ରାମଚନ୍ଦ୍ରଦେବଙ୍କ ଦ୍ୱାରା ପ୍ରଦତ୍ତ ହୁଏ । ମାନସିଂହଙ୍କ ସ୍ତ୍ରୀ ଗୌରୀ ଦେବୀ ଏହି ସଭାପାଇଁ ୧୫୯୫ ଖ୍ରୀଷ୍ଟାବ୍ଦରେ ଗୋଟିଏ ଗୃହ ନିର୍ମାଣ କରିବା ପରେ ଏହାକୁ ବର୍ତ୍ତମାନର ସମ୍ମାନ ଓ ଗୌରବ ପ୍ରାପ୍ତ ହୁଏ । 'ବେଦାନ୍ତସାର ଗୁପ୍ତଗୀତା'ରେ ମୁକ୍ତିମଣ୍ଡପର କେବଳ ଯେ ଉଲ୍ଲେଖ ଅଛି ତାହା ନୁହେଁ, ଏହାକୁ ସୁଧର୍ମା ସଭା ସହିତ ଚିହ୍ନିତ କରାଯାଇଛି ।

ମୁକ୍ତିମଣ୍ଡପକୁ ସୁଧର୍ମାସଭା କହିବାପରି, ଜଗନ୍ନାଥ ଧାମକୁ ଅଯୋଧ୍ୟା, ମଥୁରା, ଦ୍ୱାରାବତୀ ପ୍ରଭୃତି ତୀର୍ଥଠାରୁ ଶ୍ରେଷ୍ଠରୂପେ ପ୍ରମାଣ କରି ଏହାକୁ ନିତ୍ୟବୈକୁଣ୍ଠ ବା ଗୋଲକ ସହ ଅଭିନ୍ନରୂପେ ପ୍ରତିପାଦିତ କରିବା 'ବେଦାନ୍ତସାର ଗୁପ୍ତଗୀତା'ର ମୁଖ୍ୟ ଉଦ୍ଦେଶ୍ୟ । ଏହି ଗ୍ରନ୍ଥରେ ବୃନ୍ଦାବନକୁ ତିନି ଭାଗରେ ବିଭକ୍ତ କରାଯାଇଛି - ରହସ୍ୟ ବୃନ୍ଦାବନ - ଯାଜପୁର, ସଫଳ ବୃନ୍ଦାବନ - ଖଣ୍ଡଗିରୀ, ଓ ରମ୍ୟକ ବୃନ୍ଦାବନ - ପୁରୀ । ଭାରତର ସମସ୍ତ ଅର୍ଥ ଜଗନ୍ନାଥ ଧାମରୁ ସୃଷ୍ଟି ହୋଇଥିବା କୁହାଯାଇଛି । ଗୋଲକର ବର୍ଣ୍ଣନା ଯେ କେବଳ ଓଡ଼ିଆ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ତାହା ନୁହେଁ, ଗୌଡ଼ୀୟ ବୈଷ୍ଣବଧର୍ମର ଅନ୍ୟତମ ଶାସ୍ତ୍ରକାର ଜୀବଗୋସ୍ୱାମୀ 'ଷଟ୍‌ସନ୍ଦର୍ଭ' ଗ୍ରନ୍ଥରେ ଗୋଲକର ମହିମା ବିସ୍ତାରପୂର୍ବକ ବର୍ଣ୍ଣନା କରି ଭଗବାନଙ୍କ ପ୍ରକଟ ଓ ଅପ୍ରକଟ ଲୀଳାର ପାର୍ଥକ୍ୟ ଦର୍ଶାଇଛନ୍ତି । ବୃନ୍ଦାବନର ମହିମା ବହୁଦିନୁ ପ୍ରଚଳିତ ଥିଲେ ହେଁ ଚୈତନ୍ୟଙ୍କ ସନ୍ନ୍ୟାସଗ୍ରହଣ (ଖ୍ରୀ: ୧୫୧୦ - ଜାନୁୟାରୀ) ପରେ ଏହାର ପୁନଃ ପ୍ରତିଷ୍ଠା ହୁଏ । ଚୈତନ୍ୟଙ୍କ ଆଦେଶକ୍ରମେ ତାଙ୍କ ଅନୁଗାମୀ ଗୋସାଇଁମାନେ ବୃନ୍ଦାବନରେ ଅବସ୍ଥାନ କରି ଗୌଡ଼ୀୟ ବୈଷ୍ଣବଧର୍ମକୁ ଶାସ୍ତ୍ରୀୟରୂପ ଦାନ କରନ୍ତି । ବର୍ତ୍ତମାନର ବୃନ୍ଦାବନ ଏହି ବଙ୍ଗୀୟ ବୈଷ୍ଣବମାନଙ୍କର କୀର୍ତ୍ତି । 'ଜଗନ୍ନାଥ ଚରିତାମୃତ' ରଚୟିତା ଦିବାକର ଦାସଙ୍କ ମତରେ, ଚୈତନ୍ୟଙ୍କର ଜଗନ୍ନାଥ ଧାମ ପ୍ରତି ଅନୁରକ୍ତି ଓ ଓଡ଼ିଆ ବୈଷ୍ଣବ-ପ୍ରୀତି ଭକ୍ତମାନଙ୍କ ମନରେ ଓଡ଼ିଆ ବୈଷ୍ଣବମାନଙ୍କ ପ୍ରତି ବିଦ୍ୱେଷ ଓ ଈର୍ଷାଭାବ ସୃଷ୍ଟି କରେ । ସେମାନେ କେବଳ ରଥଯାତ୍ରା ବ୍ୟତୀତ ଅନ୍ୟ ସମୟରେ ବୃନ୍ଦାବନରେ ରହିବାକୁ ଆରମ୍ଭ

କଲେ । ଏଇଠୁ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବମାନଙ୍କ ମଧ୍ୟରେ ବିଭେଦର ସୃଷ୍ଟି । ଉତ୍କଳୀୟମାନେ ଜଗନ୍ନାଥ ଓ ଜଗନ୍ନାଥ ଧାମକୁ ଶ୍ରେଷ୍ଠ କହନ୍ତି । ଏହାକୁ ପ୍ରତିପାଦନ କରବା ପାଇଁ ଓଡ଼ିଶାରେ ଓ ବୃନ୍ଦାବନରେ ଗ୍ରନ୍ଥମାନ ରଚିତ ହୁଏ । 'ବେଦାନ୍ତସାର ଗୁପ୍ତ ଗୀତା' ଏହିପରି ଏକ ପ୍ରଚେଷ୍ଟାର ଫଳ । ଦିବାକର ଦାସଙ୍କ ଉକ୍ତିକୁ ପ୍ରାମାଣିକରୂପେ ଗ୍ରହଣ କରି କୁହାଯାଇପାରେ ଯେ, ଚୈତନ୍ୟଙ୍କ ଓଡ଼ିଶା ଅବସ୍ଥାନର ବହୁବର୍ଷ ପରେ 'ବେଦାନ୍ତସାର ଗୁପ୍ତ ଗୀତା' ରଚିତ ହୋଇଥିବ । ତେଣୁ ଏଥିରେ ଥିବା ସମୟ କାଳ୍ପନିକ ।

ଭାଷା ଦୃଷ୍ଟିରୁ ମଧ୍ୟ ବେଦାନ୍ତସାର ଗୁପ୍ତଗୀତା ଓଡ଼ିଆ ଭାଗବତଦ୍ୱାରା ପ୍ରଭାବିତ । କେବଳ ନବାକ୍ଷରୀ ଛନ୍ଦ ନୁହେଁ ଭାଷାରେ ମଧ୍ୟ ସମାନତା ପରିଦୃଷ୍ଟ ହୁଏ ।

କହଇ ଜଗନ୍ନାଥ ଦାସ । ଭାଷା ପ୍ରବନ୍ଧେ ଭାଗବତ ॥

ପରି, କହଇ ବଳରାମ ଦାସ । ଭାଷା ପ୍ରବନ୍ଧେ ବେଦତତ୍ତ୍ୱ ॥

ପଂକ୍ତି ବାରମ୍ବାର ଦେଖିବାକୁ ମିଳେ । ବଳରାମ ଦାସଙ୍କ ପ୍ରତିଭା ଅନନ୍ୟ ସାଧାରଣ । 'ଜଗମୋହନ ରାମାୟଣ', 'ଉଦ୍ଧବ ଗୀତା', 'ଶ୍ରୀମଦ୍ ଭାଗବତ ଗୀତା' ଓ 'ଛତ୍ରିଶଗୁପ୍ତ ଗୀତା' (୧ମ ଅଧ୍ୟାୟ)ର ଭାଷା, ଭାବ ଓ ଛନ୍ଦ ଏହାର ପ୍ରକୃଷ୍ଟ ଉଦାହରଣ । 'ଜଗନ୍ନାଥ ଚରିତାମୃତ' ଅନୁଯାୟୀ ବଳରାମ ଦାସ ହେଉଛନ୍ତି ଜଗନ୍ନାଥ ଦାସଙ୍କର ଗୁରୁ । ଜଗନ୍ନାଥ ଦାସ ଚୈତନ୍ୟଙ୍କ ଆଗମନ ବେଳକୁ (୧୫୧୦ ଖ୍ରୀଷ୍ଟାବ୍ଦ) ଭାଗବତ ରଚନା କରୁଥିଲେ । ଯଦି ଏ କଥା ଗ୍ରହଣ କରାଯାଏ ଯେ ଗୁରୁ ବଳରାମ ଶିଷ୍ୟ ଜଗନ୍ନାଥଙ୍କୁ ଅନୁକରଣ କରି ପଦମାନ ଲେଖୁଥିଲେ, ତେବେ ବି ଏହା ୧୫୧୦ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ହେବାର କଥା ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଏ କଥା ସ୍ପଷ୍ଟ ଯେ, 'ବେଦାନ୍ତସାର ଗୁପ୍ତଗୀତା' ୧୫୧୦ ଖ୍ରୀଷ୍ଟାବ୍ଦରେ ରଚିତ ନୁହେଁ । ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ବା ଆହୁରି ପରବର୍ତ୍ତୀ ଯୁଗରେ (ମୋ ମତରେ ସପ୍ତଦଶ ଶତାବ୍ଦୀର) କୌଣସି ବଳରାମ ଏହି ଗ୍ରନ୍ଥ ରଚନା କରିଥିବା ବିଶେଷ ସମ୍ଭବ । 'ପଣସଚୋରୀ'ର ଜଣେ ବଳରାମଙ୍କ ପରିଚୟ ମିଳେ ।

କହଇ କଥାଏ ମୁହିଁ ଶୁଣ ଆହେ ନର
ଭାବ ଭକତି କଥା ଶୁଣିଣ ଜନେ ତର ।
ଭକତର ବୃତ୍ତାନ୍ତ ଯେମନ୍ତ କଥାମନ
କହିବି କଥାଏ ମନେ ନଧରିବା ଆନ ।
ବଳରାମ ଦାସ ସମନାଥର କୁମର
ତାହାଙ୍କ ମହିମା ବଡ଼ କୃପାରୁ ଅପାର ।

× × × ×

ଶୁଣ ସାଧୁଜନମାନେ ଏକମନ ହୋଇ
ବଳରାମ ଦାସ କଥା କହିବଇଁ ମୁହିଁ ।''

ଏହି 'ପଣସଚୋରୀ'ରେ ବଳରାମ ଦାସ ନୀଳାଚଳ ପ୍ରତି ଜଗନ୍ନାଥଙ୍କର ସହଯାତ୍ରୀ ହୋଇ ଲଙ୍କା ଯାତ୍ରା କରିଥିବା କଥା ମଧ୍ୟ ସୂଚିତ - ''ସେହି ବଳରାମ ଦାସ ଲଙ୍କା ଯାଇପାରେ, ଶୁଭିଲା ବଡ଼ ମହିମା ତିନି ଭୁବନରେ ।''

ଏହିପରି ଦେଖିଲେ ବଳରାମଙ୍କ ଅଲୌକିକତା ବର୍ଣ୍ଣନା କରିଥିବା ପ୍ରତ୍ୟେକ ଗ୍ରନ୍ଥ ଷୋଡ଼ଶ ଶତାବ୍ଦୀରେ ଆବିର୍ଭୂତ 'ଜଗମୋହନ ରାମାୟଣ', 'ଶ୍ରୀମଦ୍ ଭଗବଦ୍ ଗୀତା', 'ଉଦ୍ଧବ ଗୀତା' ଓ 'ଛତ୍ରିଶ ଗୁପ୍ତ ଗୀତା'ର (୧ମ ଅଧ୍ୟାୟ) କବି ବଳରାମଙ୍କର ଯେ ନୁହେଁ, ଏହା ନିଶ୍ଚିତ । ଦ୍ୱାରକା ଦାସ ଛତ୍ରିଶ ଗୁପ୍ତଗୀତାରେ ଶେଷ ୩୫ ଅଧ୍ୟାୟରେ ନିଜକୁ ବଳରାମ ଦାସରୂପେ ପ୍ରଚାର କଲାପରି ବହୁ ବଳରାମ ଦାସ ଏ ଦେଶରେ ଆବିର୍ଭୂତ ହୋଇ ମହାପୁରୁଷ ବଳରାମଙ୍କ ନାମ ଓ ଗୌରବ ସଙ୍ଗେ ନିଜକୁ ମିଶେଇ ନେଇଛନ୍ତି । ଏ ସବୁ ଅପଚେଷ୍ଟା ସତ୍ତ୍ୱେ ସତ କଥା ଲୁଚି ନାହିଁ । ଜଣେ ମହାମନ୍ତ୍ରୀ ସୋମନାଥଙ୍କ ସୁତ ତ ଜଣେ ଶୂଦ୍ର ରାମଦାସଙ୍କର । ଜଣଙ୍କ ମା ନାଁ ମହମାୟା ତ ଜଣଙ୍କ ମା ନାଁ ଜମ୍ବୁ । ଜଣଙ୍କ ଘର ଚନ୍ଦ୍ରପୁର ତ ଜଣଙ୍କ ଘର ପୁରୀ । ଶିଶୁ ଅନନ୍ତ ଦାସଙ୍କ ରଚିତ 'ଗରୁଡ଼ ସମ୍ବାଦ' ଅନୁଯାୟୀ ବଳରାମ ଦାସଙ୍କ ନିବାସ ସ୍ଥାନ ହେଉଛି 'ସୁଆଙ୍ଗ ମୁଣୋଇ ବିଶିଂ' । ଅପ୍ରକାଶିତ 'ସପ୍ତରାଗିଣୀ ବନ୍ଧ'ର ରଚୟିତା ବଳରାମ ଦାସଙ୍କ ଘର ସିଂହଭୂମ ଓ ତାଙ୍କ ବାପାଙ୍କ ନାଁ ଜଗନ୍ନାଥ ଦାସ । ଏମିତି ଆଉ କେତେ ଯେ ବଳରାମ ଥିବେ ସଠିକ୍ କହିହେଉ ନାହିଁ । 'ବ୍ରହ୍ମାଣ୍ଡଭୂଗୋଳ' ନାଁ ରଖି ବଳରାମ ଦାସ ଦୁଇପ୍ରକାର ଗ୍ରନ୍ଥ ରଚନା କରିଥିବା ଆହୁରି ବିଚିତ୍ର । ଏ ସବୁରୁ ଅନ୍ତତଃ ଏତିକି ସତ ଯେ, ମହାପୁରୁଷ ବଳରାମଙ୍କ ପରେ ବହୁ ବଳରାମ ଏ ଦେଶରେ ଜନ୍ମଗ୍ରହଣ କରିଛନ୍ତି ଓ 'ବେଦାନ୍ତସାର ଗୁପ୍ତଗୀତା'ର ଲେଖକ ପରବର୍ତ୍ତୀ ବଳରାମଙ୍କ ମଧ୍ୟରୁ ଅନ୍ୟତମ ।



## ଓଡ଼ିଶା, ଶ୍ୟାମଦେଶ ଓ ଇଣ୍ଡୋନେସିୟାରେ ରାମକଥା

ଜାଭା, ସୁମିତ୍ରା ଓ ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପପୁଞ୍ଜ, ଯାହାକୁ ଇଣ୍ଡୋନେସିୟା କୁହାଯାଏ, ତା'ରି ପାଖରେ ଥିବା ଶ୍ୟାମଦେଶ ସହ ଓଡ଼ିଶା ତଥା ଭାରତର ସମ୍ପର୍କ ଅତି ପ୍ରାଚୀନ। ସମଗ୍ର ଭାରତବାସୀଙ୍କ ମଧ୍ୟରେ ବୋଧହୁଏ ଓଡ଼ିଆମାନେ ଏ ଦେଶକୁ ଆଗ ହୋଇ ଆସିଥିଲେ। କାହାରି କାହାରି ମତରେ, ଓଡ଼ିଆଙ୍କର ଆଗମନ କାଳ ହେଉଛି ଖ୍ରୀଷ୍ଟପୂର୍ବ ୬୭। ପ୍ରଥମେ ବାଣିଜ୍ୟ ପାଇଁ ଆସି ପରେ ଏ ଦେଶକୁ ନିଜର ସାମ୍ରାଜ୍ୟରେ ପରିଣତ କରିଥିଲେ। ଏଇସବୁ ଦେଶସହ ଓଡ଼ିଶାର ସମ୍ପର୍କ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିଲା ବୋଲି କେହି କେହି ଐତିହାସିକ ମତ ଦେଇଥା'ନ୍ତି। ବହୁଦିନର ଆଦାନପ୍ରଦାନ ଫଳରେ ଏ ଦେଶର ସଂସ୍କୃତି ଓ ସଭ୍ୟତାରେ ବହୁ ସମାନତା ପ୍ରକାଶ ପାଇଥିବ, ଯାହାକୁ ଦେଖି ଚୀନାମାନେ ଏ ଦେଶର ନାଁ ଦେଲେ ହୌଲିଙ୍ଗ, ଯାହାକି କଳିଙ୍ଗ ଶବ୍ଦର ଏକ ରୂପାନ୍ତର।

ସେଦିନର ଓଡ଼ିଆ ଆଜି ଇଣ୍ଡୋନେସିୟା ବା ଶ୍ୟାମ ଦେଶରେ ନାହାନ୍ତି। ବହୁଜାତି ଓ ସଭ୍ୟତାର ମିଶ୍ରଣରେ ସେମାନେ ନୂଆ ଜାତିରେ ପରିଣତ ହୋଇଛନ୍ତି। ସେମାନେ ଯେ କେବେ ଓଡ଼ିଆ ଥିଲେ, ଏ କଥା ମାନିବା ପାଇଁ ସେମାନେ ଯେମିତି ନାରାଜ, ପ୍ରମାଣ କରିବା ମଧ୍ୟ ସେହିପରି କଷ୍ଟକର। ତେବେ ବି ସେ ଦେଶରେ ପ୍ରଚଳିତ ରାମକଥାକୁ ବିଶ୍ଳେଷଣ କଲେ ସେସବୁ ଦେଶ ସହ ଓଡ଼ିଶାର ସମ୍ପର୍କ ଯେ ଅତି ଘନିଷ୍ଠ ଥିଲା, ଏକଥା ସ୍ପଷ୍ଟଭାବରେ ପ୍ରମାଣିତ ହୁଏ।

ଭାରତର ଅନ୍ୟାନ୍ୟ ଆଧୁନିକ ଭାଷା ପରି ଓଡ଼ିଆ ଭାଷାର ସୃଷ୍ଟି ନବମ ବା ଦଶମ ଶତାବ୍ଦୀରେ ହୋଇଥିବା ଅନୁମାନ କରାଯାଇଥିଲେ ହେଁ ଓଡ଼ିଶାର ଜାତୀୟ ପୁରାଣ ରଚିତ ହୁଏ ପଞ୍ଚଦଶ ଶତାବ୍ଦୀର ସାରଳା ଦାସଙ୍କ ହାତରେ। ଠିକ୍ ସେତିକିବେଳକୁ ବା ଟିକେ ପୂର୍ବରୁ ରଚିତ ହୁଏ ଜାଭାର 'ସେରିରାମ' ଓ ଶ୍ୟାମ ଦେଶର 'ରାମକିୟେନ'। ସେତେବେଳକୁ ଏଇସବୁ ଦେଶ ସହ ଓଡ଼ିଆଙ୍କର ସମ୍ପର୍କ କ୍ଷୀଣ ହୋଇଯାଇଛି ବା ପ୍ରାୟ ଲୋପ ପାଇଯାଇଛି। ତେବେ ସେ ସମୟରେ ପ୍ରଚଳିତ ରାମାୟଣ ସମ୍ବନ୍ଧୀୟ ଲୋକକଥା ସାରଳା ଦାସଙ୍କୁ ବହୁ ନୂଆ ତତ୍ତ୍ୱ ଦେଲାପରି ସେରିରାମ ବା ରାମକିୟେନର ଲେଖକଙ୍କୁ ବହୁ ସାମଗ୍ରୀ ଯୋଗାଇଛି। ଏସବୁ ଦେଶରେ ପ୍ରଚଳିତ ରାମକଥାରୁ କେତୋଟି ଗଳ୍ପକୁ ଉଦାହରଣରୂପେ ଗ୍ରହଣ କରି ଏସବୁ ଦେଶର ଅତୀତ ସମ୍ପର୍କକୁ ଆଲୋକିତ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ।

'ମହାଭାରତ'ର ବନପର୍ବରେ ସାରଳା ଦାସ ବାଳୀ ଓ ସୁଗ୍ରୀବଙ୍କ ଜନ୍ମକଥା ନିମ୍ନଭାବରେ ବର୍ଣ୍ଣନା କରିଛନ୍ତି : ଗୌତମଙ୍କ ପତ୍ନୀ ଅହଲ୍ୟା ଦେଖିବାକୁ ଭାରୀ ସୁନ୍ଦରୀ । ଇନ୍ଦ୍ର ଓ ସୂର୍ଯ୍ୟଙ୍କର ତାଙ୍କ ଉପରେ ଆଖି । ପାଇବାକୁ ସବୁବେଳେ ଇଚ୍ଛା ଥିଲେ ହେଁ ପାଇପାରନ୍ତି ନାହିଁ । ଗୌତମ ତପସ୍ୟା କରିବାକୁ ଗଲାବେଳେ ଅହଲ୍ୟାଙ୍କ ପ୍ରାଣକୁ କାନିରେ ବାନ୍ଧି ନେଇଯାନ୍ତି । ଅହଲ୍ୟାଙ୍କ ଜଡ଼ ଶରୀରର ଜଗୁଆଳି ହୁଅନ୍ତି ତାଙ୍କର ଝିଅ ଅଞ୍ଜନା । ଏହିପରି ତୁଳ ମାସର ଗୋଟିଏ ଦିନ, କୃଷ୍ଣପକ୍ଷର ଦଶମୀ ତିଥି । ସେ ଦିନ ଗୌତମ ତପସ୍ୟା କରିବା ପାଇଁ ପ୍ରୟାଗ ତୀର୍ଥକୁ ଯାଇଥାନ୍ତି । ଇନ୍ଦ୍ର ଓ ସୂର୍ଯ୍ୟଙ୍କୁ ସୁଯୋଗ ମିଳିଗଲା । ଦୁହେଁ ଗୋପନରେ ଆଶ୍ରମରେ ପ୍ରବେଶ କଲେ । ପ୍ରଥମେ ଇନ୍ଦ୍ର ଦେବତା ଅହଲ୍ୟାଙ୍କ ଜଡ଼ ଶରୀରରେ ପ୍ରାଣ ହୋଇ ପ୍ରବେଶ କଲେ ଓ ସୂର୍ଯ୍ୟଦେବତା ତାଙ୍କ ସହ ସଂଶ୍ରବ କଲେ । ପରଦିନ ସେମାନେ ପୁଣି ଆଶ୍ରମକୁ ଆସିଲେ । ସେଦିନ ସୂର୍ଯ୍ୟଦେବତା ହେଲେ ଜୀବନ ଓ ଇନ୍ଦ୍ର ହେଲେ ଉପଭୋକ୍ତା । ଏହିପରି ଭାବେ ଅହଲ୍ୟାଙ୍କୁ ପାଞ୍ଚ ଦିନ ଭୋଗ କଲେ । ସେମାନଙ୍କ ଔରସରୁ ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ଗୌତମ ମୁନି ସେମାନଙ୍କୁ ନିଜର ଭାବି ସେମାନଙ୍କ ନାମକରଣ କଲେ ଶ୍ୟାମତିଳ ଓ ଜବତିଳ ।

ଦିନେ ଗୌତମ ମୁନି ଅର୍କକ୍ଷେତ୍ରକୁ ତୀର୍ଥ କରିବାକୁ ବାହାରିଲେ । ସାଙ୍ଗରେ ଗଲେ ଦୁଇ ପୁଅ ଓ କନ୍ୟା ଅଞ୍ଜନା । ସେଠି ନିତ୍ୟକର୍ମ ସାରି ଫେରିଲା ବେଳକୁ ଦିନ ଦ୍ୱିପ୍ରହର । ତତଲା ବାଲିରେ ଚାଲିବାପାଇଁ ପିଲାଙ୍କୁ କଷ୍ଟ ହୁଏ । ମୁନି ଦୁଇ ପୁଅଙ୍କୁ କାଖରେ ବସାଇ ଅଞ୍ଜନାକୁ ଚାଲି ଚାଲି ଯିବାକୁ କୁହନ୍ତି । ଅଞ୍ଜନା ବି କାଖ ହେବା ପାଇଁ ଅଳି କରନ୍ତି । ଗୌତମ ମୁନି ତା' କଥା ନ ଶୁଣି ତାକୁ ଗାଳି ଦିଅନ୍ତି । ଅଞ୍ଜନା ମନରେ କ୍ରୋଧ ହୁଏ । ସେ ରାଗିଯାଇ ବାପକୁ ଚେତେଇ କହିଲା, ''ତୋ ପରା ବିଜ୍ଞ ମୁନି ଜାରଜାତକା ପୁତ୍ରକୁ କାଖ କରି ନିଜ ଔରସରୁ ଜାତ କନ୍ୟାକୁ ତ୍ୟାଗ କରୁଛି ।'' ମୁନି କନ୍ୟାର କଥା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ଅଞ୍ଜନା କଥାର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ସେ ପୁଣି ସମୁଦ୍ର କୂଳକୁ ବାହୁଡ଼ି ଗଲେ । ଦୁଇ ପୁଅଙ୍କୁ ଅଗାଧ ବାରିଧିକି ଫିଙ୍ଗି ଦେଇ ମୁନି କହିଲେ -

ବୋଇଲେ ତୁମ୍ଭେ ଯେବେ
　　　　ମୋହର ବୀର୍ଯ୍ୟେ ଜାତ
ଏହି ରୂପେ ତୁମ୍ଭେ
　　　　ଆସିବ ବେନି ଲାଥ ।

ଅନ୍ୟ ବୀର୍ଯ୍ୟେ ଜାତ ଯେବେ
ତୁମ୍ଭର ଅଟେ କାଏ
ମର୍କଟ ସ୍ୱରୂପ ଧର
ତୁମ୍ଭେ ବେନି ପୋଏ ।
(ମଧ୍ୟ ପର୍ବ ପୋଥି ପୃ-୧୭୦)

ଅଞ୍ଜନାର ଅଭିଯୋଗ ସତ୍ୟ ହେଲା । ଦୁଇପୁଅ ବାନର ରୂପ ଧାରଣ କରି ମୁନିଙ୍କ ଆହ୍ୱାନକ୍ରମେ ସମୁଦ୍ର କୂଳରେ ଆସି ଉଭା ହେଲେ । ଗୌତମ ମୁନି ଆଶ୍ଚର୍ଯ୍ୟ ଚକିତ ହୋଇ ସରଯୁରାଜାଙ୍କ ପୁତ୍ର ଖଡ଼ଦ ନୃପତିଙ୍କୁ ଦୁଇ ପୁତ୍ରଙ୍କୁ ସମର୍ପଣ କରି ଅଞ୍ଜନାକୁ କାଖରେ ବସାଇ ମଢ଼ିଆକୁ ଫେରିଆସିଲେ ।

ବାଳି ଓ ସୁଗ୍ରୀବଙ୍କ ଏ ପ୍ରକାର ଜନ୍ମ କଥା ବାଲମିକୀ ରାମୟଣ ବା ଅନ୍ୟାନ୍ୟ ସଂସ୍କୃତ କାବ୍ୟ, ପୁରାଣ ତଥା ଆଧୁନିକ ଭାରତୀୟ ଭାଷାର ରାମକଥାରେ ଦେଖିବାକୁ ମିଳେ ନାହିଁ । ପାଶ୍ଚାତ୍ୟ ବୃତ୍ତାନ୍ତ ନମ୍ବର ୧ରେ ଅରୁଣଙ୍କ (କନ୍ୟା ରୂପ) ଗର୍ଭରୁ ସୂର୍ଯ୍ୟ ଓ ଇନ୍ଦ୍ରଙ୍କ ଔରସରୁ ଦୁଇପୁଅ ଜାତ ହୁଅନ୍ତି । ଅଗସ୍ତ୍ୟଙ୍କ ତପସ୍ୟାରେ ବିଘ୍ନଜାତ କରିବାରୁ ସେମାନେ ଅଭିଶପ୍ତ ହୋଇ ବାନରରୂପ ଧାରଣ କରନ୍ତି । ତନ୍ତ୍ରବାର୍ତ୍ତିକ (୧,୩,୭)ରେ ସୂର୍ଯ୍ୟ ଅହଲ୍ୟାଙ୍କୁ ହରଣ କଥାର ସୂଚନା ମିଳେ ।
ଏହିପରି ଦେଖିଲେ ସମଗ୍ର ଭାରତୀୟ ସାହିତ୍ୟରେ ସାରଳା ଦାସଙ୍କ ବର୍ଣ୍ଣିତ କଥାନିକାର ତୁଳନା ପାଇଁ ଅନ୍ୟ ଗ୍ରନ୍ଥ ନାହିଁ । ଭାରତ ବାହାରେ ଇଣ୍ଡୋନେସିୟାର 'ସେରୀରାମ' ଓ 'ସେରତକାଂଡ' ପୁଣି ଶ୍ୟାମ ଦେଶର 'ରାମୟେନ' ସାରଳା ଦାସଙ୍କ ପରି ବାଳି ଓ ସୁଗ୍ରୀବଙ୍କୁ ଅହଲ୍ୟାଙ୍କ ସନ୍ତାନରୂପେ ଗ୍ରହଣ କରିଛନ୍ତି ।

'ସେରୀରାମ'ରେ ବାଳି ଓ ସୁଗ୍ରୀବଙ୍କ ଜନ୍ମ କଥା ନିମ୍ନଭାବରେ ବର୍ଣ୍ଣିତ । ଦଶରଥଙ୍କ ଦ୍ୱାରପାଳର ପୁତ୍ର ଗୌତମ ନିଜର ସ୍ତ୍ରୀ ଦେବୀଇନ୍ଦ୍ରଙ୍କ ସହ ତପଶ୍ଚର୍ଯ୍ୟା କରୁଥିଲେ । ସେଠି ଦେବୀଇନ୍ଦ୍ର କୌଣସି ଦେବତାଙ୍କ ସହ ବ୍ୟଭିଚାର କରି ବାଳିଙ୍କୁ ଜନ୍ମ ଦେଲେ । ଅନ୍ୟ ଦିନ ଜଣେ ରାଜକୁମାରଙ୍କ ପ୍ରେମରେ ପଡ଼ି ସୁଗ୍ରୀବଙ୍କୁ ଜନ୍ମ ଦେଲେ । ଗୌତମ ଉଭୟଙ୍କୁ ନିଜର ସନ୍ତାନ ଭାବି ପାଳନ କରୁଥିଲେ । ଅଞ୍ଜନାକୁ ମା'ର ବ୍ୟଭିଚାର କଥା ଜଣାଥିଲା । ତେବେ ବି ଗୋଟିଏ ଐନ୍ଦ୍ରଜାଲିକ ମଣି ଲୋଭରେ ସେ ଏକଥା ଗୁପ୍ତକରି ରଖିଥିଲେ । ଦିନେ ବାଳି ଐନ୍ଦ୍ରଜାଲିକ ମଣିକୁ ନେଇଯିବାକୁ ଚେଷ୍ଟା କରିବାରୁ ଅଞ୍ଜନା ରାଗରେ ମା'ର ଗୁପ୍ତ ପ୍ରେମ କଥା ପ୍ରକଟ କରିଦେଲେ । ଗୌତମ ଏକଥା ଶୁଣି ପୁତ୍ର ଦୁହିଁଙ୍କୁ ପୁଷ୍କରିଣୀରେ ନିକ୍ଷେପ କରି କହିଲେ, ''ଯଦି ସେମାନେ ଜାରଜ, ତାହାହେଲେ ବାନର ହୋଇ ଜଳରୁ ବାହାରି ଆସିବେ'' । ବାଳି ଓ ସୁଗ୍ରୀବ ବାନରରୂପ ଧାରଣ କରି ଲାଗୁର ନାମକ ସ୍ଥାନକୁ ଚାଲିଗଲେ । ସେଠି ବାଳି ହେଲେ ରାଜା ଓ ସୁଗ୍ରୀବ ହେଲେ

ମନ୍ତ୍ରୀ । ଗୌତମ ଆଶ୍ରମକୁ ଫେରି ନିଜ ପତ୍ନୀଙ୍କୁ ପରିତ୍ୟାଗ କଲେ ତଥା ଅଞ୍ଜନାକୁ ଅଭିଶାପ ଦେଇ ସ୍ୱର୍ଗକୁ ଚାଲିଗଲେ ।

'ସେରତକାଣ୍ଡ' ଅନୁଯାୟୀ ରେସିଗୁତମଙ୍କ ପତ୍ନୀ ଦେବୀରୋନ୍ତହଙ୍କ ଦୁଇଟିଯାକ ପୁତ୍ର ସୂର୍ଯ୍ୟଙ୍କର ସନ୍ତାନ । ସେମାନଙ୍କର ନାଁ ହେଉଛି - ସୁବାଳି ଓ ସୁଗ୍ରୀବ । ସେମାନଙ୍କ ଭଉଣୀ ଦେବୀ ଅଞ୍ଜନା ମା'ର ପାପ ଲୁଚାଇବା ପାଇଁ ପୁରସ୍କାର ସ୍ୱରୂପ ମା'ଙ୍କ ଠାରୁ ଐନ୍ଦ୍ରଜାଲିକ ମଣି ପାଇବା ସତ୍ତ୍ୱେ ସ୍ୱର୍ଣ୍ଣ-ମୁଦ୍ରାପୂର୍ଣ୍ଣ ମଞ୍ଜୁଷା ବି ଚାହିଁଥିଲେ । ଏଥିପାଇଁ ମା' ଓ ଝିଅ ଭିତରେ କଳି ହେଲା । ଦୁହିଁଙ୍କ କଳି ସମାଧାନ କରିବା ପାଇଁ ମଞ୍ଜୁଷାକୁ ସମୁଦ୍ରରେ ପକାଇଦେଇ ଗୌତମ କହିଲେ, 'ଯିଏ ମଞ୍ଜୁଷାକୁ ବାହାର କରିପାରିବ, ମଞ୍ଜୁଷା ତା'ର ହେବ' । ଏକଥା ଶୁଣି ଅଞ୍ଜନାର ପ୍ରତିନିଧି ସୁମନ୍ଦା ତଥା ତା'ର ଭାଇ ସମୁଦ୍ରକୁ ଡେଇଁପଡ଼ିଲେ । ମଞ୍ଜୁଷାକୁ ବାହାର କରିବା ପାଇଁ ସେମାନେ ଯେ କେବଳ ଅକ୍ଷମ ହେଲେ ତାହା ନୁହେଁ, ସେମାନେ ମାଙ୍କଡ଼ରେ ପରିଣତ ହୋଇଗଲେ । ପ୍ରତିଶୋଧ ନେବା ପାଇଁ ସେମାନେ ସେହି ଜଳରେ ଅଞ୍ଜନାର ମୁଖ ଧୋଇଦେଲେ, ଫଳରେ ଅଞ୍ଜନା ବି ମର୍କଟ-ମୁଖ ହୋଇଗଲା । ଗୌତମ ନିଜ ପତ୍ନୀଙ୍କୁ ଶିଳାରେ ପରିଣତ ହେବା ପାଇଁ ଅଭିଶାପଦେଇ ତପସ୍ୟା କରିବାକୁ ଚାଲିଗଲେ ।

'ରାମକିୟେନ' (ଅଧ୍ୟାୟ-୬) ଅନୁଯାୟୀ ଗୌତମ ହେଉଛନ୍ତି ସାକେତର ରାଜା । ସନ୍ତାନ ପାଇଁ ସେ ବନରେ ତପସ୍ୟା କରିବାକୁ ଗଲେ । ସେଠି କୌଣସି ପକ୍ଷୀଠାରୁ ନିଃସନ୍ତାନ ହେବା ମହାପାପ ଜାଣି ସେ ଏକ ଯଜ୍ଞର ଆୟୋଜନ କଲେ । ଯଜ୍ଞରୁ ଗୋଟିଏ ସୁନ୍ଦରୀ କନ୍ୟା ଜାତ ହେଲା । ତା'ର ନାମ ହେଲା 'କଲା ଅଚନା' । ଗୌତମ ତାକୁ ନିଜ ସ୍ତ୍ରୀ ରୂପେ ସ୍ୱୀକାର କଲେ । ତାଙ୍କ ଗର୍ଭରୁ ଗୋଟିଏ କନ୍ୟା ଜାତ ହେଲା । ଗୌତମ ତା'ର ନାମ ଦେଲେ ସ୍ୱାହା । ପରେ ଇନ୍ଦ୍ର ଓ ସୂର୍ଯ୍ୟଙ୍କ ଔରସରୁ କଲା-ଅଚନାଙ୍କର ଦୁଇ ପୁତ୍ର ହୁଅନ୍ତି । ସେମାନଙ୍କ ନାଁ ହେଲା କାକାଶବୀର ତଥା ସୁଗ୍ରୀବ । ଗୌତମ ସେମାନଙ୍କୁ ନିଜ ପୁତ୍ର ବୋଲି ଭାବୁଥିଲେ । ଦିନେ ଗୌତମ କାକାଶକୁ କାନ୍ଧେଇ ସୁଗ୍ରୀବକୁ କାଖକରି ଓ ସ୍ୱାହାର ହାତଧରି ଖାଧେଇବାକୁ ବାହାରିଲେ । ସ୍ୱାହାର ଦିହ ସହିଲା ନାହିଁ । ସେ ବାପ ଉପରେ ରାଗିଯାଇ କହିଲା, "ଆପଣ ନିଜ ସନ୍ତାନକୁ ପାଦରେ ଚାଲିବାକୁ ଦେଇ ପରର ସନ୍ତାନକୁ ମୁଣ୍ଡରେ ମୁଣ୍ଡାଉଛନ୍ତି ।" ଗୌତମ ଏହାର ଅର୍ଥ ପଚାରିବାରୁ ସ୍ୱାହା ବ୍ୟଭିଚାର କଥା ପ୍ରଚାର କରିଦେଲେ । ସ୍ୱାହାର କଥାରେ ଗୌତମଙ୍କର ବିଶ୍ୱାସ ହେଲାନାହିଁ । ପରୀକ୍ଷା କରିବା ପାଇଁ ତିନିଜଣଙ୍କୁ ନଦୀରେ ପକେଇ ଦେଇ କହିଲେ- "ମୋ ସନ୍ତାନ ମୋ ମୋଖକୁ ଫେରିଆସୁ; ପରର ସନ୍ତାନ ମାଙ୍କଡ଼ ହୋଇ ବଣକୁ ଚାଲିଯାଉ । ପରିଣାମ ସ୍ୱରୂପ କାକାଶ ଓ ସୁଗ୍ରୀବ ମାଙ୍କଡ଼ ରୂପ ଧାରଣ କରି ବଣକୁ ଚାଲିଗଲେ । ପରେ ଇନ୍ଦ୍ର ଓ ସୂର୍ଯ୍ୟ ନିଜ ସନ୍ତାନଙ୍କ ପାଇଁ ଖିଦ୍‌ଖିନ ନଗରର

ନିର୍ମାଣ କଲେ ତଥା ମନ୍ତ୍ରଦ୍ୱାରା ସବୁ ବାନରଙ୍କୁ ଡାକି କାକାଶକୁ ସେମାନଙ୍କର ରାଜା କରିଦେଲେ ।

ସାରଳା ଦାସଙ୍କ 'ମହାଭାରତ'ରେ ବର୍ଣ୍ଣିତ କଥନିକାସହ 'ସେରୀରାମ', 'ସେଚକାଣ୍ଡ' ଓ 'ରାମକିୟେନ'ରେ ପ୍ରଦତ୍ତ କଥାର ସାଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଯେଉଁମାନଙ୍କ ଠାରୁ ଶୁଣି ସାରଳା ଦାସ ଏ କଥାକୁ 'ମହାଭାରତ'ରେ ଲିପିବଦ୍ଧ କଲେ ସେଇମାନଙ୍କ ପୂର୍ବପୁରୁଷ ଥିଲେ ଜାଭା, ସୁମାତ୍ରା ଓ ବୋର୍ଣ୍ଣିଓର ଅଧିବାସୀ । ସେଇମାନଙ୍କଠାରୁ ଶୁଣି 'ସେରୀରାମ', 'ସେରତକାଣ୍ଡ' ଓ 'ରାମକିୟେନ' ପ୍ରଭୃତି ଗ୍ରନ୍ଥ ଲେଖାହୁଏ । ତେଣୁ ଓଡ଼ିଶାରେ ପ୍ରଚଳିତ କଥା ସହ ଏଇସବୁ ଦେଶର ରାମକଥାରେ ସମାନତା ରହିବା ସ୍ୱାଭାବିକ ।

ସଂକେତରେ ସାରଳା ଦାସ ଆହୁରି ବହୁ କଥା କହିଛନ୍ତି । ଅର୍କକ୍ଷେତ୍ର ନିକଟରେ ସମୁଦ୍ର । ଏଇ ହେଉଛି ଇତିହାସ ପ୍ରସିଦ୍ଧ ଚାରିତ୍ର ବନ୍ଦର । ସେଇଠି ବାପ ପୁଅକୁ ସମୁଦ୍ର ପାର ହୋଇ ବେପାର ବାଣିଜ୍ୟ କରିବାକୁ ପଠାଏ । ଏହା ପୁଅକୁ ସମୁଦ୍ରରେ ଫୋପାଡ଼ି ଦେବାପରି । ସମୁଦ୍ରରେ ବାଣିଜ୍ୟ କରିବାର ଏକ ସୁନ୍ଦର ଜୀବନ୍ତ ଦୃଶ୍ୟ ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'କୁ ମିଳେ । କବି କହିଛନ୍ତି-

କଷ୍ଟୁ ତରିବା ପାଇଁ ପ୍ରୀତି ବୋଇତ ନେଇ
ତୁମ୍ଭ ସଂଗ-ସିଂଧୁରେ ମେଲି ।
କୁଳ ଶୀଳ ବେଭାର ସବୁ ଏକପ୍ରକାର
ଅମ୍ଭର କରିଣ ଅଞ୍ଜଳି; ହେ କୃପାନିଧି ।
କିଛି କାଳ ବାଣିଜ୍ୟ କଲୁଁ ।
କେତେ ସୁଖରେ ଦିନ ନେଲୁଁ ।
କଂସଦୂତ ବତାଶ କଲା ତ ଏବେ ନାଶ ।
ଦେଖୁଁ ଦେଖୁଁ ଦୁଃଖକୁ ଗଲୁଁ ହେ । (୨୬-୧୨)

ଅଜସ୍ର ଧନ କମେଇବା ଆଶାରେ ବାପ ଯୋଗ୍ୟ ପୁଅକୁ ସମୁଦ୍ରପାର ଦେଶକୁ ପଠାଉଥିଲେ ହେଁ ଅଜଣା ଭୟରେ ମନ ଦବିଯାଏ । ପୁଣି 'ଯବତିଳ' ଓ 'ଶ୍ୟାମତିଳ' ନାମ । ଏମାନେ ଅହଲ୍ୟାଙ୍କର ଜାରଜ ସନ୍ତାନ ନୁହଁନ୍ତି । ଏମାନେ ପ୍ରକୃତରେ ଓଡ଼ିଆଙ୍କ ରକ୍ତଜାତ ଦୁଇଟି ସନ୍ତାନ ଜାଭା ଓ ଶ୍ୟାମ ଦେଶ ।

ଏହିପରି ଆଉ ଗୋଟିଏ ଉଦାହରଣ ହେଉଛି, ହନୁମାନ ଜନ୍ମକଥା । ହନୁମାନ ପବନସୁତ ତଥା ରୁଦ୍ରାବତାର ରୂପେ ପ୍ରସିଦ୍ଧ । ସାରଳା ଦାସଙ୍କ 'ମହାଭାରତ'ରେ ଦୁଇଟିଯାକ ପରମ୍ପରା ମିଶି ପ୍ରକାଶ ପାଇଛି । ହନୁମାନ କିପରି ପବନ ପୁତ୍ର ହେଲେ ଓ କିପରି ରୁଦ୍ରାବତାର ହେଲେ, ସେ କଥା ସେ ନିଜର ପାଠକମାନଙ୍କୁ ଦେଇଛନ୍ତି ।

ଗପଟି ହେଉଛି ଏହିପରି - ଅହଲ୍ୟାଙ୍କ ପୁତ୍ରମାନେ ବାନର ହୋଇଯିବାରୁ ସେ ଅଞ୍ଜନାକୁ ବାନର ପୁତ୍ର ଜନ୍ମ କରିବାକୁ ଅଭିଶାପ ଦେଲେ । ଅଞ୍ଜନା ଏହି ଅଭିଶାପରୁ ରକ୍ଷା ପାଇବା ପାଇଁ ହର ଉଦ୍ୟାନକୁ ଯାଇ ତପସ୍ୟା ଆରମ୍ଭ କଲେ । ପୋଥିରେ ଏହି ସ୍ଥାନର ନାମ ହେଉଛି 'ଜବକୋଟି', ଐତିହାସିକମାନେ ଏହାକୁ ଜାଭାର ପୂର୍ବାଞ୍ଚଳ ସହ ଚିହ୍ନିତ କରିଛନ୍ତି । ଲକ୍ଷ ଲକ୍ଷ ବର୍ଷ ତପସ୍ୟା କରିବା ଫଳରେ ଅଞ୍ଜନାଙ୍କର ସମସ୍ତ ଶରୀର ଉଇହୁଙ୍କାଦ୍ୱାରା ଆବୃତ ହୋଇଗଲା । କନ୍ୟାର ଦୁଃଖ ଦେଖି ଗୌତମ ମୁନି ପବନକୁ ଆହାର ଯୋଗାଇବାକୁ କହିଗଲେ ।

ଏହିପରି ବହୁଯୁଗ ବିତିଗଲା । ଦିନେ ଶିବ ଓ ପାର୍ବତୀ କୈଳାସ ତ୍ୟାଗ କରି ହରଉଦ୍ୟାନରେ ଜଳକ୍ରୀଡ଼ା କରିବା ପାଇଁ ପ୍ରବେଶ କଲେ । ସେଠି ସେମାନେ ବିଭିନ୍ନ ରୂପରେ ରତିକ୍ରୀଡ଼ା କଲେ । ସେମାନଙ୍କ କାକ ଓ କାକୀ ରୂପରୁ ଜାତ ହେଲେ ଭୂଷଣ୍ଡ, ହଂସ ଓ ହଂସିନୀ ରୂପରୁ ଜନ୍ମ ହେଲେ ବ୍ରହ୍ମାଙ୍କର ବାହନ ଶୁକ୍ଳମୁଖୀ ମରାଳ । ତା'ପରେ ସେମାନେ ଭଲ୍ଲୁକ ଓ ଭଲ୍ଲୁକୀ ରୂପରେ କ୍ରୀଡ଼ା କରି ରାମଭକ୍ତ ଜାମ୍ବବଙ୍କୁ ଜାତ କଲେ । ଶେଷରେ ସେମାନେ ହେଲେ ବାନର ଓ ବାନରୀ । ଶିବଙ୍କର ରେତଃର ତେଜ ଅସୀମ । ସେଥିରୁ କଣିକାଏ ପାର୍ବତୀଙ୍କ ଗର୍ଭରେ ପଡ଼ିଯିବାରୁ ସେ ମୂର୍ଚ୍ଛା ହୋଇଗଲେ । ଆଉ କଣିକାଏ ଆସି ପୃଥିବୀ ଉପରେ ପତିତ ହେଲା । ସେଥିରୁ କାଚ, ସ୍ଫଟିକ, ମାରାଗ, ପାରା, ଗନ୍ଧକ, ଅଷ୍ଟଧାତୁ ଓ ଅନ୍ୟାନ୍ୟ ବହୁ ଶ୍ୱେତ ପଦାର୍ଥର ସୃଷ୍ଟି ହୁଏ ।ସେହି ରେତଃ ପତନରେ ବସୁନ୍ଧରା ଥରିଯାଏ । ବସୁନ୍ଧରାର ଅନୁରୋଧରେ ଶିବ ନିଜ ଅଞ୍ଚଳରେ ଅର୍ଦ୍ଧେକ ମହାରସ ଧାରଣ କରି ଅପୁତ୍ରିକ ବାୟୁକୁ ଦାନ କଲେ । ବାୟୁ ସେ ଅମୋଘ ରେତଃକୁ ଅଞ୍ଜନା ଦିଏ । ଅଞ୍ଜନା ତାକୁ ଆହାର ଭାବି ପାନ କରିବାରୁ ଗର୍ଭବତୀ ହୋଇ ହନୁମାନଙ୍କୁ ପ୍ରସବ କରେ ।

ହନୁମାନଙ୍କ ଜନ୍ମକଥାର ଏ ପ୍ରକାର ରୂପ ଭାରତର ଅନ୍ୟାନ୍ୟ ସାହିତ୍ୟରେ ନାହିଁ । ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଦକ୍ଷିଣ ଭାରତରୁ ମିଳୁଥିବା ଗୋଟିଏ ଲୋକକଥାରେ ଶିବ ଓ ପାର୍ବତୀଙ୍କ ବାନର ଓ ବାନରୀ ରୂପରୁ ହନୁମାନଙ୍କ ଜନ୍ମ ହୋଇଥିବା କୁହାଯାଇଛି ।

ଇଣ୍ଡୋନେସିୟାରେ ପ୍ରଚଳିତ ହନୁମାନଙ୍କ ଜନ୍ମକଥା ମୁଖ୍ୟତଃ ଦୁଇ ଭାରତୀୟ କଥନିକାର ମିଶ୍ରଣରେ ଉତ୍ପନ୍ନ । ପ୍ରଥମ ହେଉଛି ଗୌତମଙ୍କ କନ୍ୟା ଅଞ୍ଜନାକୁ ହନୁମାନଙ୍କ ମା' ରୂପେ ଗ୍ରହଣ କରିବା ଓ ଦ୍ୱିତୀୟ ହେଉଛି ଶିବ-ପାର୍ବତୀଙ୍କ ବାନର - ବାନରୀ ରୂପ ହନୁମାନଙ୍କ ଜନ୍ମରେ ସହାୟକ ହେବା । ପରିବର୍ତ୍ତନ ଭିତରେ ଶିବ ଓ ପାର୍ବତୀଙ୍କ ସ୍ଥାନରେ ରାମ ଓ ସୀତାଙ୍କର ଉଲ୍ଲେଖ ହୋଇଛି ।

'ହିକାୟତ ସେରିରାମ' ଅନୁଯାୟୀ ଗୌତମ ଋଷି ଅଞ୍ଜନାକୁ ଶହେବର୍ଷ ପର୍ଯ୍ୟନ୍ତ ସୂଚୀମୁନ ଉପରେ ଠିଆହୋଇ ତପସ୍ୟା କରିବାକୁ ଅଭିଶାପ ଦେଲେ । ରାମ, ଲକ୍ଷ୍ମଣ ଓ ସୀତା ସେମାନଙ୍କ ବନବାସ କାଳରେ ଏପରି ଗୋଟିଏ ସ୍ଥାନରେ ଉପସ୍ଥିତ ହେଲେ, ଯେଉଁଠି ଦୁଇଟି ପୁଷ୍କରିଣୀ ଥିଲା । ସେଥିରୁ ଗୋଟିକର ଜଳ ସ୍ୱଚ୍ଛ ଓ ଅନ୍ୟଟିର ଜଳ ପଙ୍କିଳ । ସ୍ୱଚ୍ଛ ଜଳରେ ସ୍ନାନ କଲେ ମଣିଷ ପଶୁରେ ପରିଣତ ହୁଏ ଓ ପଙ୍କିଳ ଜଳରେ ସ୍ନାନ କଲେ ପୁଣି ମଣିଷ ହୋଇଯାଏ । ଲକ୍ଷ୍ମଣ ପୁଷ୍କରିଣୀର ଏ ରହସ୍ୟ ଜଣେ ଋଷିଙ୍କଠାରୁ ଜାଣି ରାମ ଓ ସୀତାଙ୍କୁ କହିଦେଇଥିଲେ; କିନ୍ତୁ ସେମାନେ ଲକ୍ଷ୍ମଣଙ୍କ କଥା ନ ମାନି ସ୍ୱଚ୍ଛ ଜଳରେ ସ୍ନାନ କଲେ । ଫଳସ୍ୱରୂପ ସେମାନେ ବାନର ଓ ବାନରୀ ହୋଇ କ୍ରୀଡ଼ା କରିବାକୁ ଲାଗିଲେ । ଏତିକିବେଳେ ସୀତା ଗର୍ଭବତୀ ହୋଇଗଲେ । ଲକ୍ଷ୍ମଣ ଅତି କଷ୍ଟରେ ସେମାନଙ୍କୁ ପଙ୍କିଳ ଜଳରେ ବୁଡ଼ାଇଦେବାରୁ ସେମାନେ ପୁଣି ନିଜ ରୂପ ଫେରିପାଇଲେ । ପରେ ରାମ ସୀତାଙ୍କ ଭ୍ରୁଣ ବାହାର କରି ବାୟୁଙ୍କୁ ଦେଇଦେଲେ । ବାୟୁ ସେ ଭ୍ରୁଣକୁ ଅଞ୍ଜନା ମୁଖରେ ରଖିଦେବାରୁ ଅଞ୍ଜନା କୁଣ୍ଡଳଶୋଭିତ ହନୁମାନଙ୍କୁ ଜନ୍ମଦେଲେ ।

ଓଡ଼ିଶା ଓ ଇଣ୍ଡୋନେସିଆ ମଧ୍ୟରେ ଥିବା ଅତୀତର ସମ୍ପର୍କକୁ ପ୍ରମାଣିତ କରିବା ପାଇଁ ହନୁମାନ ଜନ୍ମକଥା ଅତି ମହତ୍ତ୍ୱପୂର୍ଣ୍ଣ । ବାଲ୍ମୀକି ରାମାୟଣରେ ହନୁମାନ ଥିଲେ କେବଳ ବାୟୁପୁତ୍ର । ପରେ କେତେକ ପ୍ରକ୍ଷିପ୍ତ ସର୍ଗ ତାଙ୍କୁ ଆଞ୍ଜନେୟ ରୂପେ ଘୋଷିତ କଲା । ଏଥିରେ ଅଞ୍ଜନା ହେଉଛନ୍ତି କୁଞ୍ଜରଙ୍କ ପୁତ୍ରୀ ଓ କେଶରୀଙ୍କ ସ୍ତ୍ରୀ । ମାରୁତଙ୍କ ବରଦାନ ଫଳରେ ଅଞ୍ଜନା ଗର୍ଭବତୀ ହୋଇ ହନୁମାନଙ୍କୁ ଜନ୍ମ ଦିଅନ୍ତି । 'ଭବିଷ୍ୟ ପୁରାଣ' (ପ୍ରତିସର୍ଗ ପର୍ବ, ଚତୁର୍ଥ ଖଣ୍ଡ, ୧୩, ୩୧ - ୩) ରଚନା ହେଲାବେଳକୁ ଅଞ୍ଜନା ଗୌତମଙ୍କର ପୁତ୍ରୀରୂପେ ପରିଚିତ ହୋଇଛନ୍ତି ଓ ହନୁମାନଙ୍କ ଜନ୍ମ ପାଇଁ ପବନପରି ଶିବଙ୍କର ସହାୟତା ଆବଶ୍ୟକ ହୋଇଛି; କିନ୍ତୁ ଶିବ ଓ ପାର୍ବତୀଙ୍କର ବାନର-ବାନରୀ ରୂପରୁ ହନୁମାନଙ୍କ ଜନ୍ମହେବା କଥା ଭାରତରେ ପ୍ରଥମ କରି ସାରଳା ଦାସଙ୍କ ମହାଭାରତରୁ ମିଳେ । ଏ ଦୃଷ୍ଟିରୁ ବିଚାର କଲେ ଇଣ୍ଡୋନେସିଆରେ ଏ ଉପାଖ୍ୟାନର ପ୍ରଚାର-ଶ୍ରେୟ ଓଡ଼ିଆମାନଙ୍କର ।

ଏହିପରି ଆଉ ଗୋଟିଏ ସାଦୃଶ୍ୟ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ'ରୁ ମିଳେ । ବଳରାମ ଦାସଙ୍କ ଅନୁଯାୟୀ ଲଙ୍କାଦହନ ପରେ ଦେବତାମାନେ ରାବଣର କ୍ରୋଧରୁ ରକ୍ଷା କରିବା ପାଇଁ ସ୍ୱର୍ଗଶିଳ୍ପୀ ବିଶ୍ୱକର୍ମାଙ୍କୁ ଡକାଇ ଏକାରାତିକେ ଲଙ୍କାର ପୁନଃନିର୍ମାଣ କରାଇଥିଲେ । ସେରୀରାମ୍‌ରେ ମଧ୍ୟ ଏ କାର୍ଯ୍ୟ ସ୍ୱର୍ଗର ଜଣେ ମହର୍ଷିଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା ।

ଓଡ଼ିଶା ସହ ଶ୍ୟାମ ଓ ଇଣ୍ଡୋନେସିଆର ସମ୍ପର୍କ ପ୍ରମାଣ କରିବା ପାଇଁ ସୀତାଙ୍କ ଦ୍ୱାରା ରାବଣର ଚିତ୍ର ଅଙ୍କନ (ନୀଳାମ୍ବର ଦାସ 'ଜୈମିନୀ ଭାରତ' ଓ 'ଟୀକା ରାମାୟଣ'), ଲକ୍ଷ୍ମଣକୃତ ସୂର୍ପଣଖାର ପୁତ୍ରବଧ (ସାରଳାଦାସ), ହନୁମାନର ଦ୍ୱିତୀୟବାର

ଦୌତ୍ୟ (ବଳରାମ ଦାସ), ମାୟାଶୀର୍ଷ ଉପାଖ୍ୟାନ (ବଳରାମ ଦାସ), ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞ (ବଳରାମ ଦାସ), ଦଶରଥଙ୍କ ଶିବପୂଜା (ସାରଳା ଦାସ) ଓ ହନୁମାନ ଓ ନୀଳର କଳହ (ସାରଳାଦାସ ଓ ବଳରାମ ଦାସ), ଚିଲ ଉପାଖ୍ୟାନ (ମହେଶ୍ୱର ଦାସ), ବିଭିନ୍ନ ପକ୍ଷୀଙ୍କ କଥା (ବଳରାମ ଦାସ), ଦଶରଥଙ୍କକୃତ ବିଶ୍ୱାମିତ୍ରଙ୍କ ପ୍ରତାରଣା ପ୍ରଭୃତି ବହୁ ଉପାଖ୍ୟାନକୁ ଗ୍ରହଣ କରାଯାଇପାରେ। କିନ୍ତୁ ଏସବୁ ଉପାଖ୍ୟାନ ଓଡ଼ିଶା ବ୍ୟତୀତ ଭାରତର ଅନ୍ୟ ପ୍ରାନ୍ତରେ ମିଳୁଥିବାରୁ ଏସବୁକୁ ପ୍ରମାଣରୂପେ ଗ୍ରହଣ କଲେ ଅସୁବିଧା ଅଛି। ସୀତାଙ୍କ ନିର୍ବାସନର କାରଣ ସ୍ୱରୂପ ସୀତାଙ୍କ ଅଙ୍କିତ ରାବଣର ଚିତ୍ର ପ୍ରସଙ୍ଗ କେବଳ ଯେ ଓଡ଼ିଶାରେ ପ୍ରଚଳିତ ତାହା ନୁହେଁ, ବଙ୍ଗଦେଶରେ ମଧ୍ୟ ପ୍ରଚଳିତ। ଏପରିସ୍ଥଳେ ଓଡ଼ିଆମାନଙ୍କ ପରି ବଙ୍ଗାଳିମାନେ ମଧ୍ୟ ବାଲି, ଜାଭା, ସୁମାତ୍ରା ବୋର୍ଣ୍ଣିଓ ସହ ନିଜର ଅତୀତ ସମ୍ପର୍କ ଏ ଗଳ୍ପରୁ ପ୍ରମାଣିତ କରିପାରିବେ; କିନ୍ତୁ ଉପର ପ୍ରଦତ୍ତ ବାଳି, ସୁଗ୍ରୀବ ଓ ହନୁମାନଙ୍କ ଜନ୍ମକଥା ଭାରତରେ, ଓଡ଼ିଶାରେ ଓ ବାହାରେ ଇଣ୍ଡୋନେସିଆ ଓ ଶ୍ୟାମ ଦେଶରେ ମିଳୁଥିବାରୁ ଏସବୁ ଦେଶ ସହ ଓଡ଼ିଶାର ଅତୀତ ସମ୍ପର୍କ ପ୍ରମାଣିତ କରିବା ପାଇଁ ଏସବୁ ଉପାଖ୍ୟାନ ଅତି ମହତ୍ତ୍ୱପୂର୍ଣ୍ଣ। ସେହିପରି ଶ୍ରୀରାମଙ୍କୁ ବିଶ୍ୱବିଜୟୀ କରିବା ପାଇଁ ବିଶ୍ୱାମିତ୍ର ଯେଉଁ ମନ୍ତ୍ରଦାନ କରିଥିଲେ, ବାଲ୍ମିକୀ ରାମାୟଣରେ ତା'ର ନାଁ ହେଉଛି ବଳ ଓ ଅତିବଳ। ଭଟ୍ଟିକାବ୍ୟ (୨, ୨୧)ରେ ଏହାର ନାଁ ହେଲା ଜୟ ଓ ବିଜୟ। ବଳରାମ ଦାସ ବଳ ଓ ଅତିବଳ ସ୍ଥାନରେ ଜୟ ଓ ବିଜୟକୁ ଗ୍ରହଣ କରିଛନ୍ତି। ଇଣ୍ଡୋନେସିଆର ରାମାୟଣ ସବୁରେ ମଧ୍ୟ ଏ ଦୁଇ ମନ୍ତ୍ରର ନାମ ଜୟ ଓ ବିଜୟ। ଏହିପରି ଆଉ ଗୋଟିଏ ଉଦାହରଣ ହେଉଛି, ଦଶରଥଙ୍କ ଶିବପୂଜା। ବାଲ୍ମୀକି ତଥା ଅନ୍ୟାନ୍ୟ ରାମାୟଣରେ ଏ ପ୍ରସଙ୍ଗ ନାହିଁ। ଭଟ୍ଟି କାବ୍ୟର ସର୍ଗ (୧, ୩୬) - ଲେଖକ ଦଶରଥଙ୍କୁ ଶିବ ଭକ୍ତରୂପେ ବର୍ଣ୍ଣନା କରିଛନ୍ତି। ଓଡ଼ିଶାର ସାରଳାଦାସ ଓ ଇଣ୍ଡୋନେସିଆ ସେରୀରାମ୍‌ର ଲେଖକଙ୍କ ମତରେ ମଧ୍ୟ ଦଶରଥ ହେଉଛନ୍ତି ଜଣେ ଶିବଭକ୍ତ ରାଜା। ଏସବୁ ତୁଳନାରୁ ଦୁଇଟି ତଥ୍ୟ ମିଳେ। ଭଟ୍ଟି କାବ୍ୟ ସମାନ ଭାବରେ ଓଡ଼ିଶା ତଥା ଇଣ୍ଡୋନେସିଆର ରାମକଥାକୁ ପ୍ରଭାବିତ କରିଥିଲା। ଅନ୍ୟ ଗୋଟିଏ ଉପାଦାନ ହେଉଛି, ଇଣ୍ଡୋନେସିଆର ଓଡ଼ିଆମାନେ ହିଁ ଥିଲେ ଭଟ୍ଟିକାବ୍ୟର ପ୍ରଚାରକ।

ଅତୀତ ଯୁଗର, ବିଶେଷକରି ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ବାର୍ତ୍ତାବହ ରୂପେ ସାରଳା ଓ ବଳରାମଙ୍କର ଅବଦାନ ଅବିସ୍ମରଣୀୟ। ସେମାନେ ତାଙ୍କ ସମୟର ତଥା ପୂର୍ବବର୍ତ୍ତୀ କାଳର ବହୁ ଲୋକକଥାକୁ ସାହିତ୍ୟିକ ମର୍ଯ୍ୟାଦା ଦେବା ସଙ୍ଗେ ସଙ୍ଗେ ଅତୀତର ବହୁ ସ୍ମୃତିକୁ ଆମ ପାଇଁ ସାଇତି ରଖିଯାଇଛନ୍ତି। ସେ ସବୁର ଯଥାର୍ଥ ଅନୁଶୀଳନ ହୋଇପାରିଲେ ଅତୀତ ଓଡ଼ିଶାର ବହୁ ଲୁପ୍ତ ଗାଥା ପ୍ରକାଶ ପାଇ ପାରିବ ବୋଲି ଆଶା।

